ଶ୍ରୀମତୀ ଲଳିତା ଶାସ୍ତ୍ରୀଙ୍କ ସସ୍ମରଣ

# ମୋ ପତି
# ମୋ ଦେବତା

ଲେଖକ : ଶ୍ରୀ ଉମାଶଙ୍କର

ଅନୁବାଦକ : ଶ୍ରୀ ନୀଳମଣି ମିଶ୍ର



ଆର୍ଯ୍ୟ-ଷ୍ଟୁଡେଣ୍ଟସ୍ ଷ୍ଟୋର

# ମୋ ପତି ମୋ ଦେବତା

ପ୍ରକାଶିକା :

ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

ବାଲୁବଜାର, କଟକ-୭୫୩୦୦୨

ଦ୍ୱିତୀୟ ସଂସ୍କରଣ—୧୯୭୦

ତୃତୀୟ ସଂସ୍କରଣ—୧୯୭୫

ଚତୁର୍ଥ ସଂସ୍କରଣ—୧୯୮୨

ପଞ୍ଚମ ସଂସ୍କରଣ—୧୯୮୮

ମୁଦ୍ରଣ :

ସ୍ୱର୍ଣ୍ଣମୟୀ ପ୍ରିଣ୍ଟର୍ସ

ବାଖରାବାଦ୍ କଟକ-୨

ମୂଲ୍ୟ :

ସାଦା : ସତର ଟଙ୍କା

ବନ୍ଧାଇ : କୋଡ଼ିଏ ଟଙ୍କା

# MO PATI MO DEBATA

( A memory of Smt. Lalita Shastri on Shastrijee )

By Sri Umashankar

Transla or

Sri Nilamani Misra

Second Edition-1970

Third Edition--1975

Fourth Edition--1982

Fifth Edition-1988

Publisher :

Smt. Annapurna Mishra

Cuttack Students' Store

Balubazar, Cuttack-753002

Price :

Popular : Rs. 17-00

Deluxe : Rs 20-00

ଶ୍ରୀମତୀ ଲଳିତା ଶାସ୍ତ୍ରୀଙ୍କ ସଂସ୍ମରଣ ସ୍ୱର୍ଗତ ଲାଲବାହାଦୂର୍ ଶାସ୍ତ୍ରୀଙ୍କ ଜୀବନୀ ଏକ ଉପାଦେୟ ପୁସ୍ତକ । ସ୍ୱର୍ଗତ ଶାସ୍ତ୍ରୀଙ୍କ ଜୀବନ ଏକ ତ୍ୟାଗ-ପୂତ ଜୀବନ, ଏଥିରେ ସନ୍ଦେହ ନାହିଁ । ତାଙ୍କ ଜୀବନରେ ସତ୍ୟନିଷ୍ଠା, କର୍ତ୍ତବ୍ୟପରାୟଣତା ତଥା ନିର୍ଭୀକତା ଯେପରି ଭାବରେ ସ୍ତର ଛନ୍ଦେ ଛନ୍ଦେ ଫୁଟି ଉଠିଛି ଏହା ଭାରତର ଜନସାଧାରଣଙ୍କ ପକ୍ଷରେ ବାସ୍ତବରେ ଏକ ଶିକ୍ଷଣୀୟ ତଥା ଅନୁକରଣୀୟ ବିଷୟ ।

ଏହାର ଓଡ଼ିଆ ଅନୁବାଦ ହେବା ଆନନ୍ଦର ବିଷୟ । ଶ୍ରୀମାନ୍ ନୀଳମଣିଙ୍କର ଏ ଉଦ୍ୟମ ପ୍ରଶଂସନୀୟ ।

ଏକାମ୍ର ନିବାସ
ଭୁବନେଶ୍ୱର-୨
ତା ୧୩-୩-୬୮

ଶ୍ରୀ ହରେକୃଷ୍ଣ ମହତାବ

# ଦୁଇପଦ

ପୃଥିର ଅନେକ ଦେଶରେ କେତେ ଯେ ମହାପୁରୁଷ ଜନ୍ମଗ୍ରହଣ କରି ନିଜ ଦେଶ ଓ ଦଶର ମୁଖୋଜ୍ଜ୍ୱଳ କରିଛନ୍ତି ତା'ର ଇୟତ୍ତା ନାହିଁ । ବରେଣ୍ୟ ନେତା, ଯୁଗସ୍ରଷ୍ଟା ଓ ତ୍ୟାଗୀ ଦେଶସେବକମାନେ ଯେତେବେଳେ ପୃଥିବୀରେ ଅବତୀର୍ଣ୍ଣ ହୁଅନ୍ତି, ସେତେବେଳେ ତାଙ୍କର କାର୍ଯ୍ୟ-ପରିସର ମଧ୍ୟରେ ନାନାପ୍ରକାର ବାଧାବିଘ୍ନ ଓ ଅଭାବ-ଅସୁବିଧା ଆସି ଉପସ୍ଥିତ ହୁଏ । ସେହି ବାଧା ବିଘ୍ନରୂପକ ଅଗ୍ନିଦାହ ମଧ୍ୟରେ ମହାପୁରୁଷମାନେ ନିଜ କୃତିତ୍ୱର ପରାକାଷ୍ଠା ଦେଖାଇ ଦେଶବାସୀଙ୍କ ସମ୍ମୁଖରେ ଆଦର୍ଶ ଉପସ୍ଥାପିତ କରିପାରନ୍ତି—ଅର୍ଥାତ୍, ସେମାନଙ୍କର ତ୍ୟାଗପୂତ ଜୀବନ ଦୁଃଖଦୈନ୍ୟର ନିକଷରେ ପରୀକ୍ଷିତ ହୋଇ, ଶୁଦ୍ଧ ସୁବର୍ଣ୍ଣ ପରି ଜାଜ୍ଜ୍ୱଲ୍ୟମାନ ହୁଏ ।

ପୃଥିବୀରେ ଯେତେ ଦେଶସେବକ, ନେତା ଜନ୍ମଗ୍ରହଣ କରି ଦେଶ ସେବାରେ ଆତ୍ମନିୟୋଗ କରିଛନ୍ତି, ସେମାନଙ୍କ ମଧ୍ୟରେ ଯୋଗଜନ୍ମା ଲାଲବାହାଦୁର ଶାସ୍ତ୍ରୀଙ୍କ ଜୀବନ ଥିଲା ଏକ ଭିନ୍ନ ଧରଣର । ଅବୋଧ ଶିଶୁ ଅବସ୍ଥାରୁ 'ବାପ ଛେଉଣ୍ଡ' ଆଖ୍ୟା ଅର୍ଜନ କରି, କୈଶୋରରେ ଦାରିଦ୍ର୍ୟର କଷାଘାତରେ ନିର୍ଯ୍ୟାତିତ ହେବା ସଙ୍ଗେ ସଙ୍ଗେ ଯୌବନରେ ପୂଜ୍ୟ "ବାପୁଜୀ"ଙ୍କ ନିର୍ଦ୍ଦେଶରେ ବିଦ୍ୟାଧ୍ୟୟନ ପରିତ୍ୟାଗପୂର୍ବକ ସେ ଯେଉଁ ସଂଘର୍ଷମୟ ଜୀବନଯାତ୍ରା ଆରମ୍ଭ କରିଥିଲେ, ସେଥିପ୍ରତି ଦୃଷ୍ଟି ଦେଲେ କେବେହେଲେ ଧାରଣା କରିହେବ ନାହିଁ ଯେ, ଏତେ ନିମ୍ନସ୍ତରରୁ ମଣିଷ ଉନ୍ନତି କରି ଗୋଟିଏ ବିଶାଳ ଦେଶରେ ଭାଗ୍ୟନିୟନ୍ତା ପଦବୀ ଲାଭ କରିପାରେ ! କିନ୍ତୁ ତାଙ୍କର ସତ୍ୟନିଷ୍ଠା, ଆତ୍ମତ୍ୟାଗ, କଠୋର ସଂଯମ, ଦୃଢ଼ବ୍ରତ, କର୍ତ୍ତବ୍ୟପରାୟଣତା ତଥା ନିରଳସ-କର୍ମମୟ ଜୀବନଯାତ୍ରା ଫଳରେ ସେ ଉନ୍ନତିର ଚରମ ସୋପାନରେ ଆରୋହଣ କରିବାରେ ସମର୍ଥ ହୋଇ ପାରିଥିଲେ ।

ଭାରତର ପ୍ରଧାନମନ୍ତ୍ରୀ ହେବାପରେ ମଧ୍ୟ ତାଙ୍କର ନିରାଡ଼ମ୍ବର ଜୀବନଯାପନ ପ୍ରଣାଳୀ ଦେଖି ତାଙ୍କ ସମ୍ବନ୍ଧରେ ଦେଶ ଓ ବିଦେଶରେ ଯେଉଁ ସମାଲୋଚନା ଆରମ୍ଭ ହୋଇଥିଲା, ତାକୁ ସେ ନିଜ କର୍ମମୟ ଜୀବନର ଦୃଢ଼ତା ଫଳରେ ସମ୍ପୂର୍ଣ୍ଣ ପରାଭୂତ କରିଦେଇ ପାରିଥିଲେ । ସେ ଥରେ ନିଜ ପୁତ୍ର ସୁନୀଲ କୁମାରଙ୍କୁ ( ଯାହାଙ୍କୁ ଶାସ୍ତ୍ରୀଜୀ ସ୍ନେହରେ ବକ୍ସଡ଼ ଦାସ ବୋଲି ଡାକୁଥିଲେ ) ଉତ୍ତର ଦେଇ କହିଥିଲେ, "ଆଜି ଯେଉଁମାନେ ମୋତେ ନିନ୍ଦା କରୁଛନ୍ତି, ସେମାନଙ୍କୁ ପ୍ରଶଂସା କରିବାଲାଗି ବେଶି ସମୟ ଲାଗିବ ନାହିଁ । ଏଥିଲାଗି ଚିନ୍ତିତ ହେବାର କୌଣସି କାରଣ ନାହିଁ ।"

ଏଭଳି ଦୃଢ଼-ପ୍ରତିଜ୍ଞ, ନିଷ୍ଠାବାନ ଓ କର୍ମଠ ବ୍ୟକ୍ତି ବିଶ୍ୱରେ ଜନ୍ମଗ୍ରହଣ କରି ଇତିହାସରେ ସ୍ଥାନ ସଂରକ୍ଷଣ କରିଥିବା ପରି ମନେହୁଏ ନାହିଁ । ତାଙ୍କ ଜୀବନୀ ପ୍ରତ୍ୟେକ ଘଟଣା କେବଳ ଭାରତରେ ନାହିଁକି, ବିଶ୍ୱର ଆବାଳ-ବୃଦ୍ଧ-ବନିତାଙ୍କ ପକ୍ଷରେ ଅତ୍ୟନ୍ତ ଶିକ୍ଷଣୀୟ ।

ସ୍ୱର୍ଗତଃ ଶାସ୍ତ୍ରୀଜୀଙ୍କ ଜୀବନୀ ସମ୍ବନ୍ଧରେ ଅନେକ ବିଦ୍ୱାନ୍ ଆଲୋକପାତ କରି ବହୁ ତଥ୍ୟମୂଳକ ଘଟଣାର ଉଲ୍ଲେଖ କରିଛନ୍ତି; ମାତ୍ର ତାଙ୍କର ଧର୍ମପତ୍ନୀ ଶ୍ରୀମତୀ ଲଳିତା ଶାସ୍ତ୍ରୀଙ୍କ ସଂସ୍ମରଣ ଯେ ସବୁଠାରୁ ଅଧିକ ମୂଲ୍ୟବାନ୍, ଏଥିରେ ତିଳେହେଲେ ସନ୍ଦେହର ଅବକାଶ ନାହିଁ ।

ଶାସ୍ତ୍ରୀଜୀ ତାଙ୍କ ଜୀବଦ୍ଦଶା ମଧ୍ୟରେ ନିଜ ଜୀବନୀ ଲେଖିଥିଲେ, ତାଙ୍କର ଅତି ମାନବୀୟ ଗୁଣଗୁଡ଼ିକ ପ୍ରତି ସେ ଆଦୌ ଦୃଷ୍ଟି ଦେଇ ନ ଥା'ନ୍ତେ; କାରଣ ସେ ଆତ୍ମପ୍ରଶଂସା କରି ଆତ୍ମଶ୍ଳାଘା ଅନୁଭବ କରିବା ଭଳି ବ୍ୟକ୍ତି ନ ଥିଲେ । ତେଣୁ ତାଙ୍କ ଆଭ୍ୟନ୍ତରୀଣ ଗୁଣାବଳୀର ବ୍ୟାଖ୍ୟାନ ଶ୍ରୀମତୀ ଶାସ୍ତ୍ରୀଙ୍କ ବ୍ୟତୀତ ଆଉ କେହି କରିବାରେ ସମର୍ଥ ହୁଅନ୍ତେ ନାହିଁ ।

ହିନ୍ଦୀ ସାହିତ୍ୟ-ଜଗତର ଖ୍ୟାତିପ୍ରାପ୍ତ ଗାଳ୍ପିକ, କବି ଓ ଔପନ୍ୟାସିକ ଶ୍ରୀଯୁକ୍ତ ଉମାଶଙ୍କର ଶ୍ରୀମତୀ ଶାସ୍ତ୍ରୀଙ୍କ ସଂସ୍ମରଣକୁ ଜୀବନୀ ଆକାରରେ ଲିପିବଦ୍ଧ କରିବାଲାଗି ଦୀର୍ଘ ଛ'ମାସ ଅବିଶ୍ରାନ୍ତ ପରିଶ୍ରମ କରିଛନ୍ତି । ସେହି ଲେଖାଗୁଡ଼ିକ ଦିଲ୍ଲୀରୁ ପ୍ରକାଶିତ ପ୍ରସିଦ୍ଧ ହିନ୍ଦୀ ସାପ୍ତାହିକ ପତ୍ରିକା "ସାପ୍ତାହିକ ହିନ୍ଦୁସ୍ଥାନ"ରେ ୧୯୬୭ ମସିହା ଜୁନ୍ ମାସରୁ ଧାରାବାହିକ ରୂପେ ଏକତିରିଶଟି ପରିଚ୍ଛେଦରେ ପ୍ରକାଶିତ ହୋଇଥିଲା । ଲେଖାଗୁଡ଼ିକର ଭାଷା ଏତେ ସରଳ ଓ ସର୍ବଜନବୋଧ୍ୟ ଯେ, ତାହା ଠିକ୍ ସ୍ୱର୍ଗତ ଶାସ୍ତ୍ରୀଜୀଙ୍କ ଆଡ଼ମ୍ବରଶୂନ୍ୟ ଜୀବନ ପରି ପାଠକମାନଙ୍କ ପକ୍ଷେ ଅତ୍ୟନ୍ତ କୌତୂହଳୋଦ୍ଦୀପକ ହୋଇଛି । ମୁଁ ପ୍ରଥମେ ସ୍ୱର୍ଗତ ଶାସ୍ତ୍ରୀଜୀଙ୍କ ବାଲ୍ୟକାଳ ସମ୍ବଳିତ ଲେଖାଟି ପାଠ କରି

ଅତ୍ୟନ୍ତ ପ୍ରୀତ ହୋଇ ତା'ର ଓଡ଼ିଆ ରୂପାନ୍ତର କରିବାର ଲୋଭସମ୍ବରଣ କରି ପାରିଲି ନାହିଁ । ତତ୍ ସଙ୍ଗେ ସଙ୍ଗେ ଶ୍ରଦ୍ଧେୟ ଉମାଶଙ୍କରଜୀଙ୍କ ସାଗ୍ରହ ଅନୁମତି ମଧ୍ୟ ମୋତେ ଏ ଦିଗରେ ବିଶେଷ ଉତ୍ସାହିତ କରିଅଛି ।

ମୁଁ "ସାପ୍ତାହିକ ହିନ୍ଦୁସ୍ଥାନ" ପତ୍ରିକାରୁ ଅନୁବାଦ କରସାରିବା ପରେ ହିନ୍ଦୀ ଲେଖାଗୁଡ଼ିକୁ ଏକତ୍ର କରି ପ୍ରସ୍ତୁତକର୍ତ୍ତା ଉମାଶଙ୍କରଜୀ 'ମେରେ ପିତା ମେରେ ଦେବ୍‌ତା' ଶୀର୍ଷକ ପୁସ୍ତକଟି ପ୍ରକାଶ କରିଛନ୍ତି । ଉକ୍ତ ପୁସ୍ତକରେ ସେ ଅଳ୍ପ କେତେକ ସ୍ଥଳରେ ମୂଳଲେଖାଠାରୁ ସାମାନ୍ୟ ପରିବର୍ତ୍ତନ କରିଅଛନ୍ତି; କିନ୍ତୁ ଏହା ମଧ୍ୟରେ ମୋ' ଅନୁବାଦର ସେହି ଅଂଶତକ ମୁଦ୍ରିତ ହୋଇ ଯାଇଥିବାରୁ ତାହା ପ୍ରଥମ ସଂସ୍କରଣରେ ସ୍ଥାନ ପାଇ ନ ଥିଲା ।

ଆହୁରି ମଧ୍ୟ ମୂଳଲେଖାରେ ପ୍ରକାଶିତ ଶାସ୍ତ୍ରୀଜୀ ବିବାହ ସମ୍ବନ୍ଧୀୟ କେତୋଟି ଘଟଣା ପରବର୍ତ୍ତୀ ଅଧ୍ୟାୟରେ ସ୍ଥାନ ପାଇଛି; କିନ୍ତୁ ମୁଁ ତାହାକୁ ଅପ୍ରାସଙ୍ଗିକ ମନେକରି, ଠିକ୍ ବିବାହ-ଘଟଣା-ସମ୍ବଳିତ-ଅଧ୍ୟାୟର ପରେ ଅର୍ଥାତ୍ ତୃତୀୟ ଅଧ୍ୟାୟରୂପେ ସନ୍ନିବେଶିତ କରିଛି । ଏ ପ୍ରସଙ୍ଗରେ ମୁଁ କେବଳ ଅଧ୍ୟାୟର ସ୍ଥାନ ପରିବର୍ତ୍ତନ କରିବା ବ୍ୟତୀତ ମୂଳଲେଖାର ଅନ୍ୟ କୌଣସି ବିଷୟଗତ କିମ୍ବା ଭାଷାଗତ ପରିବର୍ତ୍ତନ କରିନାହିଁ; ଅଧିକନ୍ତୁ, ମୂଳଲେଖାରେ ଥିବା ଭାଷାଗତ ସରଳତା ଓ ସାବଲୀଳତାକୁ ବଜାୟ ରଖିବା ଲାଗି ବିଶେଷ ସତର୍କତା ଅବଲମ୍ବନ କରିଛି । ତତ୍‌ବ୍ୟତୀତ ମୂଳ ଲେଖାର ଏକାଦଶଟି ଅଧ୍ୟାୟକୁ ହିନ୍ଦୀ ପୁସ୍ତକରେ ୯ଟି ଅଧ୍ୟାୟରେ ପରିଣତ କରାଯାଇଥିଲେ ହେଁ, ଓଡ଼ିଆ ଅନୁବାଦରେ 'ସାପ୍ତାହିକ ହିନ୍ଦୁସ୍ଥାନ'ରେ ପ୍ରକାଶିତ ଅଧ୍ୟାୟ-ପ୍ରକରଣର ଅନୁସରଣ କରାଯାଇଛି ଏବଂ ବିଷୟବସ୍ତୁର ସଙ୍କ୍ଷିପ୍ତୀକରଣ ଦୃଷ୍ଟିରୁ ତାହା ସମୀଚୀନ ବୋଧ ହେଉଥିବାରୁ ପ୍ରତ୍ୟେକ ସଂସ୍କରଣରେ ମଧ୍ୟ ସେହି ଅଧ୍ୟାୟ କ୍ରମ ଅପରିବର୍ତ୍ତିତ ରଖିଛି ।

ମୁଁ ପ୍ରଥମେ 'ମୋ ପିତା ମୋ ଦେବତା' ଶୀର୍ଷକ ଅନୁବାଦଟିକୁ ଓଡ଼ିଆ ପତ୍ରିକାରେ ଧାରାବାହିକରୂପେ ପ୍ରକାଶ କରାଇବା ଲାଗି ମନସ୍ଥ କରିଥିଲି; କିନ୍ତୁ ପରେ ମୋର ହିତୈଷୀ ବନ୍ଧୁ ପଣ୍ଡିତ ଶ୍ରୀ ପ୍ରବୋଧକୁମାର ମିଶ୍ର, ଯୁବଲେଖକ ଶ୍ରୀ ନରସିଂହ ନନ୍ଦ ଓ ଶ୍ରୀ ଅଭିରାମ ପଣ୍ଡାଙ୍କ ସାଗ୍ରହ ଅନୁରୋଧ କ୍ରମେ ପୁସ୍ତକାକାରରେ ପ୍ରକାଶିତ କରିବାଲାଗି ସ୍ଥିର କରି ଶ୍ରୀଯୁକ୍ତ ଅନନ୍ତ ମିଶ୍ରଙ୍କ ସାହାଯ୍ୟ ପ୍ରାର୍ଥନା କଲି । ମିଶ୍ର ମହାଶୟ ଆଗ୍ରହର ସହିତ ପୁସ୍ତକ-ପ୍ରକାଶନର ଦାୟିତ୍ୱ ଗ୍ରହଣ କରିଥିବାରୁ ମୁଁ ଚିରକୃତଜ୍ଞ ।

ମୋର ଅନୁଜପ୍ରତିମ ଶ୍ରୀମାନ୍ ଅଭିରାମ ପଣ୍ଡା ବହୁ ଶ୍ରମସ୍ୱୀକାର କରି ଅଳ୍ପଦିନ ମଧ୍ୟରେ ପାଣ୍ଡୁଲିପିର ମୁଦ୍ରଣଯୋଗ୍ୟ ପାଣ୍ଡୁଲିପି (Press Copy) ପ୍ରସ୍ତୁତ କରି ନ ଥିଲେ

ଏତେଶୀଘ୍ର ପୁସ୍ତକଟି ବିଜ୍ଞ ପାଠକମାନଙ୍କର ହସ୍ତଗତ ହୋଇ ପାରି ନ ଥାନ୍ତା । ତେଣୁ ଆଜି ଏହି ପବିତ୍ର ଦିବସରେ ତାଙ୍କ ପ୍ରତି ଆନ୍ତରିକ ଶୁଭେଚ୍ଛା ଜଣାଉଛି ।

ପରିଶେଷରେ ହିନ୍ଦୀ ଲେଖାର ଓଡ଼ିଆ ରୂପାନ୍ତର କ୍ଷେତ୍ରରେ ମୋର ଏହା ପ୍ରଥମ ପ୍ରୟାସ ହୋଇଥିବାରୁ କେତେକ ସ୍ଥଳରେ ତ୍ରୁଟି ରହିଯିବା ଅସମ୍ଭବ ନୁହେଁ । ତେଣୁ ବିଜ୍ଞ ପାଠକମାନଙ୍କଠାରେ ଅନୁରୋଧ, ସେମାନେ ପୁସ୍ତକଟିର ଦୋଷତ୍ରୁଟି ପ୍ରତି ଦୃଷ୍ଟି ନ ଦେଇ ସ୍ୱର୍ଗତ ଲାଲବାହାଦୂରଙ୍କ ସଂଘର୍ଷମୟ ଜୀବନର ଏକ ଆଦର୍ଶ ଜୀବନୀ ଭାବରେ ପାଠ କଲେ ମୋର ଶ୍ରମ ସାର୍ଥକ ହେବ ।

ଜୟ ଜବାନ୍ ! ଜୟ କିଷାନ୍ !

ଭୁବନେଶ୍ୱର, ମକର ସଂକ୍ରାନ୍ତି,
୧୪ । ୧ । ୧୯୬୮

ବିନୀତ
ନୀଳମଣି ମିଶ୍ର

# ପଞ୍ଚମ ସଂସ୍କରଣ

ଓଡ଼ିଶାରେ ଖଣ୍ଡିଏ ବହି ପଞ୍ଚମ ସଂସ୍କରଣରେ ଉପନୀତ ହେବା କମ୍ ସୌଭାଗ୍ୟର କଥା ନୁହେଁ । "ମୋ ପଥ ମୋ ଦେବତା" ସବୁଶ୍ରେଣୀର ପାଠକଙ୍କୁ ମୁଗ୍ଧ କରିଛି । ସେଇଥି ପାଇଁ ପୁସ୍ତକଟି ଏତେ ଲୋକ ପ୍ରିୟତା ହାସଲ କରିବାରେ ସମର୍ଥ ହୋଇଛି ।

ଆଜିକାଲି ବହୁତ ନେତା ବାହାରିଲେଣି । ଦେଶ ସେବା ନାଆଁରେ ଆତ୍ମସେବା, ସେମାନଙ୍କର ମୂଳମନ୍ତ୍ର ହୋଇଛି । କିନ୍ତୁ ସ୍ୱର୍ଗତଃ ଲାଲ୍ ବାହାଦୁର୍ ଶାସ୍ତ୍ରୀ ଥିଲେ ଜଣେ ଖାଣ୍ଟି ନେତା । ଜୀବନକୁ ତିଳ ତିଳ କରି ସେ ଦେଶସେବା ରୂପକ ମହାଯଜ୍ଞରେ ସମର୍ପଣ କରି ଦେଇଥିଲେ । ସେ ସାରାଜୀବନ ଦେଶ ସେବାରେ, ଅତି ନିମ୍ନ ସ୍ତରରୁ ଉଠି ପ୍ରଧାନମନ୍ତ୍ରୀ ହୋଇଥିବାରୁ, ଦେଶବାସୀଙ୍କ ଦୁଃଖ ବୁଝିପାରୁଥିଲେ । ତେଣୁ ତାଙ୍କ ଜୀବନୀ ପ୍ରତ୍ୟେକଙ୍କୁ ଉଦ୍‌ବୁଦ୍ଧ କରିବ, ଏଥିରେ ସନ୍ଦେହ ନାହିଁ ।

ଓଡ଼ିଶାର ଅଗଣିତ ପାଠକ ପାଠିକା ପୁସ୍ତକଟିକୁ ଆଦର କରିଥିବାରୁ, ମୁଁ ସେମାନଙ୍କଠାରେ କୃତଜ୍ଞତା ଜଣାଉଛି ।

ଚରମ୍ପା-ଭଦ୍ରକ
ଜନ୍ମାଷ୍ଟମୀ—୧୯୮୭

ନୀଳମଣି ମିଶ୍ର

# ସୂଚୀ



profssmishra@gmail.com

# ଏକ

**ରାମଦୁଲାରୀଙ୍କ ବଚଓ୍ୱା—**

ବିବାହ ପରେ ଏଲାହାବାଦ ଆସିଲାରୁ ମା'ଜୀ ( ଶାଶୂ )ଙ୍କର ପ୍ରଥମ କାର୍ଯ୍ୟ ହେଲା ଆମକୁ ନେଇ 'ପିୟରୀ' ( ହଳଦିଆ ଧୋତି ) ଅର୍ପଣ କରିବା ଉଦ୍ଦେଶ୍ୟରେ ଗଙ୍ଗାଜୀଙ୍କ ନିକଟକୁ ଯିବା । ସଙ୍ଗରେ ଶାସ୍ତ୍ରୀଜୀ ମଧ୍ୟ ଥିଲେ । ବିବାହ ପରେ ପୁଅ ବୋହୂଙ୍କୁ ସଙ୍ଗରେ ନେଇ ଗଙ୍ଗାମାତାଙ୍କ ଶ୍ରୀଚରଣରେ "ପିୟରୀ" ଅର୍ପଣ କରିବା ଲାଗି ସେ ମାନସିକ କରିଥିଲେ । ବାସ୍ତବରେ "ପିୟରୀ" ଅର୍ପଣ କରିବାର କାରଣ ପଚାରିବାରୁ ମା'ଜୀ ଏହାର ଉଦ୍ଦେଶ୍ୟ ଆମ ଆଗରେ ବର୍ଣ୍ଣନା କରିଥିଲେ ।

ପ୍ରାୟ ୬୧।୬୨ ବର୍ଷ ତଳର କଥା, ଏଲାହାବାଦର କାୟସ୍ଥ ପାଠଶାଳାରେ ଶ୍ୱଶୁର ମହାଶୟ ଶିକ୍ଷକତା କରି, ଅକ୍ଷୟାପୁର ମହଲରେ ନିଜ ପରିବାର ସହିତ ରହୁଥିଲେ । ସନ ୧୯୦୪ ଅକ୍ଟୋବର ୨ ତାରିଖରେ ଶାସ୍ତ୍ରୀଜୀ ଜନ୍ମଗ୍ରହଣ କଲେ । ସନ ୧୯୦୫ ଜାନୁୟାରୀ ୧୪ ତାରିଖରେ ସଂକ୍ରାନ୍ତି ପଡ଼ିଥିଲା । ପ୍ରାୟ ଚାରିମାସ ଶିଶୁ ଶାସ୍ତ୍ରୀଜୀଙ୍କୁ କୋଳରେ ଧରି ମା'ଜୀ ସଙ୍ଗମସ୍ଥଳରେ ସ୍ନାନ କରିବାଲାଗି ଗଲେ । 'ମାଘମେଳା' ଲାଗି ଭିଡ଼ ତ ଖୁବ୍ ଥିଲା, ପୁଣି ସଂକ୍ରାନ୍ତି ହେବାରୁ ଭିଡ଼ର ମାତ୍ରା ଅପେକ୍ଷାକୃତ ଅଧିକ ହୋଇଥିଲା । କିଲ୍ଲା ( ଏଲାହାବାଦର ପ୍ରାଚୀନ ଦୁର୍ଗ ) ନିକଟସ୍ଥ ଘାଟରେ ନୌକା ବନ୍ଦୋବସ୍ତ କରି ସେଥିରେ ବସିବା ଅତି କଷ୍ଟସାଧ୍ୟ ବ୍ୟାପର । ଭିଡ଼ ମଧ୍ୟରେ ଏତେ ଠେଲା ଠେଲି ହେଉଥିଲା ଯେ, ନିଜକୁ ସମ୍ଭାଳିବା କଠିନ । ସେହି ଠେଲା ଠେଲିରେ ମା'ଙ୍କ କାଖରେ ଥିବା ଶାସ୍ତ୍ରୀଜୀ ହଠାତ୍ ଖସିପଡ଼ିଲେ । ମା'ଜୀ ଭୟରେ ଥରି ଉଠିଲେ । ହଠାତ୍ ତାଙ୍କ ପାଟିରୁ କଥା ବାହାରିଲା ନାହିଁ । ସେ ସେହି ଭିଡ଼ ଭିତରେ ଏଣେ ତେଣେ ଖୋଜିବାକୁ ଲାଗିଲେ । ଶ୍ୱଶୁର ମହାଶୟ ତଥା ଅନ୍ୟାନ୍ୟ ଆତ୍ମୀୟ ସ୍ୱଜନମାନେ ବ୍ୟସ୍ତ ହୋଇ ଚାରିଆଡ଼େ ଖୋଜିଲେ । କିନ୍ତୁ ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ହେଉଛି, ଚାରିଆଡ଼େ ଖୋଜା ଖୋଜି କରିବା ପରେ ମଧ୍ୟ ଶାସ୍ତ୍ରୀଜୀ ମିଳିଲେ ନାହିଁ । ମା'ଜୀ କାନ୍ଦି କାନ୍ଦି ସେହି-ଠାରେ ବସିପଡ଼ିଲେ । ସେ ନିଜର 'ବଚଓ୍ୱା' ( ଶାସ୍ତ୍ରୀଜୀଙ୍କୁ ତାଙ୍କ ମା' ସେହି ନାମରେ

ଡ଼ାକୁଥିଲେ । ଅବଶ୍ୟ'ନନ୍ଥା' 'ନନ୍କୁ' ପ୍ରଭୃତି ତାଙ୍କର କେତୋଟି ଡ଼ାକନାମ ଥିଲା ) କୁ ନ ପାଇଲେ କୌଣସି ମତେ ସେଠାରୁ ଉଠିବାକୁ ପ୍ରସ୍ତୁତ ହେଲେନାହିଁ । ଅନ୍ୟ ଲୋକମାନେ ପୁଣି ଶାସ୍ତ୍ରୀଜୀଙ୍କୁ ଖୋଜିବାକୁ ଲାଗିଲେ । ସେହି ସମୟରେ ମା'ଜୀ ମାନସିକ କରିଥିଲେ – ଯଦି 'ବଚଓ୍ୱା' ତାଙ୍କୁ ମିଳିଯାଏ, ତା' ହେଲେ ବିବାହ ପରେ ପୁଅ ବୋହୂଙ୍କୁ ସଙ୍ଗରେ ଧରି ସେ ଗଙ୍ଗାମାତାଙ୍କ ଶ୍ରୀଚରଣରେ 'ପିଯ୍ୱରୀ' ଅର୍ପଣ କରିବା ଲାଗି ଆସିବେ ।

ଅଦୂରରେ ଥିବା ନୌକାରେ ଶାସ୍ତ୍ରୀଜୀ ଯାଇ ପଡ଼ିଥିଲେ । ନୌକାଟିଏ ଯାତ୍ରୀରେ ଭରି ଯାଇଥିଲା ଏବଂ ତାହା 'ସଙ୍ଗମ' ଆଡ଼କୁ ମୁହାଁଇଥିଲା; ସେହି ନୌକାର ଗୋଟିଏ ମଙ୍ଗ ଆଡ଼କୁ ଜଣେ ଦୁଧବାଲା ନିଜ ଟୋକେଇଟି ଧରି ବସିଥିଲା । ସେହି ଟୋକେଇରେ ଶାସ୍ତ୍ରୀଜୀ ଛିଟିକି ପଡ଼ି ଯାଇଥିଲେ । ଦୁଧବାଲା ତଥା ଅନ୍ୟାନ୍ୟ ଲୋକମାନେ ପିଲାଟିକୁ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇ ଗଲେ । କାରଣ, ପିଲାଟି କେଉଁଠାରୁ ଆସି ହଠାତ୍ ସେଠାରେ ପଡ଼ିଲା, ତାହା କେହି ଜାଣିପାରି ନ ଥିଲେ । ଦୁଧବାଲାଟି ନିଃସନ୍ତାନ ଥିବାରୁ ପିଲାଟିକୁ ପାଇ ଖୁବ୍ ଖୁସି ହେଲା । ଗଙ୍ଗାମାତାଙ୍କ କୃପାରୁ ତାକୁ ପିଲାଟିଏ ମିଳିଥିବାରୁ ନୌକାରେ ବସିଥିବା ପରିଚିତ ଲୋକମାନେ ଦୁଧବାଲାର ଭାଗ୍ୟକୁ ପ୍ରଶଂସା କଲେ । ଦୁଧବାଲା ଖିଚରି ସଙ୍ଗେ ସଙ୍ଗେ ନିଜ 'ମିରଜାଇ' ( ଆଗକାଳରେ ବ୍ୟବହୃତ ହେଉଥିବା ଢିଲାରେ ତିଆରି ଏକ ପ୍ରକାର ଜାମା ) ଟି ଓଲ୍ହାଇ ଶାସ୍ତ୍ରୀଜୀଙ୍କୁ ଘୋଡ଼ାଇ ଦେଲା ଓ ଲୁଗାରେ ପେଣ୍ଡି ତିଆରି କରି ତାଙ୍କୁ ଦୁଧ ପିଆଇବାକୁ ଲାଗିଲା । ଏଣେ ସମସ୍ତେ ଶାସ୍ତ୍ରୀଜୀଙ୍କୁ ଖୋଜୁଥାଆନ୍ତି । ପ୍ରାୟ ଘଣ୍ଟାଏ ପରେ ଯେତେବେଳେ ନୌକାଟି ଫେରିଆସିଲା, ଦୈବଯୋଗକୁ, ଶ୍ୱଶୁର ମହାଶୟ ଶାସ୍ତ୍ରୀଜୀଙ୍କୁ ସେହି ଟୋକେଇରେ ଦେଖିପାରି ପଚରଉପଚରି କଲେ । ଚାରିଆଡ଼େ ଲୋକମାନେ ଜମା ହୋଇଗଲେ । କାରଣ, ଦୁଧବାଲା ପିଲାଟିକୁ ଛାଡ଼ିବାକୁ ଆଦୌ ପ୍ରସ୍ତୁତ ନ ଥିଲା । ସତ୍ୟତା ପ୍ରମାଣିତ କରାଇବାଲାଗି ମା'ଜୀଙ୍କୁ ଡ଼ାକବାକୁ ପଡ଼ିଲା । ମା'ଜୀ ଦେଖିବା ମାତ୍ରେ ଆଖି ପିଚୁଲାକେ ଶାସ୍ତ୍ରୀଜୀଙ୍କୁ କୋଳକୁ ଉଠାଇନେଇ ଜାବୁଡ଼ିଧରି କ୍ଷୀର ଖୁଆଇବାକୁ ଲାଗିଲେ । ଘେରିଯାଇଥିବା ଲୋକମାନେ ଦୁଧବାଲାକୁ ଛି-ଛି କରି ଧମକ ଚମକ ଦେଲେ । ଦୁଧବାଲା ଖିଚରି ନିରୁପାୟ ହୋଇ ଶ୍ୱଶୁରଜୀଙ୍କୁ କହିଲା—"ମୋ କୁରୁତା ଯେ ଗୁହମୂତରେ ସୁଡ଼ୁ ବୁଡ଼ୁ ହୋଇଯାଇଛି, ସେଥିଲାଗି କ'ଣ କରାଯିବ ? ଏ ଶୀତରେ ମୁଁ ଥରି ଥରି ଘରକୁ ଯିବି କପରି ?" ଶ୍ୱଶୁରଜୀ ନିଜେ ଘୋଡ଼ି ହୋଇଥିବା ଉଲ୍ ଗୁଦରଟିକୁ ଦୁଧବାଲା ହାତରେ ଧରାଇଦେଲେ; ମାତ୍ର ସେତିକରେ କଳହ ତୁଟିନା ନାହିଁ । ଦୁଧବାଲା ଯେଉଁ ଦୁଧ ପିଆଇଥିଲା, ସେଥିଲାଗି ପଇସା ମାଗିବସିଲା । ଶ୍ୱଶୁରଜୀ ସେଥିଲାଗି ପାଞ୍ଚଟି ଟଙ୍କା ଦୁଧବାଲାକୁ ଦେଇ ତାକୁ ସନ୍ତୁଷ୍ଟ କରାଇଲେ । ଧରେ ସମସ୍ତେ ମନ ଆନନ୍ଦରେ ଏଡ଼କୁ ଫେରି ଆସିଲେ ।

**ଅଣବାବୁଆ –**

ଶାସ୍ତ୍ରୀଜୀଙ୍କର ଜନ୍ମସ୍ଥାନ ରାମନଗର ଓ ମାମୁଁଘର ମିର୍ଜାପୁର । ଗଙ୍ଗାର ଗୋଟିଏ ପଟେ ରାମନଗର ଓ ଅନ୍ୟପଟେ ବନାରସ । ଶାସ୍ତ୍ରୀଜୀ ବର୍ଷେ ଚାରିମାସର ପିଲା ହୋଇଥିବାବେଳେ ଶ୍ୱଶୁରଜୀଙ୍କର ପରଲୋକ ହୋଇଯାଇଥିଲା ଏବଂ ସେ ଦେଢ଼ବର୍ଷର ହୋଇଥିବାବେଳେ ତାଙ୍କ ଅଜାଙ୍କର ମୃତ୍ୟୁ ହୋଇଥିଲା । ଆଠବର୍ଷ ବୟସରେ ସେ (ଶାସ୍ତ୍ରୀଜୀ) ବନାରସରେ ଥିବା ତାଙ୍କର ଜଣେ ସମ୍ପର୍କୀୟ ବନ୍ଧୁଙ୍କ ଘରକୁ ଆସିଲେ । ସେହି ବନ୍ଧୁ ଦୟାପରବଶ ହୋଇ ତାଙ୍କ ପଢ଼ାପଢ଼ିର ଭାର ଗ୍ରହଣ କରିଥିଲେ । ସେ ଅବଶ୍ୟ ତାଙ୍କୁ ସ୍ନେହ କରୁଥିଲେ; ମାତ୍ର ସେ ସ୍ନେହରେ ଏକ ପ୍ରକାର ଲୋକଦେଖାଣିଆ ଭାବ ଅଧିକ ମାତ୍ରାରେ ରହିଥିଲା । ତାଙ୍କ ଘର ଓ ବାହାରର ଛୋଟକାଟିଆ କାମସବୁ ଶାସ୍ତ୍ରୀଜୀ କରୁଥିଲେ । ବଜାରରୁ ସେ ସଉଦାପତ୍ର ଆଣୁଥିଲେ; ତଥାପି ତାଙ୍କ ଖାଇବାପିଇବାରେ ପାତର ଅନ୍ତର କରାଯାଉଥିଲା । ପୂଜାପାର୍ବଣରେ ଏପରି କେତେକ ପିଠାପଣା ହେଉଥିଲା, ଯାହା ଶାସ୍ତ୍ରୀଜୀଙ୍କୁ ମିଳୁ ନ ଥିଲା । ବନ୍ଧୁଙ୍କ ପତ୍ନୀ ଭଲ ଭଲ ଜିନିଷ ନିଜ ପିଲାମାନଙ୍କୁ ଦେଉଥିଲେ । ଶାସ୍ତ୍ରୀଜୀ ପିଲାଙ୍କ ପାଖରେ ଛିଡ଼ା ହୋଇ ନିରାଶ ହେଉଥିଲେ । ଏହିପରି ସମୟରେ ଶାସ୍ତ୍ରୀଜୀ କେତେବେଳେ ବାହାରକୁ ଚାଲିଯାଉଥିଲେ, ଆଉ କେତେବେଳେ ଛାତ ଉପରେ ଯାଇ ବସି ରହୁଥିଲେ ।

ଶାସ୍ତ୍ରୀଜୀ ପିଲାଟି ଦିନରୁ ସହନଶୀଳ ଥିଲେ । ନିଜର ଅବସ୍ଥାକୁ ଚାହିଁ ଦୁଃଖ ସହିବାରେ ତାଙ୍କର ଅପୂର୍ବ ଶକ୍ତି ଥିଲା । ଶାସ୍ତ୍ରୀଜୀ ଯେପରି ମା'ଙ୍କୀଙ୍କର ସର୍ବସ୍ୱ ଥିଲେ, ତାଙ୍କ ପକ୍ଷରେ ମା'ଜୀ ମଧ୍ୟ ପରମ ଆଦରଣୀୟା ଥିଲେ । ପିଲାଟି ଦିନରୁ ମା'ଜୀଙ୍କର ଅବସ୍ଥା ସମ୍ବନ୍ଧରେ ସେ ଅନୁମାନ କରି ନେଇଥିଲେ । ତେଣୁ ସେହି ଦିନରୁ ଯେ କୌଣସି ଅବସ୍ଥାରେ ନିଜକୁ କୌଣସିମତେ ଚଳାଇ ନେବାରେ ସେ ଯତ୍ନଶୀଳ ହୋଇଥିଲେ । କେବେକେବେ ତାଙ୍କୁ ସେହି ବନ୍ଧୁଙ୍କଠାରୁ ପଇସେ ଦି'ପଇସା ମିଳୁଥିଲା । ସେ ସେହି ପଇସାରେ କିଛି କିଣି ଖାଇବା ପରିବର୍ତ୍ତେ ତାକୁ ସାଇତି ରଖୁଥିଲେ । କାଳେ କେତେବେଳେ ପେନ୍‌ସିଲ, କଲମ ବା ନିବ କିଣିବା ଲାଗି ମାଙ୍କୁ ପଇସା ମାଗିବାକୁ ପଡ଼ିବ, ସେଥିଲାଗି ସେ ସେଇଥିରେ କେତେକ ଦରକାରୀ ଜିନିଷ କିଣୁଥିଲେ ।

ଥରେ ଶାସ୍ତ୍ରୀଜୀ କୌଣସି ଛୁଟିରେ ରାମନଗର ଯାଉଥିଲେ । ବାଟରେ ଗୋଟିଏ ଅଙ୍ଗୁର ବିକାଳୀକୁ ଦେଖି ଅଙ୍ଗୁର ଖାଇବାକୁ ତାଙ୍କର ଲୋଭ ହେଲା । ପକେଟରୁ ପଇସାଟିଏ କାଢ଼ି ଅଙ୍ଗୁରବାଲାକୁ ଦେଲେ । ସେ ଚାରୋଟି ଅଙ୍ଗୁର ଶାସ୍ତ୍ରୀଜୀଙ୍କୁ ଧରାଇଦେଲା; କିନ୍ତୁ ସଙ୍ଗେ ସଙ୍ଗେ ତାଙ୍କର ମନେପଡ଼ିଲା ଯେ, ସେହି ଚାରୋଟି ଅଙ୍ଗୁରକୁ ନେଇ ଘରେ କିପରି ବାଣ୍ଟିବେ ? ଆଉ ପଇସା ତାଙ୍କ ପାଖରେ ନଥିଲା, କେବଳ ଗଙ୍ଗା

ପାର ହେବାଲାଗି ତାଙ୍କ ପାଖରେ ନାଆଭଡ଼ା ମାଗି ଥିଲା । ତେଣୁ ସେ ଅଙ୍କୁର ଫେରାଇ ଦେବାଲାଗି ଗୁହାଁରିବାରୁ ଅଙ୍କୁରବାଲା ବିଗିଡ଼ିଲା । ଅଙ୍କୁରବାଲାର ଅନିଚ୍ଛାସତ୍ତ୍ୱେ କୌଣସିମତେ ବକ୍‌ବକ୍ ଝଙ୍କଝଙ୍କ୍ କରି ଶାସ୍ତ୍ରୀଜୀ ନିଜ ପଇସାଟିକୁ ଫେରାଇ ନେଲେ । ପରେ ସେ ପଇସାଟିରେ ଖଣ୍ଡିଏ ପୋଷ୍ଟକାର୍ଡ଼ କିଣିଆଣି ମା'ଙ୍କୁ ଦେଇଦେଲେ । ପଇସା ଅଭାବବେଳେ ଥରେ ତାଙ୍କୁ କୌଣସି ଜରୁରି କାମରେ ରାମନଗର ଯିବାକୁ ପଡ଼ିଲା । ସେହି ମୁହଁ ସଞ୍ଜବେଳେ ସେ ପହଁରି ପହଁରି ଗଙ୍ଗା ପାରିହୋଇ ଯାଇଥିଲେ !!!

ପଞ୍ଚମ ଶ୍ରେଣୀରେ ପଢୁଥିବା ସମୟର ଗୋଟିଏ ଘଟଣା । ପାଖରେ ଗୋଟିଏ ପିଜୁଳି ବଗିଚା ଥିଲା । କେବେ କେବେ ଛୁଟିଦିନ ଦି'ପହର ବେଳେ ପିଲାମାନେ ସେଠାକୁ ପିଜୁଳି ତୋଳିବାକୁ ଯାଉଥିଲେ । ଦିନେ ଶାସ୍ତ୍ରୀଙ୍କୁ ପିଲାମାନେ ଭିଡ଼ିଓଟାରି ନେଇଗଲେ । ପିଲାମାନେ ବଗିଚାର ଗ୍ରେଟ ପାଚେରିଟିକୁ ଡେଇଁ ଭିତରେ ପଶିବାକୁ ଉଦ୍ୟମ କରିବାରୁ ଶାସ୍ତ୍ରୀଜୀ ସେପରି ଭାବରେ ଯିବାକୁ ମଙ୍ଗିଲେ ନାହିଁ, କିନ୍ତୁ ପିଲାଏ କାହିଁକି ମାନନ୍ତେ ! ସେମାନେ ତାଙ୍କୁ ଧମକ ଚମକ ଦେଖାଇ ପାଚେରି ଡେଇଁବାକୁ ବାଧ୍ୟକଲେ । ସେ ଡେଇଁ ପଡ଼ିଲେ ସିନା କିନ୍ତୁ ପିଜୁଳି ନ ତୋଳି ଚୁପ୍ ଚାପ୍ ଗୋଟିଏ ପାଖରେ ଛିଡ଼ାହୋଇ ରହିଲେ । ହଁ, ସେଇ ପାଖରେ ଥିବା ଗୋଟିଏ କିଆଗଛରୁ ଗୋଲାପଫୁଲଟିଏ ତୋଳିଥିଲେ । ଯା'ରି ମଧ୍ୟରେ ବଗିଚାର ମାଳୀ ଆସି ପହଞ୍ଚିଲା । ସବୁ ପିଲାଏ ପାଚେରି ଡେଇଁ ପଳାଇ ଗଲେ, କିନ୍ତୁ ଶାସ୍ତ୍ରୀଜୀ କିଛି ଚୋରି କରି ନ ଥିବାରୁ ସେହି ସାହସରେ ଛିଡ଼ା ହୋଇ ରହିଲେ; କାରଣ ଚୋରି କରି ନ ଥିବା ପିଲାର ମାଳୀ କ'ଣ କରିବ ? କିନ୍ତୁ ଫଳ ହେଲା ଓଲଟା । ସେ ନିଜର ସାଧୁତା ସମ୍ବନ୍ଧରେ ଯେତେ ପ୍ରମାଣ ଦେଇଥିଲେ ହେଁ ମାଳୀ ତାଙ୍କୁ ଧରି ଦୁଇ ଚାରି ଚାପୁଡ଼ା ମାରିଲା । ଶାସ୍ତ୍ରୀଜୀ କାନ୍ଦିବାକୁ ଲାଗିଲେ ଏବଂ ଧିକେଇ ହୋଇ କହିଲେ –"ମୋତେ ମାରନା, ମୋର ବାପା ନାହିଁ ।" ମାଳୀ ଖୁବ୍ ଚିଡ଼ିଯାଇ ଆହୁରି ଦୁଇଚାରି ଚାପୁଡ଼ା କଷିଦେଇ କହିଲା –"ଅଣବାପୁଆଟେ···ତଥାପି ତୋର ଏତେ ଗୁଣ ? ତୋର ଚାଲିଚଳଣି ଭଲହେବା ଦରକାର ! ତୋର ଭଲ କାମ କରିବା ଉଚିତ ! ଯାଃ···ପଳା···!"

ପିଲାଦିନରୁ ଯେବେ କେହି ଶାସ୍ତ୍ରୀଜୀଙ୍କୁ ଗାଳିଗୁଲଜ କରେ କିମ୍ବା ଭଲମନ୍ଦରେ ବିଗିଡ଼େ, ତା'ହେଲେ ଅନ୍ୟ ଲୋକମାନେ କହନ୍ତି –"ବାପ ଛେଉଣ୍ଡ ପିଲା, ଛାଡ଼ ଛାଡ଼ ।" ତା' ଫଳରେ ଶାସ୍ତ୍ରୀଜୀଙ୍କର ବିପଦ-ଆପଦ କଟିଯାଏ । ତେଣୁ ଯେ ପର୍ଯ୍ୟନ୍ତ ଶାସ୍ତ୍ରୀଜୀଙ୍କର ବୁଝିବା ଶକ୍ତି ଆସି ନ ଥିଲା ସେ ପର୍ଯ୍ୟନ୍ତ ସେ ଏଇଭଳି ଅବସରରେ ନିଜେ ସେହି କଥା କହି ଦେଉଥିଲେ, ସଙ୍ଗିନ୍ ମାମଲାରୁ ପାର ଉତାର ହୋଇ ଯାଉଥିଲେ ।

ସେହି ବନ୍ଧୁଙ୍କ ଘରେ ଗୋଟିଏ ପିଲା ରହୁଥିଲା । ଦୁର୍ଭାଗ୍ୟବଶତଃ ତାକୁ ହଇଜା ହେଲାରୁ ଶାସ୍ତ୍ରୀଜୀଙ୍କୁ ହିଁ ତା'ର ଦେଖାଶୁଣା କରିବାକୁ କୁହାଗଲା । ସତରେ ସେ ପିଲାଟିର

ଅବସ୍ଥା ଅତି ଶୋଚନୀୟ ହୋଇପଡ଼ିଲା । ତା'ର ଆଖି ଡ଼ିମା ଡ଼ିମା ହୋଇଗଲା । ଜିଭ ନାହାରକୁ ବାହାରି ଆସିଲା ଏବଂ ତା'ର ହାତଗୋଡ଼ କାଠିପରି ହୋଇ ବଙ୍କା ହୋଇଗଲା । ଶେଷରେ ସେ ମରିଗଲା । ଶାସ୍ତ୍ରୀଜୀ ସେ ପିଲାଟିର ଭୟଙ୍କର ଅବସ୍ଥା ଦେଖି ପ୍ରାଣ ଖୋଲିକରି କାନ୍ଦିବାକୁ ଲାଗିଲେ; କିନ୍ତୁ ଘର ଭିତରୁ କୌଣସି ଲୋକ ସେଠାକୁ ଆସିଲେ ନାହିଁ । ପରଦିନ ମୂର୍ଦ୍ଦାର ଉଠିଯିବା ପରେ ସବୁ ଲୁଗାପଟା ଶାସ୍ତ୍ରୀଜୀଙ୍କୁ ହିଁ ଧୋଇବାକୁ ଦିଆଗଲା । ସେ ସେହି ଲୁଗାତକ ଧରି ନିକଟବର୍ତ୍ତୀ ଗୋଟିଏ କୂଅ ପାଖକୁ ଗଲେ । ସେଠାରେ ସେ ଲୁଗା ଧୋଉଥାନ୍ତି ଏବଂ କାନ୍ଦୁଥାନ୍ତି । କେତେ ସମୟ ପରେ ସେ ମୁଣ୍ଡଟେକି ଚାହିଁ ଦେଖିଲେ ଯେ, ତାଙ୍କ ମା' ଆସୁଛନ୍ତି । ସେ ଅନେକ ସମୟ ପର୍ଯ୍ୟନ୍ତ ମା'ଙ୍କୁ ଜାବୁଡ଼ି ଧରି କାନ୍ଦି କାନ୍ଦି ସବୁ କଥା କହିଲେ ।

ମା'ଙ୍କ କହିଲେ, ଯେଉଁ ରାତିରେ ସେ ପିଲାଟି ମରିଗଲା, ସେହି ରାତିରେ ସେ ଶାସ୍ତ୍ରୀଜୀଙ୍କ ସମ୍ବନ୍ଧରେ କେତେକ ଖରାପ ସ୍ୱପ୍ନ ଦେଖି ବଡ଼ଭୋରୁ ରାମନଗରରୁ ବନାରସ ଚାଲି ଆସିଲେ । ପରେ ସମସ୍ତଙ୍କ ବାରଣ ସତ୍ତ୍ୱେ ସେ ଅଟକି ନ ଥିଲେ ।

ଯେତେବେଳେ ସେହି ବନ୍ଧୁ ଓ ତାଙ୍କ ପତ୍ନୀଙ୍କ ଉପରେ ବିରକ୍ତ ହୋଇ, ତଥା ତାଙ୍କ ଉପରେ ଘଟି ଏ ଘଟଣା ସମ୍ବନ୍ଧରେ ପଚାରିଗଲା, ଶାସ୍ତ୍ରୀଜୀ ଅତି ବିନୀତ ଭାବରେ କହିଲେ – "ଜୀବନରେ ଏଭଳି ଅନେକ କଷ୍ଟ ଘଟିଥାଏ । କାହାରି ମନ୍ଦ ଚାହିଁବା ଉଚିତ ନୁହେଁ । ଗଲା କଥା ତ ଗଲାଣି, ଆଉ ପଛ କଥା ଉଠାଇ ଲାଭ କ'ଣ ?

ନ'ଣହି – ଟଙ୍କା –

ହରିଶ୍ଚନ୍ଦ୍ର କଲେଜର ଘଟଣା; ଶାସ୍ତ୍ରୀଜୀ ହାଇସ୍କୁଲରେ ପଢୁଥିବା ବେଳେ ତାଙ୍କ "କ୍ଲାସ ଟିଚର" ଥିଲେ ପଣ୍ଡିତ ନିତ୍ୟାମେଶ୍ୱର ପ୍ରସାଦ । ସେ ଦିନେ କ୍ଲାସର ପିଲାମାନଙ୍କୁ କୌଣସି ଏକ ଯାତ୍ରା ଦେଖାଇବାର ଯୋଜନା ପ୍ରସ୍ତୁତ କଲେ । ପ୍ରତ୍ୟେକ ପିଲା ଅତି କମ୍‌ରେ ଘରୁ ଏକଅଣା କରି ଆଣିବା ଲାଗି ସେ କହିଥିଲେ । ପରଦିନ ଯେତେବେଳେ ଯାତ୍ରାକୁ ଯିବାଲାଗି ସମସ୍ତେ ସଜବାଜ ହେଲେ, ସେତେବେଳେ ଶାସ୍ତ୍ରୀଜୀ ଯିବାକୁ ରାଜି ହେଲେନାହିଁ । ଯାହା ଦେଖି ପଣ୍ଡିତଜୀ ପଚାରିଲେ—

"ଯିବୁନାହିଁ କାହିଁକି ?"

"ଏମିତି ! ଯାତ୍ରା ଦେଖିବାକୁ ମନ ହେଉନାହିଁ !"

"ପଇସା ଆଣିଛୁ ?"

"ହଁ !

"ବାହାର କର !"

ଶାସ୍ତ୍ରୀଜୀ ପକେଟରେ ହାତ ଭରିଲେ ସତ, କିନ୍ତୁ ପଇସା ବାହାର କଲେନାହିଁ । ତହୁଁ ପଣ୍ଡିତଜୀ ନିଜେ ହାତ ପୂରାଇ ଦେଖିଲେ, ସେଥିରେ ମାତ୍ର ଗୋଟିଏ ପଇସା ଥିଲା । ପଣ୍ଡିତଜୀ ସବୁ ପିଲାମାନଙ୍କୁ ନେଇ ଯାତ୍ରାକୁ ଚାଲିଗଲେ । ସନ୍ଧ୍ୟାରେ ଫେରିବାପରେ ସେ ଶାସ୍ତ୍ରୀଜୀଙ୍କୁ ନିଜ ଘରକୁ ନେଇଗଲେ । ବାଟସାରା ତାଙ୍କୁ ସବୁକଥା ପଚାରି ବୁଝିଲେ । ଘରେ ପହଞ୍ଚିବା ମାତ୍ରେ ସେ ନିଜ ସ୍ତ୍ରୀଙ୍କୁ ଡାକି କହିଲେ "ଭାଉଜ, ଦେଖ, ମୁଁ ତୁମପାଇଁ ଗୋଟିଏ ପିଲା ଆଣିଛି ।" ତାଙ୍କ ସ୍ତ୍ରୀ ଭାବିଲେ, ବୋଧହୁଏ ଗୋଟିଏ ଚାକର ପିଲା ଆଣିଛନ୍ତି; ମାତ୍ର ଯେତେବେଳେ ପଣ୍ଡିତଜୀ ନେଇ ତାଙ୍କ କୋଳରେ ପିଲାଟିଏ ବସାଇଲେ, ସେ ଶାସ୍ତ୍ରୀଜୀଙ୍କର ସରଳ ଓ ନିଷ୍ପାପ ଠାଣିରେ ମୁଗ୍ଧ ହୋଇ ତାଙ୍କୁ ଚାହିଁ ରହିଲେ । ପଣ୍ଡିତଜୀ ପୁଣି କହିଲେ—"ଆଜିଠାରୁ ତିନୋଟି ପରିବର୍ତ୍ତେ ତୁମର ଚାରୋଟି ପିଲା ହେଲେ ।" ତା'ପରେ ପଣ୍ଡିତଜୀ ଗୋଟି ଗୋଟି କରି ଶାସ୍ତ୍ରୀଜୀଙ୍କ ସମ୍ବନ୍ଧରେ ସବୁ ଘଟଣା କହିଗଲେ ।

ବାସ୍ତବରେ ଭାଉଜୀ ଶାସ୍ତ୍ରୀଜୀଙ୍କୁ ନିଜ ପିଲାମାନଙ୍କପରି ଆଦର ଯତ୍ନ କରୁଥିଲେ । ସେ ପ୍ରତିଦିନ ସ୍କୁଲ ଛୁଟିପରେ ଶାସ୍ତ୍ରୀଜୀଙ୍କୁ ଡକାଇ ନିଜ ପିଲାମାନଙ୍କ ସହିତ ଭଲ ଭଲ ଜିନିଷ ଖୁଆଇ ଘରକୁ ଛାଡୁଥିଲେ । କୌଣସି ଦିନ ସ୍କୁଲ ଶୀଘ୍ର ଛୁଟି ହୋଇଗଲେ ଶାସ୍ତ୍ରୀଜୀ ପ୍ରଥମେ ଘରକୁ ଯାଇଁ ପୁଣି ସଞ୍ଜବେଳକୁ ଭାଉଜୀଙ୍କ ଘରକୁ ଆସୁଥିଲେ । ଯଦି କୌଣସି ଦିନ ଅସୁବିଧାବଶତଃ କିମ୍ବା ସଙ୍କୋଚବଶତଃ ସେ ନ ଆସନ୍ତି, ତା' ହେଲେ ଭାଉଜୀ ପରଦିନ ଦୁଃଖକରି ଶାସ୍ତ୍ରୀଜୀଙ୍କ ଉପରେ ସ୍ନେହକୋମଳ ଅଭିମାନ ଅଜାଡ଼ି ଦିଅନ୍ତି । ପୂଜା-ପାର୍ବଣ ଦିନରେ ନିଜେ ପଣ୍ଡିତଜୀ ତାଙ୍କ ଘରକୁ ଶାସ୍ତ୍ରୀଜୀଙ୍କୁ ପଠାଇ ଦେବାଲାଗି ଅଭିଭାବକଙ୍କୁ କହିଦିଅନ୍ତି । କିଛି ଦିନଯାଏଁ ଏ ପ୍ରକାର ଆଦର ସୋହାଗ ଚାଲିଲା; କିନ୍ତୁ ଧୀରେ ଧୀରେ ଶାସ୍ତ୍ରୀଜୀ ଏଥିରୁ ଦେହଛଡ଼ା ଦେଇ ରହିବାକୁ ଲାଗିଲେ । ପ୍ରତିଦିନ ଖାଇବାଲାଗି ପଣ୍ଡିତଜୀଙ୍କ ଘରକୁ ଯିବାରେ ତାଙ୍କୁ କେମିତିକା ଲାଗିଲା । ଶାସ୍ତ୍ରୀଜୀଙ୍କର ଏ ପ୍ରକାର ଭାବନାକୁ ପଣ୍ଡିତଜୀ ବୁଝିପାରିଲେ । ସେ ଏଥିଲାଗି ପୁଣି ଅନ୍ୟ ଏକ କୌଶଳ ଖଞ୍ଜିଲେ । ଦିନେ ସେ (ପଣ୍ଡିତଜୀ) ସଞ୍ଜବେଳେ ଶାସ୍ତ୍ରୀଜୀଙ୍କ ଅଭିଭାବକଙ୍କୁ ଦେଖାକରି ତାଙ୍କରି ଆଗରେ କହିଲେ ଯେ, ସେ (ଶାସ୍ତ୍ରୀଜୀ) ପ୍ରତିଦିନ ସନ୍ଧ୍ୟାରେ ଯାଇ ଘଣ୍ଟାଏ ତାଙ୍କ ପିଲାଙ୍କୁ ପଢ଼ାଇ ଦେଇ ଆସିବେ । ଏବେ ଆଉ କ'ଣ ଉପାୟ ? ଶାସ୍ତ୍ରୀଜୀ ପିଲାମାନଙ୍କୁ ପଢ଼ାଇବାକୁ ଗଲେ । ପାଠପଢ଼ା ପରେ ଭାଉଜୀ ଆଗପରି ଜଳଖିଆ ଖୁଆଇ ତା'ପରେ ଯିବାକୁ କହୁଥିଲେ ।

ମାସଟିଏ ଗଲାପରେ ଭାଉଜୀ ଶାସ୍ତ୍ରୀଜୀଙ୍କୁ ପଢ଼ାଇବା ବାବଦ ଦରମା ଆଣି ଦେଲାରୁ ସେ ଆପତ୍ତି କରି କହିଲେ, "ଘରେ ଭଉଣୀଙ୍କୁ ପଢ଼ାଇବା ଲାଗି କିଏ କ'ଣ ଦରମା ନିଏ କି ? ମୁଁ ଏହା ନେଇପାରିବି ନାହିଁ ।" ଭାଉଜୀ ଅନେକ ପ୍ରକାର ବୁଝାଇଲେ, ମାତ୍ର ଶାସ୍ତ୍ରୀଜୀ କୌଣସି ମତେ ଟଙ୍କା ନେଲେ ନାହିଁ । ତେଣୁ ପଣ୍ଡିତଜୀଙ୍କ ମତ ନେଇ ଭାଉଜୀ ଆଉ ଗୋଟିଏ ନୂତନ କୌଶଳ ବାହାର କଲେ । ସେ ନିଜ କୋଠରୀର ଚାରିକୋଣରେ ଚାରୋଟି ସଞ୍ଚୟ ଡିବା ପୋତିଲେ । ସନ୍ଧ୍ୟାବେଳକୁ ଶାସ୍ତ୍ରୀଜୀ ଆସିଲାରୁ ନିଜର ତିନି ପିଲା ଓ ତାଙ୍କପାଇଁ ନିର୍ଦ୍ଦିଷ୍ଟ ଥିବା ଗୋଟିଏ ସଞ୍ଚୟ ଡିବା ଦେଖାଇ ଦେଇ ସମସ୍ତଙ୍କୁ ନିଜ ନିଜ ଡିବାରେ ପଇସା ପକାଇବାଲାଗି କହିଲେ । ସେ ଆହୁରି କହିଲେ—"ପ୍ରତି ମାସ ଶେଷରେ ସମସ୍ତଙ୍କ ସଞ୍ଚୟ ଡିବା ଖୋଲାଯାଇ ପଇସା ଗଣାହେବ ।" ମାସସାରା ସମସ୍ତେ ପଇସା ପକାଇବାକୁ ଲାଗିଲେ । ଶାସ୍ତ୍ରୀଜୀ କେବେ-କେବେ କେଉଁଠୁ ପଇସେ ଦି' ପଇସା ପାଇଲେ ସେଥିରେ ପକାଇ ଦେଉଥିଲେ । ମାସ ଶେଷ ହେବାପରେ ସମସ୍ତଙ୍କ ସଞ୍ଚୟଡିବା ଖୋଲା ହେଲା । ଶାସ୍ତ୍ରୀଜୀଙ୍କ ଡିବାରୁ ପଇସା ବ୍ୟତୀତ କେତୋଟି ଟଙ୍କା ବାହାରିଲା । ଶାସ୍ତ୍ରୀଜୀ ସେ ପଇସା ନେବାକୁ ଅସ୍ୱୀକାର କରି ପଇସା ସବୁ ଭାଉଜୀ ପକାଇଛନ୍ତି ବୋଲି କହିଲେ । ଆଉ କେବେ ଟଙ୍କା ପକାଇବେ ନାହିଁ ବୋଲି କହି ଭାଉଜୀ ସବୁ ପଇସାତକ ଡିବାରେ ରଖିଲେ । ପୁଣି ଆର ମାସ ଶେଷରେ ଡିବା ଖୋଲିଯିବାର ନିଶ୍ଚିତ ହେଲା । ପୁଣି ପର ମାସରେ ଡିବା ଖୋଲି ଯିବାରୁ ଶାସ୍ତ୍ରୀଜୀଙ୍କ ଡିବାରେ ଅଧିକ ପଇସା ଥିବାର ଦେଖାଗଲା । ଶାସ୍ତ୍ରୀଜୀ ଏହାକୁ ମଧ୍ୟ ନେବାକୁ ଅସ୍ୱୀକାର କଲେ । ଏହିପରି ଭାବରେ ପ୍ରତିମାସରେ ଡିବା ଖୋଲାଯାଏ ଏବଂ ଶାସ୍ତ୍ରୀଜୀଙ୍କ ସଞ୍ଚୟ ଡିବାରୁ ଅଧିକ ପଇସା ବାହାରେ । ଶାସ୍ତ୍ରୀଜୀ ସେ ଟଙ୍କା ନେବାକୁ ରାଜି ନ ହେବାରୁ ଭାଉଜୀ ପୂର୍ବପରି ଡିବାରେ ଟଙ୍କା ଓ ପଇସା ପକାଇବାକୁ ଲାଗିଲେ ଏବଂ ସେ ପୁଞ୍ଜି ବଢ଼ି ବଢ଼ି ନଅ ଶହ ଟଙ୍କା ହୋଇଗଲା । ଯେତେବେଳେ ଶାସ୍ତ୍ରୀଜୀ ନିଜ ଭଉଣୀ ସୁନ୍ଦରୀଦେବୀଙ୍କର ବିବାହ କରାଇଲେ, ସେତେବେଳେ ଭାଉଜୀ ସେ ଟଙ୍କାତକ ଆଣି ମା'ଜୀଙ୍କୁ ଦେଇ ବିବାହରେ ଖର୍ଚ୍ଚ କରିବାଲାଗି କହିଥିଲେ । ଭାଉଜୀ ମା'ଜୀଙ୍କୁ ଆହୁରି ମଧ୍ୟ କହିଥିଲେ ଯେ, ବାରମ୍ବାର କହିଲେ ସୁଦ୍ଧା ଶାସ୍ତ୍ରୀଜୀ ସେ ଟଙ୍କା ନେବାକୁ ରାଜି ହେଲେ ନାହିଁ ଏବଂ ଶାସ୍ତ୍ରୀଙ୍କ ନାମରେ ସେ ଟଙ୍କା ଜମା ଥିବାରୁ ତାହା ସେ ନିଜ କାମରେ ଖର୍ଚ୍ଚ କରିପାରିବେ ନାହିଁ ।

ଶାସ୍ତ୍ରୀଜୀ ନିଜର ଜୀବନକାଳ ମଧ୍ୟରେ ପଣ୍ଡିତଜୀ ଓ ଭାଉଜୀଙ୍କୁ ନିଜର ବାପା ବୋଉଙ୍କ ପରି ଆଦର ଓ ସମ୍ମାନ କରୁଥିଲେ । ମୁଁ ତ ଆଜି ସୁଦ୍ଧା ଯେପରି ସାନ ନଣନ୍ଦ ସୁନ୍ଦରୀ ଦେବୀଙ୍କୁ ଆଦର ଯତ୍ନ କରେ, ଠିକ୍ ସେହିପରି ଏହ୍ଲାବାଦରେ ବିବାହ କରିଥିବା ପଣ୍ଡିତଜୀଙ୍କର ଗୋଟିଏ ଝିଅଙ୍କୁ ଆଦର ସମ୍ମାନ କରେ । ଶାସ୍ତ୍ରୀଜୀ ଯେତେବେଳେ

ଏହ୍ଲାବାଦ ଆସନ୍ତି, ସେତେବେଳେ ଆମେ ସର୍ବପ୍ରଥମେ ତାଙ୍କ ଘରକୁ ଯାଇଁ କିମ୍ବା ତାଙ୍କୁ ଆସିବାକୁ ଖବର ପଠାଉଁ । ଏହା ନ କଲେ, ଯଦି ତାଙ୍କୁ ଆମ ଆସିବାର ଖବର ମିଳିଯାଏ, ତା'ହେଲେ ସେ ଆସି କାନ୍ଦିପକାନ୍ତି ଓ ଆମ ଉପରେ ଅଭିମାନ କରି କହନ୍ତି—"ଭାଇ ତ ମୋତେ ଭୁଲି ଗଲେଣି !"

## ପଛକୁ ପାଦପକାନା—

ସେହି ସମୟରେ ଗାନ୍ଧିଜୀଙ୍କ ଆହ୍ୱାନକ୍ରମେ ସତ୍ୟାଗ୍ରହ ଆରମ୍ଭ ହେଲା । ପରୀକ୍ଷା ତ୍ୟାଗ କରି ସତ୍ୟାଗ୍ରହରେ ଯୋଗ ଦେବାଲାଗି ବାପୁଜୀ ପରୀକ୍ଷାର୍ଥୀମାନଙ୍କୁ ନିବେଦନ କଲେ । ହରିଶ୍ଚନ୍ଦ୍ର କଲେଜର ଫାଟକ ଆଗରେ କେତେଜଣ ସତ୍ୟାଗ୍ରହୀ ଧାରଣାଦେଇ ପରୀକ୍ଷା ନ ଦେବାକୁ ଛାତ୍ରଙ୍କଠାରେ ବିନୀତ ନିବେଦନ ଜଣାଇଲେ । ଶାସ୍ତ୍ରୀଜୀ କଲେଜଫାଟକ ନିକଟକୁ ଆସି ହଠାତ୍ ଛିଡ଼ା ହୋଇଗଲେ । ଯାହା କିଛି ହେଉନା କାହିଁକି ସତ୍ୟାଗ୍ରହୀଙ୍କୁ ଡେଇଁ ଭିତରକୁ ଯିବାଲାଗି ସେ ପ୍ରସ୍ତୁତ ନ ଥିଲେ, ତେଣୁ ସେ ଫେରି ଆସିଲେ । ତାଙ୍କ ସହିତ ଫେରି ଆସିଥିବା ବିଦ୍ୟାର୍ଥୀମାନଙ୍କ ମଧ୍ୟରେ ଶ୍ରୀ ତ୍ରିଭୁବନନାରାୟଣ ସିଂହ ଓ ବୋଧହୁଏ ଅଲଗୁରାୟ ଶାସ୍ତ୍ରୀଙ୍କ ବ୍ୟତୀତ ଆଉରି ଦୁଇତିନିଜଣ ଛାତ୍ର ଥିଲେ । ଶାସ୍ତ୍ରୀଜୀ ପରୀକ୍ଷା ବର୍ଜନ କରିଥିବାରୁ ତାଙ୍କର ବନ୍ଧୁ ବାନ୍ଧବ ତଥା ଶୁଭାକାଙ୍‌କ୍ଷୀମାନେ ତାଙ୍କ ଉପରେ ବିରକ୍ତି ପ୍ରକାଶ କଲେ । କେତେକ ବନ୍ଧୁବାନ୍ଧବ ଅତି ବିରକ୍ତ ହୋଇ କହିଲେ—"କେତେ କଷ୍ଟରେ ବିଚାରୀ ବିଧବା ଏ'କୁ ପାଠପଢ଼ାଉଥିଲା; କିନ୍ତୁ ଏ ପିଲାଟା ଛତର ହୋଇଗଲା । ବିଚାରୀ ବିଧବା ଡଙ୍ଗାପାଣିରୁ ଗଲା ।" ସମସ୍ତେ ଶାସ୍ତ୍ରୀଜୀଙ୍କ ଉପରେ ଚଡ଼୍ ଚଡ଼୍ ହେଉଥିଲେ । ପଣ୍ଡିତ ନିଷ୍କାମେଶ୍ୱରପ୍ରସାଦ ମଧ୍ୟ କେତେଦିନଯାଏଁ ଶାସ୍ତ୍ରୀଜୀଙ୍କୁ ବୁଝାଇଥିଲେ । ପରିଶେଷରେ ତାଙ୍କୁ ମଧ୍ୟ ଉତ୍ତର ମିଳିଲା—"ପଣ୍ଡିତଜୀ ! ଦେଶର ଆହ୍ୱାନ ଶୁଣି ପଛରେ ରହିଯିବା ମୋ' ପକ୍ଷେ ସମ୍ଭବ ନୁହେଁ, ମୁଁ ଆଉ ପରୀକ୍ଷା ଦେଇପାରିବି ନାହିଁ ।" ପଣ୍ଡିତଜୀ ତାହା ଶୁଣି ଆଉ କିଛି କହିଲେ ନାହିଁ । ଏହାପରେ ଶାସ୍ତ୍ରୀଜୀ ରାମନଗର ଚାଲିଆସିଲେ । ସେଠାରେ ମଧ୍ୟ ସେହି ଅବସ୍ଥା । ସମସ୍ତେ ତାଙ୍କୁ ଛି ଛାକର କଲେ । ଯାହା ଯାହା ଆସିଲା, ସେତା' କହିଲେ; କିନ୍ତୁ ସେଥିଲାଗି ତାଙ୍କର ତିଳେ ହେଲେ ଚିନ୍ତା ନ ଥିଲା । ଶାସ୍ତ୍ରୀଜୀ ଦିନେ ଏକାନ୍ତରେ ମା'ଜୀଙ୍କୁ ପଚାରିଲେ—"ତୁମେ କ'ଣ କହୁଛ ମା' ଅନ୍ୟମାନେ ଯାହା କହୁଛନ୍ତି ସେଥିପ୍ରତି କର୍ଣ୍ଣପାତ କରନାହିଁ । ତୁମେ ଯାହା କହିବ, ମୁଁ ତାହା ହିଁ ପାଳନ କରିବି । ମୁଁ କେବଳ ସେଇଆ ପଚାରିବା ଲାଗି ତୁମ ପାଖକୁ ଆସିଛି ।" ମା'ଜୀ ଶାସ୍ତ୍ରୀଙ୍କ ମୁଣ୍ଡ ଓ ପିଠି ଆଉଁସି ଦେଇ କହିଲେ—"ନଚଓ୍ୱା ! ତୁ ଯାହା କିଛି କରିଛୁ ଠିକ୍ ବିଚାର କରିଛୁ, ଆଗକୁ ଯାହା କରିବୁ ଭାବି ଚିନ୍ତି କରିବୁ, ଏ ଭରସା ମୋର ରହିଛି; କିନ୍ତୁ ମୋର କହିବାର କଥା ହେଉଛି, ଆଗକୁ ଯେବେ ଗୋଡ଼ ବଢ଼ାଇଛୁ, ଆଉ ପଛକୁ ପାଦୁଣ୍ଡ ପକାନା, ଏତିକି ।

ଶାସ୍ତ୍ରୀଜୀ ମା'ଜୀଙ୍କର ଏହି ବାଣୀକୁ ସମସ୍ତ ସମୟରେ ମନେ ପକାଉଥିଲେ । ତାହାହିଁ ଥିଲା —ତାଙ୍କ ଜୀବନ ପାଥେୟ ।

ଏହାପରେ ସେ କାଶୀ ବିଦ୍ୟାପୀଠରେ ପଢିବା ଆରମ୍ଭ କରିବା ସଙ୍ଗେ ସଙ୍ଗେ ଗୋଟିଏ ଖଦଭଣ୍ଡାରରେ ଗୃକଶ୍ମ କରୁଥିଲେ । ଦୋକାନରୁ ଦରମା ବାବଦ ଯାହା କିଛି ମିଳୁଥିଲା, ସେଥିରୁ କିଛି ମା'ଙ୍କୁ ଦେଉଥିଲେ; ଅବଶିଷ୍ଟ ପଇସାରୁ ନିଜ ଖର୍ଚ୍ଚ ଚଳାଇ କିଛି କିଛି ଜମା ରଖୁଥିଲେ । ନିଜର ସେହି କଷ୍ଟୋପାର୍ଜିତ ରୋଜଗାରରେ ଦୁଇ ଭଉଣୀଙ୍କର ବିବାହ ଖର୍ଚ୍ଚ ପୁରୁଖ୍ ଭୁରେ ତୁଲାଇଥିଲେ ।

## ଶାସ୍ତ୍ରୀଜୀଙ୍କ ବଂଶାବଳୀ



# ଦୁଇ

**କୌଶଲ୍ୟାଙ୍କ ଲଲମଣୀ—**

ଆମର ଘର ମିର୍ଜାପୁର ସହରର ଚେତଗଞ୍ଜ ମହଲରେ । ମୋ' ବାପାଙ୍କ ନାମ ବାବୁ ଗଣେଶପ୍ରସାଦ ଓ ମା'ଙ୍କ ନାମ କୌଶଲ୍ୟା ଦେବୀ । ମୋର ଡ଼ାକନାମ ଥିଲା ଲଲମଣୀ । ବାପା 'ଚୁନାର' ଗଡ଼ରେ କାମ କରୁଥିଲେ । କେତେଦିନ ପରେ ସେ ବନାରସକୁ ବଦଳି ହୋଇ ଯାଇଥିଲେ । ପରେ ସେଠାରୁ ଗୋରଖପୁରକୁ ଚାଲି ଯାଇଥିଲେ । ବାପା ଦଶହରା ଓ ଦୋଳ ପ୍ରଭୃତି ବଡ଼ ବଡ଼ ଛୁଟିରେ ଘରକୁ ଆସୁଥିଲେ । ଘରକୁ ଆସିବା ମାତ୍ରେ ତାଙ୍କର ପ୍ରଥମ କାମ ଥିଲା, ଗାଁର ଧୋବା, ବାରିକ, ଚମାର ପ୍ରଭୃତିଙ୍କ ଘରକୁ ଯାଇ ସେମାନଙ୍କ ଭଲମନ୍ଦ ବୁଝିବା । ସଂଦ୍ଧନ ପାଳନ କରିବାଲାଗି ସେମାନଙ୍କ ପାଖରେ କିଛି ଅଛି କି ନାହିଁ, ସେ ସମ୍ବନ୍ଧରେ ସେ ପଚାରି ବୁଝୁଥିଲେ । ଯାହାର କିଛି ବନ୍ଦୋବସ୍ତ ନ ଥାଏ, ତାକୁ ସଙ୍ଗେ ସଙ୍ଗେ କିଛି ସରଞ୍ଜାମ ଯୋଗାଇ ଦେଉଥିଲେ । ସେ କେବେ କେବେ ନିଜ ସଙ୍ଗରେ କିଛି ଲୁଗାପଟା ଧରି ଆସୁଥିଲେ ଏବଂ ସେଗୁଡ଼ିକୁ ଅସହାୟ ବ୍ୟକ୍ତିମାନଙ୍କ ମଧ୍ୟରେ ବାଣ୍ଟି ଦେଉଥିଲେ । ମୋ ମା' ତାଙ୍କର ଏ ପ୍ରକାର ଉଦାରତାରେ ବିରକ୍ତ ହେଉଥିଲେ । ମୁଁ ପ୍ରାୟ ବାପାଙ୍କ ସହିତ ଗାଁ ବୁଲି ଯାଉଥିଲି । ମୁଁ ଘରକୁ ଫେରି ଆସିଲେ, କାହାକୁ କ'ଣ ଦିଆଗଲା, ସେ ବିଷୟରେ ଟିକିନିଖି ଖବର ମା' ମୋଠାରୁ ବୁଝୁଥିଲେ । ସେ ତା'ପରେ ବାପାଙ୍କ ଉପରେ ଖୁବ୍ ବିରକ୍ତ ହେଉଥିଲେ । କିନ୍ତୁ ମୋ' ବାପା ମା'ଙ୍କ କଥା ଶୁଣି ନ ଶୁଣିଲାପରି ରହିଯାଉଥିଲେ । ମା'ଙ୍କର ଏ ପ୍ରକାର ବ୍ୟବହାର ମୋତେ ଭଲ ଲାଗୁ ନ ଥିଲା । ମୁଁ ବାପାଙ୍କ ପକ୍ଷନେଇ ନିଜର ଶ୍ରେଷ୍ଠ ବୁଦ୍ଧି ଅନୁସାରେ ମା'ଙ୍କ କଥାର ପ୍ରତିବାଦ କରୁଥିଲି । ମୋତେ ବାପାଙ୍କର ଏ ସବୁ କାମ ଭଲ ଲାଗୁଥିଲା ।

ଯେଉଁ ବର୍ଷ ଗାଁ-ଶୃହାଳୀରେ ମୋ' ନାମ ଲେଖା ହେଲା, ସେହି ବର୍ଷ ବାପାଙ୍କର କାଳ ହୋଇଗଲା । ଝିଅଙ୍କୁ ପାଠ ପଢ଼ାଇବା ଧନ୍ଦେହଜ ବୋଲି କାରଣ ଦର୍ଶାଇ ମୋ'

ପାଠପଢ଼ା ବନ୍ଦ କରିଦିଆଗଲା । ସେତେବେଳେ ମୋର 'ବୟସ ମାତ୍ର ଛ' ବର୍ଷ । ଯାହା କିଛି ଲେଖା ପଢ଼ା ମୁଁ ଶିଖିଛି, ଘରେ ରହି ଶିଖିଥିଲି । ମୋ' ଭାଇମାନେ ବେଶ୍ ରୋଜଗାର କରୁଥିଲେ, ତେଣୁ ଚଳାଚଳରେ କୌଣସି ପ୍ରକାର ଅସୁବିଧା ନ ଥିଲା । ମୁଁ ଜାଣେନି, କେମିତି କେଜାଣି, ବାପାଙ୍କ ଶିକ୍ଷାଧାରାର ବିକାଶ ମୋ'ଠାରେ ସମ୍ଭବ ହୋଇଥିଲା । ମୁଁ ଯଦି ଜାଣୁଥିଲି ଯେ, ଚାଉଳ ମନ୍ଦ ଅଭାବରେ କା' ଘରେ ରୋଷେଇ ହୋଇନି, ତା'ହେଲେ ଲୁଚେଇ ଚୋରେଇ ଗୋଟିଏ ପୋଟଳୀରେ ଅଟା କିମ୍ବା ଚାଉଳ ବାନ୍ଧି ତା'ଘରେ ଦେଇ ଆସୁଥିଲି । ମୋର ଏ ପ୍ରକାର କାରବାର, କେତେଦିନ ପରେ ମା' ଓ ଭାଉଜମାନେ ଜାଣି ମୋ' ଉପରେ ନଜର ରଖିଲେ । ଦି' ଚାରିଥର ଏପରି ଘଟିଛି, ମୁଁ ପୋଟଳୀ ନେଇ ଯାଉଥିବାବେଳେ ଧରାପଡ଼ିଛି । ମନାକରିବା ସତ୍ତ୍ୱେ ମୁଁ ନ ମାନିଲେ ମା' ଭାଉଜମାନଙ୍କୁ କହି ଦୁଆର ଶିକୁଳି ବନ୍ଦ କରାଇ ଦେଉଥିଲେ । ମୋ'ପ୍ରତି ଏ ପ୍ରକାର ବ୍ୟବହାରରେ ମୁଁ ମନେ ମନେ ଖୁବ୍ ଚିଡ଼ୁଥିଲି, ବେଳେ ବେଳେ କାନ୍ଦି ପକାଉଥିଲି । ମୋତେ ବାହାରକୁ ଛାଡ଼ିବା ପର୍ଯ୍ୟନ୍ତ ମୁଁ ସେହିଠାରେ ବସି କାନ୍ଦୁଥିଲି । ବାଧ୍ୟ ହୋଇ ଶେଷରେ ମା'ଙ୍କୁ ଶିକୁଳି ଖୋଲିବାକୁ ପଡ଼ୁଥିଲା ।

ଆମ ଘରକୁ ଲାଗି ଗୋଟିଏ ବାରିକ ଘର ଥିଲା । ହଠାତ୍ ବେମାର ପଡ଼ି ସେ ବାରିକଟି ମରିଗଲା । ବାରିକଟିର ବଡ଼ ପରିବାର; ତାର ପିଲାମାନେ ଛୋଟ ଛୋଟ ହୋଇଥିଲେ । ପରିବାରର ବଡ଼ ପୁଅର ବୟସ ମାତ୍ର ଦଶ ବର୍ଷ ଥିଲା । ଚଳିବା ବଡ଼ କଷ୍ଟକର ହୋଇପଡ଼ିଲା । ଦିନେ ସାହିର ବାରିକମାନେ ବସି ସ୍ଥିରକଲେ, ସ୍ୱର୍ଗତ ବାରିକଟିର ଘର ପାଖରେ ଥିବା ଅନ୍ୟାନ୍ୟ ଲୋକମାନଙ୍କୁ କ୍ଷୌରକରି ଯାହା ପଇସା ପାଇବେ, ନିଜେ ନ ନେଇ ସେଇ ଛେଉଣ୍ଡ ପିଲାମାନଙ୍କୁ ଦେଇଦେବେ । ଏହା କରିବା ସତ୍ତ୍ୱେ ମାସର କେଇ ଦିନ ଦାନା ଅଭାବରେ ତାଙ୍କ ଘରେ ଚୂଲି ଜଳୁ ନ ଥିଲା । ଆମଘର ଓ ତାଙ୍କ ଘର ମଝିରେ ଗୋଟିଏ ଛୋଟ ପାଚେରୀର ବ୍ୟବଧାନ ଥିବାରୁ ଯେଉଁଦିନ ତାଙ୍କ ଘରେ ଖାଇବା ପିଇବାର ଠିକଣା ନଥାଏ; ମୁଁ ସମସ୍ତଙ୍କ ଆଖିରେ ଅନ୍ଧପୋଟଳୀ ବାନ୍ଧି ତାଙ୍କ ଘର ଭିତରକୁ ଚାଉଳ ଡାଲିର ପୋଟଳୀ ଫିଙ୍ଗି ଦେଉଥିଲି । ମୋର ଏପ୍ରକାର ଚେଷ୍ଟା ମଧ୍ୟ ଦିନେ ମା'ଙ୍କ ଆଖିରେ ପଡ଼ିଲା; ସେ ସେଥିଲାଗି ମୋତେ ଖୁବ୍ ଗାଳିମନ୍ଦ କଲେ । ଘର ଭିତରେ ମୁଁ କୋଡ଼ପୋଛା ଝିଅ ହୋଇଥିବାରୁ ମା'ତ ମୋତେ ଭଲ ପାଉଥିଲେ;—ଭାଇମାନେ ମଧ୍ୟ ମୋତେ ଅତି ସ୍ନେହ କରୁଥିଲେ । ତା' ବ୍ୟତୀତ ମୁଁ କୌଣସି ଜିନିଷ ଲାଗି କେବେ ଅଝଟ କରୁ ନ ଥିଲି କିମ୍ବା କାହାରି ସହିତ ଜଳି କଜିଆ କରୁନଥିଲି । ସେଥିଲାଗି ଭାଇମାନେ ମୋତେ ବିଶେଷ ସ୍ନେହ କରୁଥିଲେ । ଘରକୁ ଲୁଗାପଟା ଆସିଲେ ସମସ୍ତେ ମନଲାଖି ଲୁଗା ବାଛି ନିଅନ୍ତି; ମାତ୍ର ମୋର ସେ ପ୍ରତି ସ୍ପୃହା ନ ଥାଏ । ଯାହା ବଳିପଡ଼େ ମୁଁ ନେଇନିଏ ।

**ଦୁଲ୍ଲର ନାନୀଙ୍କ ପୁଅ—**

ମା'ଜୀ ( ଶାଶୂ ) ଙ୍କ ନିଜ ଖୁଡ଼ୀର ବାପଘର ଆମ ସାହିରେ ଏବଂ ତାଙ୍କ ନିଜ ବାପଘର ଆମ ସାହିଠାରୁ କିଛି ଦୂରରେ ଥିବା ଗଣେଶଗଞ୍ଜରେ ଥିଲା । ଏଣୁ ମା'ଜୀ ଗଣେଶଗଞ୍ଜ ଆସିଲେ ବେଳେବେଳେ ଚେତଗଞ୍ଜ ମଧ୍ୟ ଆସୁଥିଲେ । ମା'ଜୀଙ୍କର ସ୍ୱଭାବ ଖୁବ୍ ସରଳ ଓ ମେଳାପୀ ଥିବାରୁ ସାହିସାରାର ଲୋକେ ତାଙ୍କୁ ଜାଣିଥିଲେ ଓ ସ୍ନେହ କରୁଥିଲେ । ତାଙ୍କ ଖୁଡ଼ୀଘର ଲୋକେ ତାଙ୍କୁ ଭଉଣୀ ଲେଖା କରୁଥିବାରୁ ସାହିସାରାର ଲୋକେ ତାଙ୍କୁ 'ଦୁଲ୍ଲର ନାନୀ' ( ତାଙ୍କ ନାମ ରାମଦୁଲାରୀ ) ବୋଲି ସମ୍ବୋଧନ କରୁଥିଲେ । ମୁଁ ମଧ୍ୟ ତାଙ୍କୁ 'ଦୁଲ୍ଲରନାନୀ' ବୋଲି ଡାକୁଥିଲି । ଦିନକର ଘଟଣା; ମା'ଜୀଙ୍କ ସହିତ ଶାସ୍ତ୍ରୀଜୀ ଆସିଥିଲେ । ସେତେବେଳେ ମୋର ବୟସ ଏଗାର ବାରବର୍ଷ ହୋଇଥିଲା । ପଡ଼ିଶା ଘରେ କାହାରି ଜଣଙ୍କର ମୃତ୍ୟୁ ହୋଇଯାଇ ଥିବାରୁ ମୋ ମା' ସେଠାକୁ ଯାଇଥିଲେ; କିନ୍ତୁ ଆମ ଭଉଣୀମାନଙ୍କୁ ଯିବାଲାଗି ବାରମ୍ବାର ମନାକରି ଯାଇଥିଲେ । ମା'ଙ୍କ କଥା ଶୁଣେ କିଏ ? ସେ ଚାଲିଗଲାପରେ ଆମେ ଲୁଚି ଲୁଚି ସେଠାକୁ ଚାଲିଗଲୁ ଓ ଜଣେ ପଡ଼ିଶାଘରେ ଛିଡ଼ା ହୋଇ ସବୁ ଦେଖିଲୁ । କୌଣସି ଶବ ଦେଖିବା ମୋ' ଜୀବନରେ ଥିଲା ତାହା ପ୍ରଥମ ଅବସର । ତେଣୁ ଦେଖିବାର ଆଗ୍ରହ ଖୁବ୍ ଥିଲା । ସେଠାରେ ଛିଡ଼ା ହୋଇଥିବା ଲୋକମାନଙ୍କ ମଧ୍ୟରେ ଶାସ୍ତ୍ରୀଜୀ ମଧ୍ୟ ଥିଲେ । ସେ ଚୁପ୍ ଚାପ ଗୋଟିଏ ପାଖରେ ଛିଡ଼ା ହୋଇଥିଲେ । ତାଙ୍କୁ ଦେଖି ହଠାତ୍ ମୋ' ପାଟିରୁ ବାହାରି ଗଲା—"ସମସ୍ତେ କାନ୍ଦୁଛନ୍ତି, ଏ ଦୁଲ୍ଲର ନାନୀ ପୁଅ ତ କାନ୍ଦୁ ନାହିଁ ?"

ଶାସ୍ତ୍ରୀଜୀଙ୍କୁ ଦେଖିବାର ତାହା ହିଁ ଥିଲା ମୋର ପହିଲି ମଉକା । କେତେବର୍ଷ ପରେ ଯେତେବେଳେ ତାଙ୍କ ସହିତ ମୋର ବିବାହ ପ୍ରସ୍ତାବ ପଡ଼ିଲା, ସେତେବେଳେ ପିଲାଦିନର ସେ କଥା 'ଦୁଲ୍ଲର ନାନୀ ପୁଅ ତ କାନ୍ଦୁନାହିଁ' ସ୍ମରଣ କରି ମନେ ମନେ ହସି ଆନନ୍ଦ ପାଇଥିଲି ।

ଶାସ୍ତ୍ରୀଜୀଙ୍କୁ ଦେଖି ମୋ' ମା' ଖୁବ୍ ପସନ୍ଦ କରିଥିଲେ । ଏଣୁ ତାଙ୍କ ସହିତ ମୋ' ବଡ଼ ଭଉଣୀଙ୍କର ବିବାହଲାଗି ସେ ମା'ଜୀଙ୍କ ସହିତ କଥାବାର୍ତ୍ତା ଆରମ୍ଭ କଲେ । ମା'ଜୀ ସେତେବେଳେ ଶାସ୍ତ୍ରୀଜୀଙ୍କ ବିବାହ ଲାଗି ପ୍ରସ୍ତୁତ ନଥିଲେ, ତେଣୁ ମା' ଆଉ କଥା ଆଗେଇଲେ ନାହିଁ । ବଡ଼ ଭଉଣୀର ବିବାହ ଅନ୍ୟତ୍ର ହୋଇଗଲା । ପ୍ରାୟ ଦୁଇବର୍ଷ ପରେ ମୋ' ବିବାହ ସମ୍ବନ୍ଧରେ ମା' ପୁଣି ମା'ଜୀଙ୍କ ସହିତ କଥାବାର୍ତ୍ତା ଚଳାଇଲେ । ମା'ଜୀ ଯାହା ଜବାବ ଦେଲେ, ସେଥିରୁ ଜଣାଗଲା ଯେ, ସେ ବିବାହ ଲାଗି ପ୍ରସ୍ତୁତ ଥିଲେ । ମା' ଭାଇଙ୍କୁ ସେ କଥା କହିଲେ, ମାତ୍ର ଭାଇ ସେ କଥାବାର୍ତ୍ତା ଆଗକୁ ନ ବଢ଼ାଇବା ଲାଗି

ତାଙ୍କୁ ଜଣାଇଦେଲେ । କାରଣ ତାଙ୍କ ଦୃଷ୍ଟିରେ ଗୋଟିଏ ଦୂଇଟି ଖୁବ ଭଲ ପାତ୍ର ଥିଲେ । ଅନ୍ୟ କେଉଁଠି ନ ହେଲେ ସେମାନେ ଶାସ୍ତ୍ରୀଜୀଙ୍କ ସହିତ ବିବାହ କରାଇବାର ସପକ୍ଷରେ ଥିଲେ । ଏହି ଭିତରେ ମୁଁ ଦିନେ ରାତିରେ ଗୋଟିଏ ଅଦ୍ଭୁତ ସ୍ୱପ୍ନ ଦେଖିଲି— ମୁଁ ଗୋଟିଏ ମନ୍ଦିରକୁ ହାତରେ ମାଳାଟିଏ ଧରି ପୂଜା କରିବାକୁ ଯାଇଛି । ମୁଁ ଠିକ୍ ମନ୍ଦିର ଭିତରକୁ ପ୍ରବେଶ କଲାବେଳକୁ ଶାସ୍ତ୍ରୀଜୀ ମନ୍ଦିର ଭିତରୁ ବାହାରି ଆସୁଛନ୍ତି । ସେ ହଠାତ୍ ଛିଡ଼ା ହୋଇଗଲେ । ମୁଁ ମଧ୍ୟ ତାଙ୍କୁ ଦେଖି ଛିଡ଼ା ହୋଇଗଲି । ମୁଁ ତାଙ୍କ ଗଳାରେ ମାଳାଟି ପିନ୍ଧାଇଦେଲି । ସେ ମଧ୍ୟ ନିଜ ହାତରେ ଧରିଥିବା ଫୁଲ ତୋଡ଼ାଟି ମୋ' ହାତରେ ଧରାଇଦେଲେ । ଏହା ପରେ ମୋ' ନିଦ ଭାଙ୍ଗିଗଲା । ସେ ରାତିରେ ମୋତେ ଆଉ ନିଦ ହେଲା ନାହିଁ ।

**ଠାକୁରଙ୍କ ଉପରେ ରାଗ—**

ମୁଁ ପିଲାଟି ଦିନରୁ ଶାଳଗ୍ରାମଙ୍କୁ ପୂଜା କରୁଥିଲି । ଏଣୁ ପରଦିନ ଯେତେବେଳେ ପୂଜାକରି ବସିଲି, ଅନେକ ସମୟ ପର୍ଯ୍ୟନ୍ତ ମନେ ମନେ ପ୍ରାର୍ଥନା କଲି—ମୁଁ ଯେତେବେଳେ ଶାସ୍ତ୍ରୀଜୀଙ୍କ ଗଳାରେ ମାଳା ପିନ୍ଧାଇ ଦେଇଛି, ସେହି ଦୃଷ୍ଟିରୁ ତାଙ୍କରି ସହିତ ମୋର ବିବାହ ହେବା ଉଚିତ । ଧୀରେ ଧୀରେ ପ୍ରତିଦିନ ମୁଁ ଏହି ପ୍ରାର୍ଥନା କରିବାକୁ ଲାଗିଲି ଏବଂ ପରେ ପରେ ମୋର ବିଶ୍ୱାସ ହୋଇଗଲା ଯେ, ମୋ' ପ୍ରାର୍ଥନାରେ ଶଙ୍କରଜୀ ପ୍ରସନ୍ନ ହୋଇ ଭାଇଙ୍କ ମନକୁ ବଦଳାଇ ଦେବେ ଏବଂ ସେ ଅନ୍ୟତ୍ର ପାତ୍ର ଖୋଜା ବନ୍ଦକରି ଶାସ୍ତ୍ରୀଜୀଙ୍କ ସହିତ ମୋର ବିବାହ କରାଇଦେବେ; କିନ୍ତୁ ଖୁବ୍ ଶୀଘ୍ର ମୋର ଏ ଆତ୍ମବିଶ୍ୱାସ ଆତ୍ମଗ୍ଳାନିରେ ପରିଣତ ହୋଇଗଲା । ଭାଇଙ୍କ ବିଚାରଧାରାରେ ଅଣୁମାତ୍ର ପରିବର୍ତ୍ତନର ଲକ୍ଷଣ ଦେଖାଗଲା ନାହିଁ । ସେ ପୂର୍ବପରି ଅନ୍ୟ ପାତ୍ର ଖୋଜାଖୋଜି କରିବାରେ ଧାଁ-ଦଉଡ଼ ଚଳାଇଲେ । ତେଣୁ ମୁଁ ନିଜେ ମନଦୁଃଖ କରିବା ସଙ୍ଗେ ସଙ୍ଗେ ଶାଳଗ୍ରାମଙ୍କ ଉପରେ ଖୁବ୍ ରାଗିଗଲି ଏବଂ ଭାଇ କେଉଁଆଡ଼େ ପାତ୍ର ଅନୁସନ୍ଧାନରେ ଚାଲିଗଲେ ମୁଁ ସଙ୍ଗେ ସଙ୍ଗେ ଯାଇ ଶାଳଗ୍ରାମଙ୍କୁ ପାଣିରେ ବୁଡ଼ାଇ କହୁଥିଲି—ତୁମେ ମୋତେ ବୁଡ଼ାଇବାକୁ ଚେଷ୍ଟା କରୁଛ, ମୁଁ ମଧ୍ୟ ତୁମକୁ ବୁଡ଼ାଇ ରଖିବି । ଏହିପରି ଚାଲିଥାଏ; କିନ୍ତୁ ଯେଉଁଦିନ ଭାଇ ଫେରି ଆସି ପାତ୍ର ଠିକ୍ ହୋଇ ନଥିବାର ଖବର ମା'ଙ୍କୁ ଦିଅନ୍ତି, ମୁଁ ସଙ୍ଗେ ସଙ୍ଗେ ପୂଜା ଘରକୁ ଯାଇ ଶାଳଗ୍ରାମଙ୍କୁ ପାଣିରୁ ବାହାରକରି ବାରମ୍ବାର ପ୍ରଣାମ ଜଣାଇ ତାଙ୍କଠାରେ କୃତଜ୍ଞତା ପ୍ରକାଶ କରୁଥିଲି ।

ଭାଇ କେତେଗୁଡ଼ିଏ ବରପାତ୍ର ଦେଖିଲେ, କେତେ ଜାଗାରେ କଥାବାର୍ତ୍ତା ଚଳାଇଲେ; କିନ୍ତୁ ନା କିଛି କାରଣରୁ ସେ ସବୁ ପ୍ରସ୍ତାବ ଭାଙ୍ଗିଗଲା । ଏହି ପ୍ରକାର ଦୁଇ

ବରଷ ବିତିଗଲା ପରେ ଦିନେ ଭାଇ ମା'ଙ୍କୁ କହିଲେ ଯେ, କୌଣସି ଜଣେ ବନ୍ଧୁଙ୍କ ମଧ୍ୟସ୍ଥତାରେ ବନାରସରେ ଗୋଟିଏ ପାତ୍ର ସମ୍ବନ୍ଧରେ କଥାବାର୍ତ୍ତା ସ୍ଥିର ହୋଇଛି। ପିଲାଟିର ଘର ଭଲ, ତାଙ୍କର ସହରରେ ନିଜର ଘର ଓ କିଛି କାରବାର ମଧ୍ୟ ଥିଲା। ଦେବା ନେବା ବିଷୟରେ ମଧ୍ୟ ସ୍ଥିର ହୋଇ ଯାଇଥିଲା। ଭାଇ ଆହୁରି ମଧ୍ୟ କହିଲେ ଯେ, ଦିନେ ଦି'ଦିନ ମଧ୍ୟରେ ସେ ବନାରସ ଯାଇ ନିର୍ବନ୍ଧ କରିଦେବେ। ଏହା ଶୁଣି ମା' ଖୁସି ହେଲେ; ମାତ୍ର ମୋ' ପକ୍ଷରେ ଏକ ବିପଦ ଆସି ଉପସ୍ଥିତ ହେଲା। ଭାଇ ବନାରସ ଚାଲି ଯାଆନ୍ତେ ମୋର ପ୍ରଥମ କାର୍ଯ୍ୟ ହେଲା ଶାଳଗ୍ରାମଙ୍କୁ ପାଣିରେ ବୁଡ଼ାଇ ମୋ' ନିଷ୍ପତ୍ତି ବାରମ୍ବାର ଶୁଣାଇବା।

ଶାଳଗ୍ରାମଜୀ ବୋଧହୁଏ ମୋର ଦୃଢ଼ ନିଷ୍ପତ୍ତିରେ ଭୟ କରିଗଲେ! ଭାଇ ବନାରସ ଗଲେ ସତ; କିନ୍ତୁ ନିର୍ବନ୍ଧ ନ କରି ଫେରି ଆସିଲେ। କାରଣ ପାତ୍ରଟି ତାଙ୍କ ମନକୁ ପାଇଲା ନାହିଁ। ତାହା ଶୁଣି ମୋର ଆନନ୍ଦର ସୀମା ରହିଲା ନାହିଁ। ମୁଁ ଅତି ଶୀଘ୍ର ପୂଜା ଘରକୁ ଯାଇ ଶାଳଗ୍ରାମଙ୍କୁ ପାଣିରୁ ବାହାର କରି ବାରମ୍ବାର ପ୍ରଣାମ କଲି।

**ଲୁଗା ଥାନେ ଟଙ୍କାଟିଏ—**

ଏହାପରେ ମା'ଜୀଙ୍କ ସହିତ କଥାବାର୍ତ୍ତା ଆରମ୍ଭ ହେଲା। ଦିନେ ଭାଇ ରାମନଗର ଯାଇ ସବୁ କଥାବାର୍ତ୍ତା ନିଷ୍ପତ୍ତି କରିଦେଇ ଆସିଲେ। ଦେବା ନେବା ବିଷୟରେ ମା'ଜୀ କେବଳ ଲୁଗାଥାନେ ଓ ଟଙ୍କାଟିଏ ଦାବି କରିଥିଲେ। ସନ ୧୯୨୮ ସାଲ୍ ମେ ମାସ ନ' ତାରିଖ ଦିନ ନିର୍ବନ୍ଧ ହେଲା। ଯେଉଁଦିନ ନିର୍ବନ୍ଧ ହେବାର ଥିଲା, ସେ ଦିନ ଶାସ୍ତ୍ରୀଜୀ ରାମନଗର ଆସିଥିଲେ। ତାଙ୍କୁ ତାର କରି ଡକା ଯାଇଥିଲା। ବନାରସରେ ପହଞ୍ଚିବା ପରେ ସେ ବିବାହ ସମ୍ବନ୍ଧରେ ଶୁଣିଥିଲେ। ସେ ଆସିବା ମାତ୍ରେ ମା'ଜୀଙ୍କୁ କହିଲେ—"ବିବାହ ଠିକ୍ କରିବା ପୂର୍ବରୁ ଅନ୍ତତଃ କମ୍‌ରେ ମୋତେ ଟିକିଏ ପଚାରିବାର ଥିଲା! ହେଉ, ଯେଉଁଠି ତୁମେ ଠିକ୍ କରିଛ, ମୁଁ ସେଇଠି ବିବାହ କରିବି; କିନ୍ତୁ ବର୍ତ୍ତମାନ ନୁହେଁ। ମୋର ପଚାଶ ବର୍ଷ ପୂରିଗଲେ ବିବାହ କାର୍ଯ୍ୟ କରାଯିବ।" ତା' ଶୁଣି ମା'ଜୀ ଚୁପ୍ ରହିଲେ। ସନ୍ଧ୍ୟାବେଳକୁ ନିର୍ବନ୍ଧ କାର୍ଯ୍ୟ ଶେଷହେଲା। ପରଦିନ ବିବାହ ତିଥି ସ୍ଥିର କରାହେଲା। ଶାସ୍ତ୍ରୀଜୀ ଖୁବ୍ ଆପତ୍ତି କଲେ। ଶେଷରେ ମା'ଜୀ ବାରମ୍ବାର ଜୋର ଦେଇ କହିବାରୁ ସେ ବାଧ୍ୟ ହୋଇ ସ୍ୱୀକୃତ ଦେଲେ। ସେହି ମାସ ୧୬ ତାରିଖରେ ବିବାହ ଉତ୍ସବ କରାଯିବାର ସ୍ଥିର ହୋଇଗଲା।

ମେ ୧୬ ତାରିଖରେ ଡେଭଗଙ୍କୁ ବରଯାତ୍ରୀ ଆସିଲେ । ଘରରେ ପୁରୋହିତ ବିବାହ କରାଇବାକୁ ବସିଲେ; କିନ୍ତୁ ଶାସ୍ତ୍ରୀଜୀ ଏଥିରେ ବିରୋଧ କଲେ । ତାଙ୍କର କହିବାର କଥା ହେଲା—ବିବାହ ବେଦିରେ ବରକନ୍ୟା ଯେଉଁ ପ୍ରତିଜ୍ଞା କରନ୍ତି, ତାହା ପୁରୋହିତ ପାଠ ନ କରି ସେ ଦୁହେଁ ( ବରକନ୍ୟା ) ନିଜେ ପାଠ କରିବେ । କାରଣ, ପ୍ରତିଜ୍ଞା ଅନୁସାରେ ଉଭୟଙ୍କୁ ହିଁ ଜୀବନ ବିତାଇବାକୁ ପଡିବ । ବେଦି ପାଖରେ ବସିଥିବା ଘରୋଇ ଓ ବରଯାତ୍ରୀ ଦଳ ଏ କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ଆମ ଘରର ଲୋକେ ତଥା ବନ୍ଧୁବାନ୍ଧବ ଆପତ୍ତି କରି କହିଲେ—"କୁହ ଭଲ, ଝିଅଟା ବେଦିରେ କିପରି ମୁହଁ ଖୋଲି କଥା କହିବ ? ସ୍ୱା ହୋଇପାରିବ ନାହିଁ ।" ସ୍ତ୍ରୀଲୋକମାନେ ଅଲଗା ଫୁଟ୍‌ଫାଟ୍ ହେଉଥିଲେ; କିନ୍ତୁ ଶାସ୍ତ୍ରୀଜୀ ନିଜ କଥାରେ ଅଟଳ ରହି କହିଲେ—"ସ୍ୱା' ଯଦି ହୋଇପାରିବ ନାହିଁ, ତା' ହେଲେ ବିବାହ କରି କିଛି ଲାଭ ନାହିଁ । ଆପଣମାନେ ଯଦି ନିଜ ମତକୁ ପସନ୍ଦ କରୁଛନ୍ତି, ଭଲ କଥା ! ମୋର ଯାହା ପସନ୍ଦ, ମୁଁ ତାହା କହିଦେଲି ।"

ଏହାପରେ ତାଙ୍କ ବରଯାତ୍ରୀମାନଙ୍କ ମଧ୍ୟରୁ କେତେ ଜଣ ଶାସ୍ତ୍ରୀଜୀଙ୍କୁ ସମର୍ଥନ କରି ଅନ୍ୟମାନଙ୍କୁ ବୁଝାଇଲେ । ଶେଷରେ ବରଯାତ୍ରୀମାନେ ବେଦି ପାଖରୁ ଉଠି ଚାଲିଗଲେ । କାରଣ, ସେମାନେ ଉଠିଗଲେ କନ୍ୟା ସହଜରେ ବେଦିରେ ମୁହଁ ଖୋଲି ଶପଥ ପାଠ କରିପାରିବ ଏବଂ କୁଳବୃଦ୍ଧମାନଙ୍କ ମାନମର୍ଯ୍ୟାଦା ମଧ୍ୟ ରକ୍ଷାହେବ । କେତେ ସମସ୍ତ "ହଁ-ନା" କରିବା ପରେ ଆମ ଘରର ଲୋକଙ୍କୁ ମଧ୍ୟ ରାଜି ହେବାକୁ ପଡ଼ିଲା । ଶାସ୍ତ୍ରୀଜୀଙ୍କ କଥା ରହିଲା । ଉଭୟ ତରଫର ପୁରୋହିତ ଆମ ଦୁହିଁଙ୍କୁ ପ୍ରତିଜ୍ଞା ପାଠ କରାଇଲେ ।

ସେ ଦିନ ବେଦି ଉପରେ ଯେଉଁ ଦୁର୍ଦ୍ଦଶା ହୋଇଥିଲା, ମୁଁ ଆଜି ସୁଦ୍ଧା ଭୁଲି ପାରିନାହିଁ । ଏକେ ତ ସହଜେ ଗରମ ଦିନ, ସେଥିରେ ପୁଣି ଲୁଗା ଚାଦର ଘୋଡ଼ାଇ ଦିଆଯାଇଥିବାରୁ ଖୁବ୍ ଗରମ ହେଉଥିଲା । ତା'ପରେ ଶାସ୍ତ୍ରୀଜୀଙ୍କ ସହିତ ତାଳଦେଇ ପ୍ରତିଜ୍ଞା ପାଠ କରିବାକୁ ପଡ଼ିବ ବୋଲି ମୁଁ କେବେହେଲେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନ ଥିଲି । ସେତେବେଳେ ମୋର ଅବସ୍ଥା ଅତି ଶୋଚନୀୟ ହୋଇ ପଡ଼ିଲା । ଠିକ୍ ସେତିକିବେଳେ ଗୋଟିଏ ବଲୁଆ କୋଉଁଠୁ ଆସି ଲୁଗା ଭିତରେ ପଶିଯାଇ ଦୁଇ ତିନି ଜାଗା କାମୁଡ଼ି ଦେଲା । ସେଠାରେ ହଲ୍ ଚଲ୍ ହେବା କିମ୍ବା ଲୁଗାପଟା ଝାଡ଼ିଝୁଡ଼ି ହୋଇ ଠିକ୍ କରିବା ସମ୍ଭବ ହେଲାନାହିଁ; ତେଣୁ ସେ ଅବସ୍ଥା ମୋତେ ଖୁବ୍ ବିରକ୍ତିକର ବୋଧହେଲା । ଯା'ହେଉ, ଯେ କୌଣସିମତେ ମୁଁ ଲୁଗା ମିଶାଇ ତାକୁ ଚାପିଧରି ବାନ୍ଧିଦେଲି ।

ବିଦାୟ ହୋଇ ରାମନଗର ଆସିବାପରେ ଶାସ୍ତ୍ରୀଜୀ ମୋତେ ମା'ଜୀଙ୍କ ସମ୍ବନ୍ଧରେ ପ୍ରଥମେ ଉପଦେଶ ଦେଇ କହିଲେ—"ତୁମଙ୍କୁ ତାଙ୍କ ଉପରେ ବିଶେଷ ଦୃଷ୍ଟି ଦେବାକୁ ପଡ଼ିବ । କାରଣ, ତାଙ୍କ ଆନନ୍ଦରେ ହିଁ ମୋର ଆନନ୍ଦ !"

## ଶ୍ରୀମତୀ ଲଳତା ଶାସ୍ତ୍ରୀଙ୍କ ବଂଶାବଳୀ



# ତିନି

**ପରାଜୟରେ ହିଁ ବିଜୟ—**

ବିବାହ ସମୟର ଦୁଇ ତିନୋଟି ଘଟଣା ଏବେ ମୋର ମନେ ପଡ଼ୁଛି । ଏମିତି ତ କେତେ କଥା ରହିଛି; କେବେ ମନେପଡ଼େ, କେବେ ମନେ ପଡ଼େ ନାହିଁ । ବିବାହବେଦୀ ପରିକ୍ରମା କରିସାରିବା ପରେ ଆମ ଆଡ଼େ ଗୋଟିଏ ଶିଳପୁଆ ପ୍ରଥା ଅଛି । ଶିଳପୁଆକୁ କନ୍ୟା ଗୋଡ଼ରେ ମାଡ଼ିବସେ ଓ ବର ତାକୁ ଏକା ଥରକେ ଟାଣିନେବାକୁ ଚେଷ୍ଟାକରେ । ଯଦି ଥରେ ଚେଷ୍ଟା କରି ତାକୁ ବର ଟାଣିନେଇ ନ ପାରେ, ତା'ହେଲେ ସେ ହାରିଯାଏ ଏବଂ କନ୍ୟାପକ୍ଷର ସ୍ତ୍ରୀଲୋକମାନେ ତାକୁ ଥଟ୍ଟା ଉପହାସ କରନ୍ତି । ଯଦି ବର ଏକା ଥରକେ ଚେଷ୍ଟାକରି ଶିଳପୁଆ ଟାଣିନିଏ, ତା'ହେଲେ ବରପକ୍ଷର ଲୋକେ ଆନନ୍ଦରେ ଉଲ୍ଲସି ଉଠନ୍ତି ।

ଆମର ପରିକ୍ରମା ସରିବାପରେ ଦୁଇପକ୍ଷର ଲୋକେ ସାମନାସାମନି ହୋଇ ଛିଡ଼ାହେଲେ । ଶିଳପୁଆ ଆଣି ରଖାଗଲା । ସେହି ସମୟରେ ମୋର ମନେହେଲା, ଯଦି ମୁଁ ଶିଳପୁଆ ଜୋରରେ ମାଡ଼ିବସେ ଓ ଶାସ୍ତ୍ରୀଜୀ ତାକୁ ଟାଣିନେଇ ନ ପାରନ୍ତି, ତା'ହେଲେ ଆମ ତରଫର ସ୍ତ୍ରୀମାନେ ତାଙ୍କୁ ଥଟ୍ଟା ଉପହାସ କରିବେ । ବାସ୍ତବରେ ତାଙ୍କର ପରାଜୟ ହିଁ ମୋର ପରାଜୟ । ତାଙ୍କର ବିଜୟ ହିଁ ମୋ' ପକ୍ଷେ ଶୋଭନୀୟ; ତେଣୁ ଲୋକଦେଖାଣିଆକୁ ଶିଳପୁଆ ଉପରେ ମୁଁ ଗୋଡ଼ ରଖିଲି ସିନା; ମାତ୍ର ସେ ରଖିବା ନ ରଖିବା ସମାନ । ମୋ' ସାଙ୍ଗ, ଭାଉଜ ତଥା ଅନ୍ୟାନ୍ୟ ସ୍ତ୍ରୀମାନେ ମୋତେ ଉତ୍ସାହିତ କରିବାକୁ ଲାଗିଲେ । ତେଣେ ଶାସ୍ତ୍ରୀଜୀଙ୍କ ସାଙ୍ଗ-ସାଥୀମାନେ ମଧ୍ୟ ତାଙ୍କୁ ବାହାବା ଦେବାକୁ ଲାଗିଲେ । ଜଣେ ଦି' ଜଣ ମଧ୍ୟ ଏକା ଥରକେ ଶିଳପୁଆ ଟାଣି ଆଣିବାର ଉପାୟମାନ ବତାଇ ଦେଲେ । କିଛି ସମୟ ଏପରି ପ୍ରହସନ ଚାଲିବାପରେ ଶିଳପୁଆ ଟାଣିବାକୁ ଶାସ୍ତ୍ରୀଜୀଙ୍କୁ କୁହାଗଲା । ସେ ଏକାଥରକେ ଟାଣିନେଲେ । ତା'ପରେ ବରପକ୍ଷର ଲୋକମାନେ ଉଲ୍ଲସିତ ହେବାକୁ ଲାଗିଲେ ଏବଂ ଆମ ପକ୍ଷର ସ୍ତ୍ରୀଲୋକମାନେ ଲଜ୍ଜିତା ହେଲେ ।

**ଅତିଥି ସତ୍କାର –**

ପୁଣି ବରକୁ ଯେତେବେଳେ କୁଳଦେବତାଙ୍କ ନିକଟକୁ ଯିବାକୁ ହୁଏ, ସେତେବେଳେ ପ୍ରଥମେ ଦୁଆର ପାଖରେ ବର କନ୍ୟାକୁ ଓ କନ୍ୟା ବରକୁ ଦହି ଖୁଆଇ ଦିଏ । ଲମ୍ବ ଓଢ଼ଣା ଥିବାରୁ ଶାସ୍ତ୍ରୀଜୀଙ୍କ ହାତ ମୋ' ମୁହଁ ପାଖକୁ ଯିବା ସମ୍ଭବ ନ ଥିଲା, ତେଣୁ ସେ ଥାଳୀରୁ ଦହି ନେଇ ଓଢ଼ଣା ଉପରେ ଲଗାଇ ଦେଇ ଥଟ୍ଟାକରି କହିଲେ— "ଏ ତ ଭଲ ଫାରବଲ୍‌ର ଖେଳଡ଼ି ରନ୍ଧା ଚାଲିଛି ! ହଉ, ଏଥର ଆପଣ ମୋତେ ସେହିପ୍ରକାର ଖୁଆଇ ଦିଅନ୍ତୁ । ମୋ' ପାଖରେ ତ ଓଢ଼ଣା ନାହିଁ, ମୁଣ୍ଡରେ ରୁମାଲ ପକାଇ ଦେଇଛି । ସେଇଥିରେ ଦହି ଲୁଆଁଇ ଦିଅନ୍ତୁ ।" ମୋର ଗୋଟିଏ ଭାଉଜ ମୋ' ହାତକୁ ଧରି ଶାସ୍ତ୍ରୀଜୀଙ୍କ ମୁହଁ ଆଡ଼କୁ ବଢ଼ାଇଲେ; କିନ୍ତୁ ସଙ୍କୋଚବଶତଃ ମୋର ଆଙ୍ଗୁଳି କେବଳ ତାଙ୍କ ଓଠରେ ବାଜିଲା । ତା'ପରେ ମୋ' ଭାଉଜ ଥାଳୀରୁ ଦହି ନେଇ ଶାସ୍ତ୍ରୀଜୀଙ୍କ ମୁହଁରେ ବୋଳିଦେବା ସଙ୍ଗେ ସଙ୍ଗେ ତାଙ୍କ ଗାଲରେ ଲେସିଦେଲେ । ଭାଉଜଙ୍କର ଏ ପ୍ରକାର ବ୍ୟବହାରରେ ତାଙ୍କ ସହିତ ଆସିଥିବା କୋଇଲିବର ଟିକିଏ ଅସନ୍ତୁଷ୍ଟ ହେଲେ; କିନ୍ତୁ ଶାସ୍ତ୍ରୀଜୀ ତାଙ୍କୁ ବୁଝାଇ କହିଲେ—"ଆମେ ତାଙ୍କର ଅତିଥି ହୋଇ ଆସିଥାଉଁ, ସେ ତାଙ୍କର ଇଚ୍ଛାନୁଯାୟୀ ଆମର ସତ୍କାର କରିପାରନ୍ତି !"

ସଙ୍ଗେ ସଙ୍ଗେ ଭାଉଜ ଉତ୍ତର ଦେଇ କହିଲେ—"ସୌଭାଗ୍ୟର ବିଷୟ ଯେ, ଆପଣ ହେଉଛନ୍ତି ଖଦଡ଼ଧାରୀ, ଅନ୍ୟଥା ଆମେ ଆହୁରି ଭଲ ଭାବରେ ସତ୍କାର କରନ୍ତୁ ।" ଭାଉଜଙ୍କର ଉତ୍ତର ଶୁଣି ଛୁଡ଼ା ହୋଇଥିବା ସ୍ତ୍ରୀଲୋକମାନେ ଖୁବ୍ ହସିଲେ ।

ଏପ୍ରକାର କୁଳାଚାର ପରେ ସେହି ଦହି ଥିବା ଥାଳିରେ ପାଣି ଢାଳି ଦିଆଯାଇ ଆଉ ଗୋଟିଏ କୁଳାଚାର ଆରମ୍ଭ ହେଲା । ଏ'ପ୍ରଥାର ନିୟମ ହେଉଛି—ଘରର ଯେଉଁ ଝିଅ ବା ବୋହୂମାନେ ବର ସହିତ ଥଟ୍ଟା ତାମସା କରିପାରିବେ, ସେମାନଙ୍କ ମଧ୍ୟରୁ କେହି କେହି ଦହିଥାଳିରେ ନିଜର ମୁଦି କମ୍ବା ଚୂଡ଼ି ପକାଇ ବରକନ୍ୟା ଉଭୟଙ୍କୁ ତାହା ବାହାର କରିବାକୁ କହିବେ । ଯେ ଶୀଘ୍ର ବାହାର କରି ଆଣିପାରିବ, ସେ ବିଜୟ ହାସଲ କରିବ । ଏହିପରି ଭାବରେ ପାଞ୍ଚଥର ଥାଳିରେ ଗହଣା ପକାଇ ବରକନ୍ୟାଙ୍କ ଜୟ ପରାଜୟର ଘୋଷଣା କରାଯାଏ । ମୁଁ ତ ନିଶ୍ଚୟ କରିଥିଲି ଶାସ୍ତ୍ରୀଜୀଙ୍କ ବିଜୟରେ ହିଁ ମୋର ବିଜୟ; ତେଣୁ ଏଠାରେ ମଧ୍ୟ ପୂର୍ବର ସେହି ଶିଳପୁଆ ମାଡ଼ିବସିବା ପରି ଆଚରଣ କଲି । ପ୍ରଥମଥର ଗହଣା ପଡ଼ିବାମାତ୍ରେ ମୁଁ ଖୁବ୍ ଧୀରେ ହାତ ବଢ଼ାଇଲି; ସେତେବେଳକୁ ଶାସ୍ତ୍ରୀଜୀ ଗହଣା ବାହାରକରି ସାରିଥିଲେ । ମୋ' ସାଙ୍ଗମାନେ ମୋ' ଉପରେ ବିରକ୍ତ ହୋଇ ସାହସର ସହିତ କାମ କରିବାଲାଗି ବୁଝାଇଲେ, ତା' ସଙ୍ଗେ ସଙ୍ଗେ

ଦ୍ୱିତୀୟ ଥରର ଚେଷ୍ଟା ଯେପରି ବ୍ୟର୍ଥ ନ ହୁଏ, ଅନ୍ୟଥା ସେମାନଙ୍କ ମୁହଁରେ ଚୂନକାଳି ଲାଗିଯିବ ବୋଲି ତାଗିଦ୍ କରିଦେଲେ; କିନ୍ତୁ ଦ୍ୱିତୀୟ ଥର ମଧ୍ୟ ଶାସ୍ତ୍ରୀଜୀ ଜିତିଲେ । କାରଣ ମୁଁ ପାଣି ଭିତରକୁ ଆଦୌ ହାତ ନେଇ ନାହିଁ । ଏହି ପ୍ରକାର ପାଞ୍ଚଥରଯାକ ଶାସ୍ତ୍ରୀଜୀଙ୍କର ବିଜୟ ଓ ମୋର ପରାଜୟ ହେଲା । ଏହାପରେ କୁଳଦେବତାଙ୍କ ଆଗରେ କୁଳାଚାର ଶେଷହେଲା । ମୁଁ ସାରା ଜୀବନ ସ୍ୱାମୀଙ୍କଠାରେ ପରାଜୟରେ ହିଁ ନିଜର ବିଜୟ ମଣୁଥିଲି ଏବଂ ମୋର ଅନୁମାନ, ପ୍ରତ୍ୟେକ ନାରୀକୁ ଏହି ପରାଜୟରେ ହିଁ ସୁଖ ଓ ଶାନ୍ତି ମିଳେ ।

## ବୋହୂ ଆସୁଛି—

ବିବାହ ପରେ ବିଦାୟ ହୋଇ ରାମନଗର ଆସିଲି । ଆଗକାଳର ପ୍ରଥା ଅନୁସାରେ ବୋହୂ ଗୋଟିଏ ଘରୁ ଅନ୍ୟ ଘରକୁ କମ୍ବା ଗାଧୁଆ ପାଧୁଆ କରିବାକୁ ବାହାରିଲେ, ତା' ଆଗେ ଆଗେ ଅନ୍ୟ ଜଣେ ସ୍ତ୍ରୀ କହି କହି ଚାଲେ—"ଆଡ଼େଇ ଯାଅ, ବୋହୂ ଆସୁଛି ।" ତା' ଫଳରେ ଯେଉଁ ବଡ଼ ବୁଢ଼ାମାନେ ଭିତରେ ଥା'ନ୍ତି, ଆଡ଼େଇ ହୋଇଯା'ନ୍ତି । ଦିନେ ମୋତେ ଛାତ ଉପରକୁ ଯିବାକୁ ପଡ଼ିଲା । ଶାସ୍ତ୍ରୀଜୀ ଅଗଣାରେ ଛିଡ଼ାହୋଇ ନିଜ ଖୁଡ଼ୀଙ୍କ ସହିତ କଥାବାର୍ତ୍ତା କରୁଥିଲେ । ମୋର ବାହାରିବା ଆଗରୁ ସେହି ଘୋଷଣା ଆରମ୍ଭ ହେଲାରୁ ଶାସ୍ତ୍ରୀଜୀ ହସି ହସି ଖୁଡ଼ୀଙ୍କୁ କହିଲେ, "ସ୍ତ୍ରୀ' ପାଇଁ ଏପ୍ରକାର ଘୋଷଣାର ଆବଶ୍ୟକତା କ'ଣ ? ଏକାଡ଼ଆଁ କେ ଯାଇ କୋଠା ଉପରେ ହାଜର ହେବ । ନଇଲେ ଏ ଉଚ୍ଚତା ଆଉ କେତେବେଳେ କାମରେ ଲାଗିବ !" ଏ କଥା ଶୁଣି ଖୁଡ଼ୀ ମଧ୍ୟ ହସିଲେ । ମୁଁ ଟିକିଏ ଡେଙ୍ଗୀ ଥିଲି, ତା'ପରେ ଅତ୍ୟନ୍ତ ଦୁର୍ବଳ ହୋଇଥିବାରୁ ଅଧିକ ଡେଙ୍ଗାପରି ଜଣା ପଡ଼ୁଥିଲି ।

ରାମନଗରରେ ଯେଉଁ ଲୋକାଚାର ଥିଲା, ସେହି ଅନୁସାରେ ବୋହୂ ବାପଘରୁ ତାଲାରେ ଯେଉଁ ଚାଉଳ ଆଣିଥାଏ, ତାକୁ ଥାଳିରେ ରଖି ବଛାଯାଏ । ବାଛିବାବେଳେ ସେଥିରୁ ଯଦି ସୋରିଷ କମ୍ବା ଯଅ ବାହାରେ, ତା'ହେଲେ ବୋହୂଟି ଭାଗ୍ୟବତୀ ବୋଲି ବୁଝାଯାଏ ଏବଂ ଏଭଳି ବୋହୂ ଘରକୁ ଆସିଲେ ପରିବାରର ସୌଭାଗ୍ୟ ବଢ଼େ । ମୋ' ତାଲାର ଚାଉଳ ବଛାଗଲା । ସେଥିରୁ ଗୋଟିଏ ମାତ୍ର ସୋରିଷ ଦାନା ମିଳିଲା । ସମସ୍ତେ ଖୁବ୍ ଖୁସି ହେଲେ । ସେ ସୋରିଷଟିକୁ ଗୋଟିଏ ମାଟିପାତ୍ରରେ ଲଗାଇ ଦିଆଗଲା । ଧୀରେ ଧୀରେ ସେ ସୋରିଷଗଛଟି ବଢ଼ି ଫଳ ଧରିଲା । ସେଥିରୁ ପୁରା ଅଞ୍ଜୁଳାଏ ସୋରିଷ ବାହାରିଥିଲା । ସେଥିରେ ପରିବାରର ବଡ଼ ବଡ଼ ବୁଢ଼ାମାନେ ଖୁବ୍ ସନ୍ତୁଷ୍ଟ ହୋଇ ମୋତେ ଆଶୀର୍ବାଦ ଦେଇଥିଲେ ।

ମୁଁ ଥିଲି ବାପା ମା'ଙ୍କର କୋଳପୋଛା ଝିଅ, ତେଣୁ ବାପା ମାଆଙ୍କଠାରୁ ମୋତେ ଖୁବ୍ ସ୍ନେହ ମିଳୁଥିଲା । ଭାଇମାନେ ମଧ୍ୟ ଅତ୍ୟଧିକ ଆଦର କରୁଥିଲେ । ଯାହା ଫଳରେ ମୁଁ ଯେତେବେଳେ ରାମନଗର ଆସିଲି, ମୋର ପ୍ରଧାନ ଚିନ୍ତା ହେଲା—ମୋ' ଦ୍ୱାରା ଏପରି କୌଣସି ଭୁଲ ନ ହେଉ, ଯାହା ଫଳରେ ମୋତେ ଗାଳି ଶୁଣିବାକୁ ପଡ଼ିବ । ସୌଭାଗ୍ୟବଶତଃ ପାଞ୍ଚ ଦଶ ଦିନର ସମ୍ପର୍କରୁ ମୁଁ ଜାଣିପାରିଲି ଯେ, ଶାସ୍ତ୍ରୀଜୀ ଖୁବ୍ ସାଦାସିଧା ଓ ସୁଶୀଳ ବ୍ୟକ୍ତି; କିନ୍ତୁ ମୋର ବଡ଼ଯାଆ ଓ ଅନ୍ୟ ସ୍ତ୍ରୀମାନେ କହିଲେ "ବୋହୂ, କେବେ ଭାବିବୁନି ଯେ, ତୋ ମଣିଷଟି ଖୁବ୍ ସରଳ । ସେ ଉପରେ ଦେଖିବାକୁ ଯେତିକି ସାଦାସିଧା, ଭିତରେ ଭିତରେ ସେତିକି କ୍ରୋଧୀ ।" ଏହି କଥା ଶୁଣି ମୋ' ମନରେ ଭୟ ଜାତ ହୋଇଥିଲା । ତେଣୁ ମୁଁ ତାଙ୍କୁ ରାଗିବାର କୌଣସି ସୁଯୋଗ ଦେଉ ନ ଥିଲି । ତଥାପି ଦିନେ ତାଙ୍କୁ ରାଗିବାର ଗୋଟିଏ ଅବସର ମିଳିଥିଲା ।

ସେ ବାହାରୁ ଗାଧୋଇକରି ଆସିଲେ । ଶୀଘ୍ର ଧୋତିଟି ଶୁଖାଇବାକୁ ବସ୍ତିର କରି ଛାତ ଉପରେ ବିଛାଇ ଦେବାଲାଗି ସେ ଧୋତିଟିକୁ ପିଲାଟିଏକୁ ଦେଲେ । ପିଲାଟି ଉପରକୁ ଆସିଲା ସତ; ମାତ୍ର ଓଳିପାଖରେ ବନ୍ଧା ହୋଇଥିବା ଅଲଗୁଣି ଉପରକୁ ତା'ହାତ ପାଇଲା ନାହିଁ । ତେଣୁ ମୋତେ ସେ ଧୋତିଟି ଶୁଖାଇ ଦେବାକୁ କହି ତଳକୁ ଚାଲିଗଲା । ତା'ପରେ ମୁଁ କୋଠରୀକୁ ଆସି ଶୋଇପଡ଼ିଲି । ମୋତେ ନିଦ ଲାଗିବା ପରେ ବର୍ଷା ଆରମ୍ଭ ହେଲା । ମୋ'ନିଦ ଭାଙ୍ଗିବାରୁ ମୁଁ ଦେଖିଲି ଯେ, ଓଳିରୁ ପାଣି ଗଡ଼ି ଅଲଗୁଣି ଉପରକୁ ଶୁଖୁଥିବା ଧୋତିଟି ଅପରିଷ୍କାର ହୋଇଯାଇଛି । ଏହା ଦେଖି ମୋ' ଦେହ ଥରିବାକୁ ଲାଗିଲା । ମୁଁ ମନେ ମନେ ଭାବିଲି—ଆଜି ନିଶ୍ଚୟ ଶାସ୍ତ୍ରୀଜୀ ମୋ' ଉପରେ ରାଗିବେ । ଦେହଲଗା ସାବୁନ ବ୍ୟତୀତ ଘରେ ଅନ୍ୟ ସାବୁନ ନ ଥିଲା । ଆମ ଘରୁ ଯେଉଁ ସାବୁନ ଆସିଥିଲା, ସେଥିରେ ଶୀଘ୍ର ଶୀଘ୍ର ଧୋତିଟିକୁ ସଫା କରିବାକୁ ଲାଗିଲି । କେତେଥର ଧୋତିରେ ସାବୁନ ଦେଇ କଚାଡ଼ିକଚି କଲି; ମାତ୍ର ଧୋତିରୁ ମଇଳା ଦାଗ ଛାଡ଼ିଲା ନାହିଁ । ଦାଗ ନ ଛାଡ଼ିବାରୁ ମୁଁ କାନ୍ଦିବାକୁ ଆରମ୍ଭ କଲି । ଏତିକିବେଳେ କୌଣସି କାମରେ ମୋ' ସାନ ନଣନ୍ଦ ଉପରକୁ ଆସିଲେ । ମୋତେ କାନ୍ଦୁଥିବାର ଦେଖି ଆଶ୍ଚର୍ଯ୍ୟ ହୋଇ କାରଣ ପଚାରିଲେ । ମୋ'ଠାରୁ କାନ୍ଦିବାର କାରଣ ଶୁଣି ସେ ହସିବାକୁ ଲାଗିଲେ ଓ ସେମିତ ଧୋତିଟିକୁ ଶୁଖାଇ ଦେବାକୁ କହି ତଳକୁ ଚାଲିଗଲେ । ସେ ଯାଇ ସବୁକଥା ଶାସ୍ତ୍ରୀଜୀଙ୍କୁ କହିଦେଲେ, ଶାସ୍ତ୍ରୀଜୀ ମୋତେ ଶୁଣାଇ କରି କହିଲେ— "ଏମାନେ ତୁମକୁ ମିଛଟାରେ ଡରାଉଛନ୍ତି, ଗୁରୁତର ଦୋଷ ନ ହେବା ପର୍ଯ୍ୟନ୍ତ ମୁଁ କାହାର ଉପରେ ରାଗେ ନାହିଁ । ଅଲଗୁଣି ସେହିପରି ଜାଗାରେ ବନ୍ଧା ହୋଇଛି, ଏଥିରେ ତୁମର ଦୋଷ କିଛି ନାହିଁ ।" ସେହିଦିନରୁ ତାଙ୍କ ପ୍ରତି ମୋ' ମନରୁ ଅଯଥା ଭୟ ଦୂର ହୋଇଗଲା ।

---

# ମୀରଟ

ଲାଲା ଲାଜ୍‌ପତ୍‌ ରାୟଙ୍କ ଦ୍ୱାରା ପ୍ରତିଷ୍ଠିତ 'ଲୋକସେବକମଣ୍ଡଳ'ରେ ଶାସ୍ତ୍ରୀଜୀ କାର୍ଯ୍ୟ କରୁଥିଲେ । ସେତେବେଳେ ତାଙ୍କୁ ମାତ୍ର ପଚାଶ ଟଙ୍କା ଦରମା ମିଳୁଥିଲା । ସୋସାଇଟିର ନିୟମ ଅନୁସାରେ କର୍ମଚାରୀମାନଙ୍କ ବିବାହ ପରେ ତାଙ୍କ ଦରମା ଦଶଟଙ୍କା ବଢ଼ାଇ ଦିଆଯାଉଥିଲା । ଏହାଛଡ଼ା ଘରଭଡ଼ା ବାବଦ୍ କୋଡିଏ ଟଙ୍କା ଅଧିକା ମିଳୁଥିଲା; କିନ୍ତୁ ମୋ' ବିବାହ ପରେ ଶାସ୍ତ୍ରୀଜୀଙ୍କୁ ଅଶୀ ଟଙ୍କା ମିଳିବା ପରିବର୍ତ୍ତେ ଶହେ ପାଞ୍ଚଟଙ୍କା ଦରମା ମିଳିଲା । ଏ ପ୍ରକାର ଉନ୍ନତିର ମୂଳରେ ଥିଲା ତାଙ୍କର ଯୋଗ୍ୟତା, ସତ୍ୟନିଷ୍ଠତା ଓ କର୍ତ୍ତବ୍ୟପରାୟଣତା; କିନ୍ତୁ ତାଙ୍କ ସାଙ୍ଗସାଥୀ ମାନେ କହିଲେ—"ବୋହୂଟି ବଡ଼ ଭାଗ୍ୟବତୀ, ଆସୁ ଆସୁ ସବୁ ଉନ୍ନତି ଦେଖାଗଲାଣି ।" ଶାସ୍ତ୍ରୀଜୀ ମେରଠ ପରେ କିଛିଦିନ ଦିଲ୍ଲୀରେ ରହିଲେ; ତା'ପରେ ବନାରସ ଓ ସେଠାରୁ ଆହ୍ଲାବାଦ ଆସିଗଲେ ।

ସର୍ବପ୍ରଥମେ ଆହ୍ଲାବାଦର କଟେରୋଡ଼ରେ ଗୋଟିଏ ଘର ନିଆଗଲା ଏବଂ ସେଠାକୁ ମା'ଜୀଙ୍କ ସହିତ ମୁଁ ଆସିଗଲି । ଉପର ମହଲାରେ ଆମେ ରହୁଥିଲୁ, ତଳ ମହଲାରେ ବିନୋଦିନୀଜୀ ରହୁଥିଲେ । ବିନୋଦିନୀଜୀଙ୍କ ସ୍ୱାମୀଙ୍କ ନାମ ମୋର ମନେ ପଡୁନାହିଁ । ବିନୋଦିନୀଜୀଙ୍କ ପ୍ରାଣରେ ଦେଶପ୍ରତି ବିଶେଷ ଅନୁରକ୍ତି ଥିଲା । ସେ ଦେଶର ସ୍ୱାଧୀନତାଲାଗି ସବୁ କିଛି ତ୍ୟାଗ କରିବାକୁ ପ୍ରସ୍ତୁତ ଥିଲେ ଓ ସବୁବେଳେ ସଭାସମିତି, ଶୋଭାଯାତ୍ରା ତଥା ଅନ୍ୟାନ୍ୟ କାର୍ଯ୍ୟକ୍ରମରେ ଭାଗ ନେଉଥିଲେ । ଏସବୁ କାର୍ଯ୍ୟ ତୁଳନାରେ ତାଙ୍କୁ ଆଉ କିଛି ଭଲ ଲାଗୁ ନ ଥିଲା । ଫଳରେ ପ୍ରାୟ ଅଧିକାଂଶ ଦିନ ତାଙ୍କ ସ୍ୱାମୀଙ୍କ ସହିତ ତାଙ୍କର କଳିତକରାଳ ଓ ମନୋମାଳିନ୍ୟ ହେଉଥିଲା । କାରଣ, ରୋଷେଇ କରିବାଠାରୁ ଆରମ୍ଭ କରି ଘରର ଅନ୍ୟାନ୍ୟ ସବୁ କାମ ତାଙ୍କ ସ୍ୱାମୀଙ୍କୁ ହିଁ କରିବାକୁ ପଡୁଥିଲା । ସ୍ତ୍ରୀ' ହେବାସତ୍ତ୍ୱେ ବିନୋଦିନୀଜୀ ନିଜର ଦୈନନ୍ଦିନ କାର୍ଯ୍ୟକ୍ରମରୁ କେବେ ହେଲେ ବିମୁଖ ହେଉ ନ ଥିଲେ । ଦେଶଲାଗି ସେ ସବୁ କିଛି ସହିବା ଓ ଶୁଣିବାକୁ ପ୍ରସ୍ତୁତ ଥିଲେ । ଶାସ୍ତ୍ରୀଜୀ ମଧ୍ୟ ଚାହୁଁଥିଲେ—ମୁଁ ମଧ୍ୟ ଦେଶ ପାଇଁ କିଛି କାମ କରେ, ତଥା ସଭାସମିତି ଓ ଶୋଭାଯାତ୍ରା ଆଦିରେ ଯୋଗଦିଏ; କିନ୍ତୁ ମା'ଜୀ ଏଥିଲାଗି ଅନୁମତି ଦେଉ ନ ଥିଲେ । ସେ ଶାସ୍ତ୍ରୀଜୀଙ୍କ ଆଗରେ ବିନୋଦିନୀଙ୍କ ଉଦାହରଣ

ଦେଉଥିଲେ । ତାଙ୍କର ମତ ହେଉଛି ସ୍ତ୍ରୀମାନେ ପ୍ରଥମେ ଘରକାର୍ଯ୍ୟ କରିସାରି ପରେ ବାହାର କାମରେ ହାତ ଲଗାଇବା ଉଚିତ; ତା' ନ ହେଲେ, ଘର ତ ନଷ୍ଟ ହୋଇଯିବ, ତା ସଙ୍ଗେ ସଙ୍ଗେ ଛୁଆପିଲାଙ୍କ ଜୀବନ ମଧ୍ୟ ନଷ୍ଟ ହୋଇଯିବ । ଶାସ୍ତ୍ରୀଜୀ କେବେହେଲେ ମା'ଜୀଙ୍କ ସହିତ ତର୍କ କରୁନଥିଲେ କାରଣ ତାଙ୍କ କଥା କାଟି ପାରୁ ନ ଥିଲେ । ତେଣୁ ତାଙ୍କୁ ବାଧ୍ୟ ହୋଇ ନୀରବ ରହିବାକୁ ପଡୁଥିଲା । ଅବଶ୍ୟ ବଡ଼ ବଡ଼ ନେତାମାନେ ଆସିଲେ, ମା'ଜୀ ମୋତେ ସଙ୍ଗରେ ନେଇ ସଭାସମିତି ଓ ଶୋଭାଯାତ୍ରାରେ ଯୋଗ ଦେଉଥିଲେ । କେବେ କେବେ ମା'ଜୀଙ୍କ ଅନୁମତି ନେଇ ମୁଁ ଶାସ୍ତ୍ରୀଜୀଙ୍କ ସହିତ ଯାଉଥିଲି । ମା'ଜୀ ସଙ୍ଗରେ ଥିଲେ ମୋତେ ଓଢ଼ଣା ଦେବାରେ ବିଶେଷ ସତର୍କ ହେବାକୁ ପଡ଼ୁଥିଲା । କାରଣ, ଓଢ଼ଣା ଖୋଲି ବୁଲିବାକୁ ସେ ଆଦୌ ପସନ୍ଦ କରୁ ନ ଥିଲେ । ସେ ସଙ୍ଗରେ ଥିଲେ ସଡ଼କ ଉପରେ ମଧ୍ୟ ବଡ଼ କାଇଦା କଟକଣାରେ ବୁଲିବାକୁ ପଡ଼ୁଥିଲା; କିନ୍ତୁ ମୁଁ ଯେତେବେଳେ ଏକୁଟିଆ ଶାସ୍ତ୍ରୀଜୀଙ୍କ ସଙ୍ଗରେ ଯାଉଥିଲି, ସେତେବେଳେ ମୋତେ ଓଢ଼ଣା ଟାଣିବାକୁ ପଡୁ ନ ଥିଲା; ତଥାପି ଘରୁ ବାହାରିବା-ବେଳେ ଓ ଘରକୁ ଫେରିବାବେଳେ ଓଢ଼ଣା ଟାଣିବାକୁ ପଡୁଥିଲା । ଶାସ୍ତ୍ରୀଜୀ ମଧ୍ୟ ଏହା ଚାହୁଁଥିଲେ । ସେ କହୁଥିଲେ—ତାଙ୍କର ତଥା ମୋର ଏପରି କୌଣସି କାମ କରିବା ଉଚିତ ନୁହେଁ, ଯାହାଦ୍ୱାରା ମା'ଜୀଙ୍କ ମନରେ ଦୁଃଖ ଜାତ ହେବ । ମୋତେ ଏ ପ୍ରକାର ପରୀକ୍ଷାରେ ସଫଳତା ମିଳିଥିଲା କି ନା, ମୁଁ ଜାଣେ ନାହିଁ; କିନ୍ତୁ ଶାସ୍ତ୍ରୀଜୀ ପୂର୍ଣ୍ଣ ସଫଳତା ହାସଲ କରିଥିଲେ । ସେ ଜୀବନକାଳ ମଧ୍ୟରେ ମା'ଜୀଙ୍କ ମନରେ ଦୁଃଖ ଜାତ ହେବାଭଳି କୌଣସି କାର୍ଯ୍ୟ କରି ନ ଥିଲେ । ମା'ଜୀ ପ୍ରକୃତରେ ରାମଦୁଲାରୀ ( ରାମଚନ୍ଦ୍ରଙ୍କ ଜନନୀ ) ଥିଲେ, ଅନ୍ୟଥା କୌଣସି ମା'ଙ୍କୁ ଶହ ଶହ ବର୍ଷ ମଧ୍ୟରେ ଏଭଳି ପୁଅ ମିଳିଥିବ କି ନା, ସନ୍ଦେହ ।

ସେ ସମୟର କଥା ଓ ଆଜିର କଥା ମଧ୍ୟରେ ଅନେକ ପାର୍ଥକ୍ୟ ଦେଖାଗଲାଣି । ସେ ସମୟର କଥାବାର୍ତ୍ତା, ମିଳାମିଶା, ରଙ୍ଗଢ଼ଙ୍ଗ ଓ କାର୍ଯ୍ୟକଳାପ ଭିନ୍ନ ଥିଲା । ମା'ଜୀଙ୍କ ସମ୍ବନ୍ଧରେ ଆଉ ଗୋଟିଏ ଘଟଣା ମୁଁ ଆପଣମାନଙ୍କୁ କହୁଛି । ଆମେ ଘରର ଉପର ମହଲାରେ ରହୁଥିବାରୁ ତଳୁ ପାଣି ବୋହାଯାଇ ଉପରକୁ ନିଆଯାଉଥିଲା । ମା'ଜୀ ଘରର ମୁରବୀ ତଥା ବୁଢ଼ୀ ହୋଇଥିବାରୁ ପାଣି ବୋହି ନେବା ତାଙ୍କ ପକ୍ଷେ ସମ୍ଭବ ହେଉ ନ ଥିଲା । ଶାସ୍ତ୍ରୀଜୀ ମଧ୍ୟ ପାଣି ବୋହିବାକୁ ସଙ୍କୋଚ ବୋଧ କରୁଥିଲେ ଏବଂ ମାଜୀଙ୍କୁ ମଧ୍ୟ ତାହା ବାଧୁଥିଲା । ସେ ସମୟରେ ଏ ପ୍ରକାର କାମକୁ ବୁଢ଼ା ବୁଢ଼ୀ ଲୋକମାନେ ପସନ୍ଦ କରୁ ନ ଥିଲେ । ଶାସ୍ତ୍ରୀଜୀ ମଧ୍ୟ ଏସବୁ ଲୋକାଚାର ପ୍ରତି ବିଶେଷ ସତର୍କ ଦୃଷ୍ଟି ଦେଉଥିଲେ । ଏଣୁ ମୋତେ ହିଁ ପାଣି ବୋହିନେବାକୁ ପଡୁଥିଲା; ଶାସ୍ତ୍ରୀଜୀ ମୋର କଷ୍ଟ ସହିପାରୁ ନ ଥିଲେ । ମୁଁ ଯେତେବେଳେ ଗରାରେ ପାଣି ଭରି ଉପରକୁ ଉଠୁଥିଲି,

ସେତେବେଳେ ଶାସ୍ତ୍ରୀଜୀ ଧୀରେ ଶିଡ଼ିର ତଳକୁ ଆସି ମୋ' ହାତରୁ ଗଗ୍ରିଟି ନେଇ ଉପରକୁ ଯାଇ ଶେଷ ଦୁଇ ତିନୋଟି ପାହାଚ ପୂର୍ବରୁ ପୁଣି ମୋତେ ଗଗ୍ରିଟି ଧରାଇ ଦେଇ ତଳକୁ କମ୍ବା ଉପରକୁ ଚାଲି ଯାଉଥିଲେ । ଏହି ପ୍ରକାର ରୀତରେ ଦୁଇଓଳି ପାଣି ଅଣାଯାଇ ମା'ଜୀଙ୍କ ନିୟମ ରକ୍ଷା କରାଯାଉଥିଲା ।

## ହସି ହସି ଜେଲଯାତ୍ରା

ପ୍ରାୟ ଆଠମାସ ପର୍ଯ୍ୟନ୍ତ ଆମ୍ଭେମାନେ ଜରୋରୋଡ଼ରେ ରହିଥିଲୁ । ତା'ପରେ ଲୁଡ଼ର୍ ରୋଡ଼ରେ ଗୋଟିଏ ଘର ନିଆଗଲା । ଏ' ଘରେ ମଧ୍ୟ ଆମ ସହିତ ମୋହନଲାଲ ଗୌତମ ଓ ତାଙ୍କ ସ୍ତ୍ରୀ ରହୁଥିଲେ । ସେମାନେ ତଳ ମହଲାରେ ରହୁଥିଲେ । ଆମେ ଉପର ମହଲାରେ ରହୁଥିଲୁ । ମୋ ବଡ଼ଝିଅ କୁସୁମ ସେତେବେଳେ ଗର୍ଭରେ ଥାଏ । ଗାନ୍ଧିଜୀ 'ଲବଣ-ସତ୍ୟାଗ୍ରହ' ଆରମ୍ଭ କଲେ । ଧୀରେ ଧୀରେ ସତ୍ୟାଗ୍ରହ ତେଜିବାକୁ ଲାଗିଲା । ଦିନେ ସମସ୍ତେ ଖିଆପିଆ କରୁଥିବାବେଳେ ଶାସ୍ତ୍ରୀଜୀ ସମସ୍ତଙ୍କୁ ଶୁଣାଇ କହିଲେ—"ମୋତେ ବୋଧହୁଏ ଦି' ଚାରିଦିନ ମଧ୍ୟରେ ଜେଲ୍ ଯିବାକୁ ପଡ଼ିବ; କିନ୍ତୁ ମୁଁ ଜେଲ ଯିବା ପରେ ଯେ କନ୍ଦାକଟା କରିବ, ମୁଁ ଜାଣିବି ମୋ' ପ୍ରତି ତା'ର ସ୍ନେହ ନାହିଁ । ଯେ ଅଦୌ ନ କାନ୍ଦିବ, ମୋ'ପ୍ରତି ପ୍ରକୃତରେ ତା'ର ସ୍ନେହ ରହିଛି ବୋଲି ମୁଁ ଜାଣିବି ।" ପରଦିନ ବା ତହିଁ ଆରଦିନ ମା'ଜୀ ମୋର ଦୁଇ ନଣନ୍ଦଙ୍କୁ ସଙ୍ଗରେ ନେଇ ବିନ୍ଧ୍ୟାଞ୍ଚଳ ଚାଲିଗଲେ । ସେଠାରେ ସେ ଦେବୀଜୀ (ବିନ୍ଧ୍ୟବାସିନୀ ଦେବୀ)ଙ୍କ ଲାଗି ମାନସିକ ରଖିଲେ । ଯିବାବେଳେ ସନ୍ଧ୍ୟାସୁଦ୍ଧା ଫେରି ଆସିବାକୁ କହି ଯାଇଥିଲେ । ସେହି ଦିନ ଶାସ୍ତ୍ରୀଜୀ ମଧ୍ୟ 'ମେଜା' (ଏଲ୍ଲାବାଦ ଜିଲ୍ଲାର ଗୋଟିଏ ତହସିଲ) ଯାଇଥିଲେ; କିନ୍ତୁ ଯିବାବେଳେ ସେ 'ଲବଣ ସତ୍ୟାଗ୍ରହ'ରେ ଯୋଗ ଦେବାକୁ ଯାଉଛନ୍ତି ବୋଲି କିଛି କହି ନ ଥିଲେ । ସନ୍ଧ୍ୟାସୁଦ୍ଧା ଫେରିବେ କି ବୋଲି ମୁଁ ପଚାରିଲାରୁ ସେ କେବଳ ଶୀଘ୍ର ଆସିବା କଥା କହି ଚାଲିଗଲେ । ସେଦିନ ମୋ' ଦେହ ଖରାପ ଲାଗୁଥିଲା । ତେଣୁ ସନ୍ଧ୍ୟା ପୂର୍ବରୁ ମୁଁ ରୋଷେଇ ସାରିଦେଲି । ଶାସ୍ତ୍ରୀଜୀ ଆସିଲେ ଗରମ ଗରମ ରୁଟି ସେକି ଦେବି ବୋଲି ଚାରି ଅଟା ଦଳାଦଳି କରି ରଖିଦେଲି । ବିଚାରୀ ଗୌତମଜୀଙ୍କ ପତ୍ନୀ ରୋଷେଇ କରିବାରେ ମୋତେ ସାହାଯ୍ୟ କରୁଥିଲେ । ସନ୍ଧ୍ୟା ହେବା ପରେ ଯେତେବେଳେ ଶାସ୍ତ୍ରୀଜୀ କିମ୍ବା ମା'ଜୀ କେହି ନ ଆସିଲେ, ଗୌତମଜୀଙ୍କ ସ୍ତ୍ରୀ ମୋତେ ଟିକିଏ ବିଶ୍ରାମ ନେବାକୁ କହିଲେ । ଶାସ୍ତ୍ରୀଜୀ ଆସିଗଲେ ସେ ଗରମ ରୁଟି ସେକି ଦେବାକୁ ମଧ୍ୟ ପ୍ରତିଶ୍ରୁତି ଦେଲେ । ମୁଁ ଭିତରକୁ ଯାଇ ନିଜ କୋଠରୀରେ ଶୋଇବାକୁ ଚେଷ୍ଟା କଲି ଏବଂ ଗୌତମଜୀଙ୍କ ପତ୍ନୀ ମଧ୍ୟ ତଳକୁ ଚାଲିଗଲେ; କିନ୍ତୁ ମନରେ ଶାନ୍ତି କାହିଁ ଆସନ୍ତା ? ଶାସ୍ତ୍ରୀଜୀଙ୍କର ଆସିବା ଡେରି ହେଲା କାହିଁକି ? ସେ ଆଉ ଧରା ହୋଇ ଗଲେ କି ? ଏ ଭଳି ନାନାପ୍ରକାରର ଆଶଙ୍କା

ମୋ' ମନରେ ଜାତ ହେଲା । ମୁଁ ବିଛଣାରୁ ଉଠି ଛାତ ଉପରକୁ ଚାଲିଗଲି ଏବଂ ଏକଧ୍ୟାନରେ ଶାସ୍ତ୍ରୀଜୀଙ୍କ ପ୍ରତୀକ୍ଷାରେ ସଡ଼କ ଆଡ଼କୁ ଚାହିଁ ରହିଲି । କିଛି ସମୟ ଯାଇଛି ସାମନା ସଡ଼କରେ ଗୋଟିଏ ମୋଟର ଆସୁଥିବାର ଦେଖାଗଲା । ତା' ଭିତରୁ "ଇନ୍‌କିଲାବ୍ ଜିନ୍ଦାବାଦ୍" "ଗାନ୍ଧିଜୀ କୀ ଜୟ" ଆଦି ଧ୍ୱନି ଶୁଣା ଯାଉଥିଲା । ମୁଁ ଛାତର ପାରେଟ ଉପରେ କହିଁପଡ଼ି ଏକଧ୍ୟାନରେ ସେ ଆଡ଼କୁ ଚାହିଁ ରହିଲି । ମୋଟର ମଧ୍ୟରେ ଅନେକ ସତ୍ୟାଗ୍ରହୀ ବସିଥିଲେ । ଠିକ୍ ଗୋଟିଏ ପାଖକୁ ଶାସ୍ତ୍ରୀଜୀ ମଧ୍ୟ ବସିଥିଲେ । ସେ ମୋତେ ଦେଖି ହାତ ହଲାଇଲେ । ମୁଁ ଏକଦୃଷ୍ଟିରେ ତାଙ୍କ ଆଡ଼କୁ ଚାହିଁ ରହିଥାଏ । ମୋଟର ଚାଲିଗଲା । ମୋ' ଆଖି ଛଳ ଛଳ ହୋଇଗଲା; କିନ୍ତୁ ସଙ୍ଗେ ସଙ୍ଗେ ତାଙ୍କ କଥା ମନେ ପଡ଼ିଗଲା, "କାନ୍ଦିବା ଲୋକର ସ୍ନେହ ମୋ' ପ୍ରତି କମ୍ ।" ମୁଁ ଆଖିରୁ ଲୁହ ପୋଛି ଦେଇ ତଳକୁ ଓହ୍ଲାଇ ଆସିଲି । ଅନେକ ପ୍ରକାର ଭାବନା ମୋ' ମୁଣ୍ଡରେ ଖେଳିଗଲା । ଶାସ୍ତ୍ରୀଜୀଙ୍କର ଜେଲ୍‌ଯାତ୍ରା ଦେଖିବା ମୋ' ଜୀବନରେ ତାହାହିଁ ଥିଲା ପ୍ରଥମ ଅବସର । ବେଳେ ବେଳେ ମୋ' ମଧ୍ୟ ସନ୍ଦେହ ହେଉଥିଲା—ଯେଉଁ ଲୋକକୁ ଦେଖିଲି, ସେ ଶାସ୍ତ୍ରୀଜୀ ନ ହୋଇ ଅନ୍ୟ କୌଣସି ଭଦ୍ରଲୋକ ହୋଇପାରନ୍ତି ! ତା' ସଙ୍ଗେ ସଙ୍ଗେ ପୁଣି ଭାବୁଥିଲି—ଯଦି ସେ ଶାସ୍ତ୍ରୀଜୀ ହୋଇ ନ ଥା'ନ୍ତେ, ତା'ହେଲେ, ମୋତେ ଦେଖି ହାତ ହଲାଇଥା'ନ୍ତେ କାହିଁକି ? ସେ ନିଶ୍ଚୟ ଶାସ୍ତ୍ରୀଜୀ ! ପୁଣି ଭାବୁଥିଲି—ନା, ସେ ଶାସ୍ତ୍ରୀଜୀ ନୁହନ୍ତି । ମୁଁ ଯେଉଁ ସନ୍ଦେହ କରୁଥିଲି ସେଥିରେ କେବଳ ମୋତେ ସାନ୍ତ୍ୱନା ମିଳୁଥିଲା ସିନା; କିନ୍ତୁ ତା' ମୂଳରେ କୌଣସି ବାସ୍ତବତା ନ ଥିଲା । ମଝିରେ ମଝିରେ ଆଖି ଛଳ ଛଳ ହୋଇ ଯାଉଥିଲା । ମୁଁ ସଙ୍ଗେ ସଙ୍ଗେ ଲୁହ ପୋଛି ଦେଇ ନିଜକୁ ଧିକ୍କାର କରୁଥିଲି ।

ପ୍ରାୟ ରାତି ନ'ଟା ବେଳକୁ ମା'ଜୀ ଆସିଗଲେ । ମୁଁ ଶାସ୍ତ୍ରୀଜୀଙ୍କ ଗିରଫ ହୋଇଯିବା କଥା ତାଙ୍କୁ କହିଲି; କିନ୍ତୁ ମା'ଜୀ ମୋ' କଥାରେ ବିଶ୍ୱାସ କରି ନ ପାରି ପଚାରିଲେ—"ତୁ ବଡ଼ଓ୍ୱାଙ୍କୁ ଠିକ୍‌ଭାବରେ ଦେଖିଛୁ ତ ?"

"ହଁ, ସେ ଟୋପି ପିନ୍ଧି ମୋଟରରେ ଗୋଟିଏ ପାଖକୁ ବସିଥିଲେ । ଠିକ୍ ଏହିଠାରେ ଆମ ଘର ଆଡ଼କୁ ଚାହିଁଥିଲେ ।" ମୁଁ ଶାସ୍ତ୍ରୀଜୀଙ୍କର ହାତ ହଲାଇବା ବିଷୟ ଲୁଚାଇଲି; କାରଣ, ତାହା ମା'ଜୀ ପସନ୍ଦ କରି ନ ଥା'ନ୍ତେ ।

"ଟୋପି ତ ସମସ୍ତେ ପିନ୍ଧିଛନ୍ତି; ସେ ବଡ଼ଓ୍ୱା ନୁହେଁ, ଆଉ କେହି ହୋଇଥିବ ! ତୁ ଚିହ୍ନି ପାରିନାହୁଁ । ଯାଅ, ସମସ୍ତେ ଖିଆପିଆ କର ।"

ଏକେ ତ ଦେହ ଖରାପ, ଦ୍ୱିତୀୟରେ ମନ ଖରାପ, ସେଥିରେ ଖାଇବାକୁ ରୁଚିବ କିପରି ? ତଥାପି ମା'ଜୀଙ୍କୁ ଦେଖାଇବା ଲାଗି ଏଣୁତେଣୁ ଟିକିଏ ପାଟିରେ ଦେଇ ମୁଁ

ଉଠିପଡ଼ିଲି । ମା'ଜୀ ପ୍ରତିଦିନ ଶୋଇବାବେଳେ ରାମାୟଣ ଶୁଣୁଥିଲେ, ତେଣୁ ତାଙ୍କ ଖଟିଆ ପାଖରେ ବସି ସୁନ୍ଦରକାଣ୍ଡ ଶୁଣାଇଲି । କିଛି ସମୟ ପରେ ମା'ଜୀ ଶୋଇପଡ଼ିଲେ; କିନ୍ତୁ ମୁଁ ରାମାୟଣ ପଢ଼ୁଥିଲି । ଚୁଲି ଲିଭାଇ ଦିଆଯାଇ ନ ଥିଲା; କାରଣ, କାଲେ ରାତିରେ ଶାସ୍ତ୍ରୀଜୀ ଆସିଯିବେ । ମା'ଜୀ ମୋତେ କହିବାରୁ ମୁଁ ବିଶ୍ୱାସ କରିଥିଲି; ମାତ୍ର ମୁଁ ନିଜେ ଶାସ୍ତ୍ରୀଜୀଙ୍କୁ ମୋଟରରେ ବସି ଯାଉଥିବାର ଦେଖି ଚିହ୍ନିପାରିଥିଲି ।

ପ୍ରାୟ ରାତି ଏଗାରଟା ବେଳେ କେହି ଜଣେ ଆସି କବାଟ ଖଡ଼୍ ଖଡ଼୍ କଲା । ପ୍ରଥମେ ମୁଁ ଧଡ଼୍ ପଡ଼୍ ହୋଇ ଉଠିପଡ଼ିଲି; କିନ୍ତୁ ବାହାରକୁ ନ ଯାଇ ଛିଡ଼ା ହୋଇ ରହିଲି । ଶାସ୍ତ୍ରୀଜୀ ଯେପରି କବାଟ ଖଡ଼୍ ଖଡ଼୍ କରନ୍ତି, ସେପରି ଖଡ଼୍ ଖଡ଼୍ ହେଉ ନ ଥିଲା ।

ମୁଁ ଯାଇ ମା'ଜୀଙ୍କୁ ଉଠାଇଲି । ସେ ଯାଇ ଦୁଆର ଖୋଲି ଦେଲେ । ଯେଉଁ ଭଦ୍ରବ୍ୟକ୍ତି ଆସିଥିଲେ, ତାଙ୍କୁ ଶାସ୍ତ୍ରୀଜୀ ପଠାଇଥିଲେ । ସେ ପୋଲିସ ଥାନାରେ ଅଟକ ଥିଲେ । ମା'ଜୀ ତାଙ୍କୁ ଭିତରେ ବସାଇ ମୋତେ ପୁରି ତିଆରି କରିବାକୁ କହିଲେ । ମୁଁ କାନ୍ଦ କାନ୍ଦ ହୋଇଗଲି; ଜଣାପଡ଼ୁଥିଲା, ସତେ ଯେପରି ଆଖିରୁ ଲୁହ ବୋହିପଡ଼ିବ । ମୋ' କାନ୍ଦଣା କେହି ନ ଦେଖନ୍ତୁ; ସେଥିଲାଗି ମୁଁ ରୋଷେଇଘରକୁ ଯାଇ ଚୁଲି ଫୁଙ୍କିବାକୁ ଲାଗିଲି । ମୋ' ନଣନ୍ଦମାନେ ମଧ୍ୟ ଉଠି ପଡ଼ିଥିଲେ । ସେମାନଙ୍କୁ ମଧ୍ୟ କାନ୍ଦ ଲାଗୁଥିଲା; ମାତ୍ର ସେମାନେ ମୋ'ପରି ଆଖିରେ ଲୁହ ଲୁଚାଇବାକୁ ଚେଷ୍ଟା କରୁଥିଲେ ।

ପୁରି ନେଇ ମା'ଜୀ ସେ ଭଦ୍ରବ୍ୟକ୍ତିଙ୍କ ସହିତ ଥାନାକୁ ଚାଲିଗଲେ । ଯଦ୍ୟପି ଶାସ୍ତ୍ରୀଜୀ ତଥା ଅନ୍ୟାନ୍ୟ ସତ୍ୟାଗ୍ରହୀମାନେ ଖାଇ ସାରିଥିଲେ; ତଥାପି ମା'ଜୀଙ୍କ କହିବା ଅନୁସାରେ ସେ ପୁଣି ଖଣ୍ଡେ ପୁରି ଖାଇଥିଲେ । ମା'ଜୀ ଥାନାରୁ ଫେରିଆସି ପୁରିତକ ମୋ' ହାତରେ ଦେଇ କହିଲେ—"ବହୁ ! କେତେବେଳେ ସତ୍ୟାଗ୍ରହ କରି ହସି ହସି ଜେଲ୍ ଯାଇଛି, ସେତେବେଳେ ତୁ ଖାଲି ପେଟରେ ଶୋଇଲେ ତାର ଅମଙ୍ଗଳ ହେବ ।" ମୋତେ ମା'ଜୀଙ୍କର ଆଜ୍ଞା ପାଳନ କରିବାକୁ ପଡ଼ିଲା ।

ସାରାରାତି ମୋ' ଆଖିକୁ ନିଦ ଆସିଲା ନାହିଁ । ମୁଁ ଯେତେ ଚେଷ୍ଟା କଲେ ମଧ୍ୟ ନିଜେ ଧୈର୍ଯ୍ୟ ଧରି ପାରୁ ନ ଥିଲି । ମୋ' ଆଖିରେ ଅମାନିଆ ଲୁହ ଛଳ ଛଳ ହୋଇ ବେଳେବେଳେ ଟପ୍ ଟପ୍ ହୋଇ ଝରି ପଡ଼ୁଥିଲା ।

———

# ପାଞ୍ଚ

**କାନ ଧରି ପ୍ରତିଜ୍ଞା—**

ଥାନାରେ ରହିବା ପରେ ପରେ ଶାସ୍ତ୍ରୀଜୀଙ୍କୁ ମଲାକା (ନବନିର୍ମିତ ସ୍ୱରୂପରାଣୀ ଡାକ୍ତରଖାନାର ତଳମହଲଟି ଜିଲ୍ଲା ଜେଲ୍‌ରୂପେ ବ୍ୟବହୃତ ହେଉଥିଲା) ଜେଲ୍‌କୁ ପଠାଇ ଦିଆଗଲା। କିଛିଦିନ ପରେ ଦେଖା କରିବା ଲାଗି ଦରଖାସ୍ତ ଦିଆଗଲା। ଦରଖାସ୍ତ ମଧ୍ୟ ମଞ୍ଜୁର ହୋଇଗଲା। ନିର୍ଦ୍ଦିଷ୍ଟ ଦିନ ଦୁଇ ନଣନ୍ଦ, ମା'ଜୀ ଓ ମୁଁ ଦେଖା କରିବାକୁ ଗଲୁ। ଫାଟକ ବାହାରେ ଜେଲର ସାହେବଙ୍କ କୋଠରୀକୁ ଶାସ୍ତ୍ରୀଜୀ ଆସିଲେ। ମା'ଜୀ ଥିବାରୁ ସେ ମୋ' ସହିତ କିଛି କଥାବାର୍ତ୍ତା କରୁ ନ ଥିଲେ କିମ୍ବା ମୁଁ ତାଙ୍କ ସହିତ କିଛି କଥାବାର୍ତ୍ତା କରିପାରିଲି ନାହିଁ। କେବଳ ମାତ୍ର ସାହା ଦେଖିବାର ସୌଭାଗ୍ୟ ମିଳିଲା। ତା' ମଧ୍ୟ ଖୁବ୍ ସ୍ୱାଧୀନତାର ସହିତ ନୁହେଁ। ମା'ଜୀ ଓ ଭଉଣୀ ଦୁହିଁଙ୍କ ସହିତ ତାଙ୍କର କଥାବାର୍ତ୍ତା ଚାଲିଥିଲା। ଦେଖା କରିବାର ନିର୍ଦ୍ଦିଷ୍ଟ ସମୟ ଥିଲା କୋଡ଼ିଏ ମିନିଟ। ସେତିକ ସମୟ ଶେଷ ହୋଇଯିବା ଉତ୍ତାରୁ ଜଣେ ସିପାହୀ ଶାସ୍ତ୍ରୀଜୀଙ୍କୁ ଭିତରକୁ ନେଇଯିବାକୁ ଆସିଲା ଏବଂ ଆମକୁ ମଧ୍ୟ ବାହାରକୁ ଚାଲିଯିବାଲାଗି ସଙ୍କେତ ଦେଲା। ସମସ୍ତେ ଉଠିପଡ଼ିଲେ। ତା' ପରେ ଶାସ୍ତ୍ରୀଜୀ ମୋ' ଆଡ଼କୁ ସଙ୍କେତ କରି କହିଲେ "ଏହାଙ୍କୁ ଗୋଟିଏ ସେକେଣ୍ଡ ଅଟକାଉଛି।" ମୁଁ ଛିଡ଼ା ହୋଇ ରହିଲି। ଆଉ ସମସ୍ତେ ବାହାରକୁ ଚାଲିଗଲେ। ଶାସ୍ତ୍ରୀଜୀ ମୋ' ପିଠି ଥାପୁଡ଼େଇ ଦେଇ କହିଲେ—"ଅଲଗା ରହିଲେ ସ୍ନେହ ବଢ଼େ। ମୋର ଏଠାରେ କୌଣସି ପ୍ରକାର ଅସୁବିଧା ହେଉନାହିଁ। ତୁମେ ଖୁସିରେ ରହିବ। ଯଦି ତୁମେ ମନ ଖୁସିରେ ନ ରହିବ, ତା ହେଲେ ମୋ' ମନରେ ଦୁଃଖ ଜାତହେବ। ରାମନଗରରେ ସମସ୍ତଙ୍କର ସେବା କରିବ; କିନ୍ତୁ ନିଜର ସ୍ୱାସ୍ଥ୍ୟ ପ୍ରତି ସବୁବେଳେ ଦୃଷ୍ଟି ଦେବ।"

ମୁଁ ତାଙ୍କ କଥାରେ 'ହଁ' ବା 'ନାଁ' କିଛି କହିପାରିଲି ନାହିଁ । ମୋର କଣ୍ଠରୁଦ୍ଧ ହୋଇଆସିଲା । ଆଖିରେ ଲୁହ ଭରିଗଲା । ଶାଶୁଜୀ ବାହାରକୁ ଚାଲିଆସିଲେ । ମୁଁ ମଧ୍ୟ ଲୁଗା କାନିରେ ଲୁହ ପୋଛି ଓଢ଼ଣୀ ଟିକେ ଆଗକୁ ଟାଣି ତାଙ୍କ ପଛେ ପଛେ ବାହାରକୁ ଚାଲିଆସିଲି । ଫାଟକ ପାଖରେ ଚାଲି ଯାଉଥିବାବେଳେ ସେ ବଡ଼ ସାନ ନଣନ୍ଦ ଦୁହିଁଙ୍କୁ କହିଲେ, "ଏହାର ମିଲିମିଶି ହୋଇଗଲେ, ତୁମେ ତୁମ ଘରକୁ ଯିବ । ଆଉ ମଧ୍ୟ ଏହା ପ୍ରତି ବିଶେଷ ଦୃଷ୍ଟି ଦେବ । ପ୍ରକୃତ ସ୍ନେହର ପରିଚୟ ଏହିପରି ଅବସରରେ ମିଳିଥାଏ ।" ସେ ମା'ଜୀଙ୍କ ପାଦ ଛୁଇଁ ପ୍ରଣାମ କରି ସିପାହୀ ସହିତ ଭିତରକୁ ଚାଲିଗଲେ ।

ଲିଡ଼ର ରୋଡ଼ରେ ଥିବା ଘର ଛାଡ଼ିଦେଇ ଆମେ ରାମନଗର ଚାଲିଆସିଲୁ । କୁସୁମ ଜନ୍ମ ହେବା ପରେ ନଣନ୍ଦ ଦୁହେଁ ନିଜ ନିଜ ଶ୍ୱଶୁର ଘରକୁ ଗଲେ ।

## ପଛକୁ ପାଦ ନ ପଡୁ—

ଶାସ୍ତ୍ରୀଜୀଙ୍କ ଜେଲ୍ ଯିବା ପୂର୍ବର ଦୁଇ ତିନିଟି ଘଟଣା ମୁଁ ଉଲ୍ଲେଖ କରିବାକୁ ଭୁଲିଯାଇଛି । ଲିଡ଼ର ରୋଡ଼ରେ ଥିବା ଘରକୁ ଆସିବାର କିଛି ଦିନ ପରେ ମୋ' ଆଗରେ ଗୋଟିଏ ବଡ଼ ବିଚିତ୍ର ସମସ୍ୟା ଆସି ଉପସ୍ଥିତ ହେଲା । ସୋଲାପୁରରେ କଂଗ୍ରେସ ସମ୍ବନ୍ଧୀୟ କୌଣସି ଗୋଟିଏ କାଣ୍ଡ ଘଟି ଯାଇଥିଲା । କ'ଣ ହୋଇଥିଲା ଅବଶ୍ୟ ମୋର ମନେ ନାହିଁ । ସେହି କାଣ୍ଡ ଘଟିଥିବାରୁ ସେଠାରେ ମାର୍ଶାଲ୍ 'ଲ' ଜାରି ହୋଇ ଥିଲା । ତଥାପି ଦେଶର ପ୍ରତ୍ୟେକ ଅଞ୍ଚଳରୁ କଂଗ୍ରେସର ସ୍ୱେଚ୍ଛାସେବକମାନେ ସେଠାକୁ ଯାଉଥିଲେ ଓ ବନ୍ଧୁକ ଗୁଳିରେ ପ୍ରାଣ ହରାଉଥିଲେ । ଶାସ୍ତ୍ରୀଜୀ ମଧ୍ୟ ସେଠାକୁ ଯିବାଲାଗି ନିଜ ନାମ ପଠାଇଥିଲେ । ସେତେବେଳେ ଟଣ୍ଡନଜୀ (ରାଜର୍ଷି ପୁରୁଷୋତ୍ତମ ଦାସ ଟଣ୍ଡନ) ଏ କଥା ଜାଣିଲେ, ସେ ସଙ୍ଗେ ସଙ୍ଗେ ଶାସ୍ତ୍ରୀଜୀଙ୍କୁ ଅନେକ ପ୍ରକାର ବୁଝାଇ ସେଠାକୁ ନ ଯିବା ଲାଗି ଉପଦେଶ ଦେଲେ; କିନ୍ତୁ ଶାସ୍ତ୍ରୀଜୀ ନିଜ କଥାରେ ଅଟଳ ରହିଲେ । ଟଣ୍ଡନଜୀ ଖୁବ ଚିନ୍ତିତ ହୋଇ ପଡ଼ିଲେ । ସେ ଅନ୍ୟ କୌଣସି ଉପାୟ ନ ପାଇ ମୋ' ନିକଟକୁ କହି ପଠାଇଲେ—ମୁଁ କୌଣସିମତେ ମା'ଜୀଙ୍କୁ କହି ତାଙ୍କ ଯାତ୍ରା ବନ୍ଦ କରିଦିଏ । ଶାସ୍ତ୍ରୀଜୀଙ୍କର ସେଠାକୁ ଯିବାର ଖବର ଶୁଣି ମୋର ତ ଅଧା ପ୍ରାଣ ଶୁଖିଗଲା । ମୁଁ ସଙ୍ଗେ ସଙ୍ଗେ ମା'ଜୀଙ୍କୁ କହି ତାଙ୍କ ଯିବାରେ ବାଧା ଦେବାଲାଗି ଅନୁରୋଧ କଲି । ମା'ଜୀ ସବୁ ଶୁଣିସାରି କିଛି ସମୟ ଚୁପ୍ ରହି ଧୀରେ କହିଲେ—"ନାଁ, ମୁଁ ବଚଓ୍ୱାକୁ ସେଠାକୁ ଯିବାଲାଗି ମନାକରି ପାରିବି ନାହିଁ । ସେ ଯେତେବେଳେ ଆଗକୁ ପାଦ ବଢ଼ାଇଛି, ପଛକୁ ପକାଇବା ଉଚିତ ନୁହେଁ । ଭଗବାନଙ୍କର ଯାହା ଇଚ୍ଛାଥିବ, ତାହା ହିଁ ହେବ ! ତୁ ଯଦି କହିବୁ କହ ।" ମା'ଜୀଙ୍କ କଥା ଶୁଣି ମୋର ଶେଷ ଆଶା ଭରସା ବୁଡ଼ିବା ସଙ୍ଗେ

ସଙ୍ଗେ ମୋତେ କାନ୍ଦ ମାଡ଼ିଲା । ଯେ କୌଣସି ମତେ ସନ୍ଧ୍ୟା ହେଲା, ଶାସ୍ତ୍ରୀଜୀ ଆସିଲେ; କିନ୍ତୁ କଥାବାର୍ତ୍ତା କରିବାର ସୁବିଧା ମିଳିଲା ନାହିଁ । ଖିଆପିଆ ଓ ଧୂଆଧୋଇ କାମ ସରିଲା । ତାହାପରେ ଯାଇ ରାତିରେ ପଚାରିବାକୁ ସମୟ ମିଳିଲା । ଯେତେବେଳେ ମୁଁ ଜାଣିଲି ଯେ, ସେ ନିଶ୍ଚୟ ଯିବେ ମୁଁ କହିଲି "ମୋତେ ସାଙ୍ଗରେ ନେଇ ଚାଲନ୍ତୁ ।"

"କାହିଁକି, ତୁମେ ଯାଇ ସେଠାରେ କ'ଣ କରିବ ? ଏଠାରେ ତ ପୁଣି ମା'ଙ୍କ ଦେଖାଶୁଣାପାଇଁ କେହି ରହିବା ଦରକାର ।"

"ନା, ମୁଁ ଏଠାରେ ଏକୁଟିଆ ରହିବି ନାହିଁ । ଆପଣ ଯେଉଁଆଡ଼େ ଯିବେ, ମୁଁ ସେହିଠାକୁ ଯିବି ।"

"ନା, ଏହା ହୋଇ ପାରିବ ନାହିଁ ।" କହି ଶାସ୍ତ୍ରୀଜୀ ନୀରବ ହେଲେ । ମୁଁ କାନ୍ଦିବାକୁ ଲାଗିଲି । ଶାସ୍ତ୍ରୀଜୀ ମଧ୍ୟ ଚୁପ୍‌ଚାପ୍ ଶୋଇ ରହିଲେ । କିଛି ସମୟ ପରେ ରୁକ୍ଷଭାବରେ କହିଲେ, "ଆଜି ତୁମ କଥାରେ ମୋତେ ଯେତିକି କଷ୍ଟ ହୋଇଛି, ତୁମେ ଯଦି ଗାଳି ଦେଇଥାନ୍ତ, ତାହାହେଲେ ମୋତେ ଏତେ କଷ୍ଟ ହୋଇ ନ ଥା'ନ୍ତା । ମୋତେ ତ ଆଗକୁ ଏହିଭଳି ଅନେକ କାମରେ ବାହାର ନେବାକୁ ହିଁ ପଡ଼ିବ । ତୁମକୁ ମୁଁ କୁଆଡେ କୁଆଡ଼େ ଧରି ବୁଲିବି ? ଆଚ୍ଛା, ମୁଁ ଗୋଟିଏ ସର୍ତ୍ତରେ ଏଥର ସୋଲାପୁର ଯିବା ବନ୍ଦ କରିଦେବି. ସେ ସର୍ତ୍ତ ହେଉଛି—ପୁଣି କେବେ ହେଲେ ତୁମେ ମୋର କାମରେ ବାଧା ଦେବ ନାହିଁ ବୋଲି ପ୍ରତିଜ୍ଞା କର ଏବଂ ନିଜର ଭୁଲ ପାଇଁ କାନ ମୋଡ଼ିହୁଅ !"

ଭବିଷ୍ୟତରେ ତାଙ୍କ କାମରେ ବାଧା ନ ଦେବାଲାଗି ମୁଁ ସଙ୍ଗେ ସଙ୍ଗେ କାନ ଧରି ପ୍ରତିଜ୍ଞା କଲି । ସେହି ଦିନରୁ ତାଙ୍କର ଅନ୍ତିମ ସମୟ ଯାଏ ଭଗବାନଙ୍କ କୃପାରୁ ମୋ' ପ୍ରତିଜ୍ଞାରେ ମୁଁ ଦୃଢ଼ ରହିପାରିଛି ।

ଆମେ ଲଡ଼ର୍ ରୋଡ଼ରେ ଥିବାବେଳେ ମା'ଜୀ, ବଡ଼ ନଣନ୍ଦ, ସାନ ନଣନ୍ଦ, ତାଙ୍କର ଶ୍ରେଷ୍ଠ ଶ୍ରେଷ୍ଠ ପିଲାଙ୍କ ବ୍ୟତୀତ ଗାଁର ଜଣେ ଦୁଇଜଣ ଲୋକ, ସବୁବେଳେ ଆସି ରହୁଥିଲେ । ଏଣୁ ଆଠ ନ' ଜଣଙ୍କର ଗୋଟିଏ ବଡ଼ ପରିବାର ଥିଲା । ମୁଁ ସକାଳ ପାଞ୍ଚଟାରେ ଉଠେ ଓ ରାତି ବାରଟାରେ ଶୋଇବାକୁ ଯାଏ । ସକାଳୁ ଉଠି ଘରଯାକ ଝାଡୁଦେଇ ରୋଷେଇଘର ଧୂଆ-ଧୋଇ କରେ । ତା'ପରେ ରୋଷେଇ କରିସାରି ଲୁଗାପଟା ସଫା କରେ । ସେହି ଲୁଗାପଟା ସହିତ ପିଲାମାନଙ୍କ ଝାଡ଼ା ମୂତର ଲୁଗାପଟା ମଧ୍ୟ ଥାଏ । ସେଥିରୁ ମୁକ୍ତପାଇ ଗାଧୁଆପାଧୁଆ କରି ଖାଇବସେ । ଖାଇସାରିବା ପରେ ରୋଷେଇ ଘର ସଫାସଫି କରି ପୁଣି ରୋଷେଇର ଆୟୋଜନ କରେ । ରାତିରେ ଖାଇ-ସାରିବା ପରେ କିଛି ସମୟ ରାମାୟଣ ପାଠକରି ମା'ଜୀଙ୍କୁ ଶୁଣାଏ । ତା'ପରେ ତାଙ୍କର

( ମା'ଜୀଙ୍କର ) ତଥା ନଣନ୍ଦଙ୍କର ଗୋଡ଼ ଘଷିଦିଏ । ଏହି ପ୍ରକାର ସବୁ କାମ ସାରି ପ୍ରାୟ ରାତି ବାରଟାବେଳକୁ ଶୋଇବାକୁ ଯାଏ । ସଙ୍କୋଚବଶତଃ ଶାସ୍ତ୍ରୀଜୀ, ମା'ଜୀ କିମ୍ବା ନଣନ୍ଦଙ୍କୁ କିଛି କହିପାରନ୍ତି ନାହିଁ କିମ୍ବା ମୋର ପରିଶ୍ରମ ଦେଖି ସହିପାରନ୍ତି ନାହିଁ । ଏଣୁ ରୋଷେଇ ସାରି ମୁଁ ଯେତେବେଳେ ଲୁଗା ଧୋଇବାପାଇଁ ଗାଧୁଆ ଘରକୁ ଯାଏ, ସେ ସେତେବେଳେ ଗାଧୋଇବାପାଇଁ ହଠାତ୍ ଆସି ଲୁଗାଗୁଡ଼ିକ କାଢ଼ିଦିଅନ୍ତି । ପରେ ସେ ଗାଧୋଇ ସାରି ଚାଲିଯିବା ପରେ ମୁଁ ଲୁଗାଗୁଡ଼ିକ ଧୁଆଧୋଇ କରି ବାହାରେ ଶୁଖାଇବା ଲାଗି ଜମା କରିଦିଏ । ସେଥିଲାଗି ଆଉ କାହାରି ମନରେ ଏ ବିଷୟରେ ସନ୍ଦେହ ଜାତ ହୁଏ ନାହିଁ ।

କୌଣସି କୌଣସି ଦିନ ମୋର ଅଧିକ ପରିଶ୍ରମ ଦେଖି ସକାଳୁ ଉଠିବାବେଳେ ଆଉ ଟିକେ ଶୋଇ ପଡ଼ିବା ଲାଗି ଶାସ୍ତ୍ରୀଜୀ କହନ୍ତି । ମୁଁ ଶୋଇଯାଏ ସତ; କିନ୍ତୁ ଡେରିରେ ଉଠିଥିବା ହେତୁ ମା'ଜୀ ଯେତେବେଳେ ବିରକ୍ତ ହୁଅନ୍ତି, ସେତେବେଳେ ଶାସ୍ତ୍ରୀଜୀ ଅସଲ କଥା ନ କହି, "ମୁଁ ଗୋଟିଏ ଜରୁରି କାମରେ ଅଟକାଇଥିଲି, ସେଥିପାଇଁ ତା'ର ଡେରି ହୋଇଗଲା" ବୋଲି କହିଦିଅନ୍ତି । ମା'ଜୀ ସେ ସମୟରେ କିଛି ନ କହି ଶାସ୍ତ୍ରୀଜୀଙ୍କ ଚାଲିଯିବା ପରେ, ସେ ଯେତେବେଳେ କାରଣ ପଚାରି ବସନ୍ତି, ମୁଁ କିଛି ଉତ୍ତର ଦେଇପାରେ ନାହିଁ; କାରଣ, ମୋର ମିଛ କହିବାର ଅଭ୍ୟାସ ନ ଥିଲା । ତେଣୁ ବହୁତ ଭାବିବା ପରେ ମଧ୍ୟ ଶୀଘ୍ର ଉତ୍ତର ଦେଇପାରେ ନାହିଁ । ଫଳରେ ମୋତେ ସବୁ କଥା ଶାସ୍ତ୍ରୀଜୀଙ୍କୁ କହିବାକୁ ପଡ଼ିଲା ଏବଂ ପରେ ତାଙ୍କର ବାରମ୍ବାର କହିବା ସତ୍ତ୍ୱେ ଓ ମୋତେ ତାଙ୍କ ଆଦେଶ ଉଲ୍ଲଙ୍ଘନ କରିବାକୁ ପଡୁଥିଲା ।

**ଫାଲସା କୁଆଡ଼େ ଗଲା—**

ଫଳ ମଧ୍ୟରେ ଶାସ୍ତ୍ରୀଜୀ ଆମ୍ବ ଓ ଫାଲସା ବହୁତ ପସନ୍ଦ କରୁଥିଲେ । ଫାଲସା ମଉସମରେ ସେ ପ୍ରତିଦିନ ପଇସେ ଦି'ପଇସାର ଫାଲସା ଆଣୁଥିଲେ । କେତେଗୁଡ଼ିଏ ସେମିତି ଖାଇ ଦେଉଥିଲେ । ଆଉ କେତେକ ଚିପୁଡ଼ି ରସ ପିଉଥିଲେ । ଦିନେ ଫାଲସା ଥିବା ଠୁଙ୍ଗାଟି ବିଛଣା ପାଖରେ ଥୋଇଦେଇ ମୁଁ ଶୋଇପଡ଼ିଲି । ଶାସ୍ତ୍ରୀଜୀ ଅନ୍ୟ କୋଠରୀରେ ଶୋଇଥିଲେ । ଉଠିବା ପରେ ଯେତେବେଳେ ମୋ' ଦୃଷ୍ଟି ଫାଲସା ଆଡ଼କୁ ଗଲା; ମୁଁ ଦେଖିଲି ଯେ, ସେଥିରେ ଦୁଇ ଚାରିଟି ଫଳ ବ୍ୟତୀତ ଆଉ କିଛି ନାହିଁ । ମୁଁ ଅବାକ୍ ହୋଇ ରହିଗଲି । ସେମିତି ଅବାକ୍ ହୋଇ ରହିଯିବାର କାରଣ ହେଉଛି, ଶାସ୍ତ୍ରୀଜୀ ଓ ମୋ ବ୍ୟତୀତ ତୃତୀୟ ବ୍ୟକ୍ତି ଆଉ କେହି ଘରେ ନ ଥିଲେ । ସେ ଅବସ୍ଥାରେ ଫାଲସା ଗଲା କୁଆଡ଼େ ? କାଳେ ଶାସ୍ତ୍ରୀଜୀ ଆଉ କିଛି ଭାବିବେ ! ମୋତେ ଏ ଚିନ୍ତା ଏପରି

ଘାରିଗଲି ଯେ, ମୋ' ଆଖିରୁ ଲୁହ ବହିବାକୁ ଲାଗିଲା । ମୁଁ କାନ୍ଦି କାନ୍ଦି ଶାସ୍ତ୍ରୀଜୀଙ୍କ କୋଠରୀକୁ ଯାଇ ବାରମ୍ବାର କହିଲି, "ନିଶ୍ଚୟ କରି କହୁଛି, ମୁଁ ଫଳସା ଖାଇନାହିଁ ।" ପ୍ରଥମେ ତ ଶାସ୍ତ୍ରୀଜୀ କିଛି ବୁଝିପାରିଲେ ନାହିଁ; ପରେ ଯେତେବେଳେ ସବୁକଥା ବୁଝିଲେ, ସେତେବେଳେ ହସି ହସି କହିଲେ, "ଆଚ୍ଛା, କାଲେ ମୁଁ ତୁମକୁ ସ୍ୱୈରଣୀ ବୋଲି ଭାବିବି, ତୁମେ ସେଥିପାଇଁ କାନ୍ଦୁଛ ! ଆରେ ବାଃ ବାଃ ଫଳସା ମୁଁ ତୁମରି ପାଇଁ ଆଣିଥିଲି । ଗାଁକୁ ଯିବାବେଳେ ମା'ଜୀ କହିଯାଇଥିଲେ ଯେ, ଏ ସମୟରେ ତୁମପକ୍ଷେ ଫଳସା ସରବତ ପିଇବା ଲାଭଜନକ ହେବ । ତୁମେ ଖାଇ ଦେଇଥିଲେ ବି ତୁମକୁ ସ୍ୱୈରଣୀ ବୋଲି ଭାବି ନ ଥାନ୍ତି । ଛୋଟ ଛୋଟ କଥାରେ ତୁମେ କାହିଁକି ଏ ପ୍ରକାର କାନ୍ଦୁଛ ।"

———

# ଛଅ

ମୁଁ ସତ୍ୟାଗ୍ରହରେ ଯୋଗଦିଏ, ଏ କଥା ଶାସ୍ତ୍ରୀଜୀ ଚାହୁଁଥିଲେ; ମାତ୍ର ମା'ଙ୍କ ଲାଗି ଏହା ସମ୍ଭବ ହେଉ ନ ଥିଲା । ମା'ଜୀ ଏ ସବୁ ପସନ୍ଦ କରୁ ନ ଥିଲେ । ସେ ସମୟରେ ଗାନ୍ଧିଜୀ ବିଦେଶୀ-ଲୁଗା-ବହିଷ୍କାର-ଆନ୍ଦୋଳନ ଚଳାଇ ଥାନ୍ତି; ସହରର ସ୍ଥାନେ ସ୍ଥାନେ ଲୁଗାଦୋକାନ ଆଗରେ ପିକେଟିଂ ଚାଲିଥିଲା । ଦିନେ କମଲାଜୀ ( ଶ୍ରୀମତୀ କମଲା ନେହେରୁ ) ଶାସ୍ତ୍ରୀଜୀଙ୍କୁ ପଚାରିଲେ, "ଆପଣ ନିଜ ଶ୍ରୀମତୀଙ୍କୁ ବାହାର କରୁନାହାନ୍ତି କାହିଁକି ?"

"ଆପଣ ତାଙ୍କୁ ଯେବେ ବାହାର କରିବେ, ସେ ବାହାରି ପାରିବେ । ମୋ' ଦ୍ୱାରା ତାହା ସମ୍ଭବ ନୁହେଁ ।" ଶାସ୍ତ୍ରୀଜୀ ଜାଣିଶୁଣି ଏପରି ଉତ୍ତର ଦେଇଥିଲେ; କାରଣ, ସେ ଜାଣିଥିଲେ, କମଲାଜୀ ଆସିଲେ ମା'ଜୀ ମୋତେ ବାହାରକୁ ଛାଡ଼ିବାରେ ଆପତ୍ତି କରିବେ ନାହିଁ ଏବଂ ତାହା ହିଁ ହେଲା । ଦିନେ ଘୋଡ଼ା ଗାଡ଼ିରେ କମଲାଜୀ ଆସି ପହଞ୍ଚିଲେ । ସେ ଧିଲେ ଅତ୍ୟନ୍ତ ସିଧାସିଧା ଓ ସରଳ ସ୍ୱଭାବର ସ୍ତ୍ରୀ ଲୋକ; ମୋ ସହିତ କଥାବାର୍ତ୍ତା ସାରି ମୋତେ ପିକେଟିଂକୁ ପଠାଇବାଲାଗି ମା'ଜୀଙ୍କୁ କହିଲେ । ମା'ଜୀ ତାଙ୍କ କଥାରେ ନାହିଁ କରିପାରିଲେ ନାହିଁ । ପରଦିନ ମୁଁ ପ୍ରସ୍ତୁତ ହୋଇଗଲି । ଆମକୁ ସେଠାରେ କ'ଣ କରିବାକୁ ପଡ଼ିବ, ମୁଁ ଯିବା ପୂର୍ବରୁ ଶାସ୍ତ୍ରୀଜୀଙ୍କୁ ପଚାରିଲି । ଶାସ୍ତ୍ରୀଜୀ ମୋତେ ବୁଝାଇ କହିଲେ—ଆମକୁ ପହଞ୍ଚି ଗୋଟିଏ ଦୋକାନ ଆଗରେ ଛିଡ଼ାହୋଇ ଲୁଗା କିଣିବାକୁ ଆସୁଥିବା ଭାଇଭଉଣୀମାନଙ୍କୁ ବିଦେଶୀ ଲୁଗା ନ କିଣିବା ଲାଗି ନମ୍ରଭାବରେ ନିବେଦନ କରିବାକୁ ହେବ । ଆମେ ଯାହାକୁ ଯାହା କିଛି କହିବୁ, ଖୁବ୍ ନମ୍ରଭାବେ କହିବା ଉଚିତ ବୋଲି ସେ ବାରମ୍ବାର କହିଲେ ଏବଂ ବାଟରେ ଯାଉଁ ଯାଉଁ ସେହି କଥା କହୁଥିଲେ । ଆମ କଥାରେ କୌଣସି ଭାଇଭଉଣୀଙ୍କ ମନରେ ଯେପରି ଦୁଃଖ ନ ଆସେ, ସେ ବିଷୟରେ ବିଶେଷ ଭାବରେ ବୁଝାଇଥିଲେ ।

ଗୌତମଙ୍କ ସ୍ତ୍ରୀ ଓ ମୁଁ ଦୁହେଁଯାକ ଗୋଟିଏ ଦୋକାନ ସାମନାରେ ଯାଇ ଠିଆହେଲୁ ଏବଂ ଯେଉଁମାନେ ଲୁଗା କିଣିବାକୁ ଆସିଲେ, ସେମାନଙ୍କୁ ମନାକଲୁ; ମାତ୍ର

ସଙ୍କୋଚବଶତଃ କେବଳ ସ୍ତ୍ରୀଲୋକମାନଙ୍କୁ ହିଁ ନିଜ କଥା କହିପାରୁଥିଲୁ । ପୁରୁଷମାନଙ୍କୁ କହିବା ଲାଗି ଲଜ୍ଜା ଲାଗୁଥିଲା । ଆମକୁ ୧୧ଟାଠାରୁ ୨ଟା ପର୍ଯ୍ୟନ୍ତ ଡ଼ିଉଟି ଦିଆଯାଇଥିଲା । ପ୍ରାୟ ବାରଟା ସାଢ଼େ ବାରଟାବେଳକୁ ପାଖରେ ଥିବା ଗୋଟିଏ ଦୋକାନୀ ଓ ପିକେଟିଂ କରୁଥିବା ଲୋକଙ୍କ ମଧ୍ୟରେ ବଚସା ଆରମ୍ଭ ହେଲା । କଥା ବଢ଼ିବା ସଙ୍ଗେ ସଙ୍ଗେ ବହୁତ ଲୋକ ଜମା ହୋଇଗଲେ । ଏହା ମଧ୍ୟରେ କେହି ଜଣେ ଦୋକାନରେ ନିଆଁ ଲଗାଇଦେଲା । ଦୋକାନଟି ଜଳିବାକୁ ଲାଗିଲା, ପୋଲିସ ଆସିଗଲେ, ଧାଁ ଦଉଡ଼ ଲାଗିଲା । ଗୌତମଜୀଙ୍କ ସ୍ତ୍ରୀ ଡରିଯାଇ କହିଲେ "ଚାଲ ଆମେ ବି ପଳାଇବା, ଏଠାରେ ଛିଡ଼ାହୋଇ ଆମେ କ'ଣ ଆମର ଇଜ୍ଜତ ନଷ୍ଟ କରିବା ?"

ମୋତେ ବି ଡର ଲାଗୁଥିଲା । ମୁଁ ଭାବୁଥିଲି ଠିକ୍ ସମୟର ପୂର୍ବରୁ ଚାଲିଗଲେ କାଳେ ଶାସ୍ତ୍ରୀଜୀ ବିରକ୍ତ ହେବେ ! ମୁଁ ତାଙ୍କୁ କହିଲି "ଆମର ଦୁଇଟା ପର୍ଯ୍ୟନ୍ତ ଏଠାରେ ରହିବା ଦରକାର । ପୂର୍ବରୁ ଚାଲିଗଲେ ଗୌତମଜୀ ଓ ଶାସ୍ତ୍ରୀଜୀ ବିରକ୍ତ ହୋଇ ପାରନ୍ତି; କିନ୍ତୁ ସେ କୌଣସି ମତେ ରହିବାକୁ ପ୍ରସ୍ତୁତ ହେଲେ ନାହିଁ । ଶେଷରେ ବାଧ୍ୟ ହୋଇ ମୋତେ ତାଙ୍କ ସହିତ ଫେରିବାକୁ ପଡ଼ିଲା । ଶାସ୍ତ୍ରୀଜୀ ଓ ଗୌତମଜୀ ଘରେ ନ ଥିଲେ । ଘରକୁ ଫେରିବା ପରେ ରାତିରେ ଯେତେବେଳେ ସେମାନେ ସବୁ କଥା ଶୁଣିଲେ, ସେତେବେଳେ ଗୌତମଜୀ ନିଜ ସ୍ତ୍ରୀଙ୍କୁ ଚିଡ଼ାଇ କହିଲେ, "ତୁମେ ବଡ଼ ଡରୁଆଣୀ । ଏହି ସାହସ ନେଇ ତୁମେ ଦେଶକୁ ସ୍ୱାଧୀନ କରାଇବ ! ବୋହୂ ସାହସ ଧରି ରହିବାକୁ କହୁଥିବାବେଳେ ତୁମେ ଡରିଗଲ ! ନିନ୍ଦାର କଥା !" ଗୌତମଜୀଙ୍କଠାରୁ ଶାସ୍ତ୍ରୀଜୀ ବର୍ଷେ ଦେଢ଼ ବର୍ଷ ସାନ ହେବେ; ତେଣୁ ସେ ମୋତେ ବୋହୂ ବୋଲି ସମ୍ବୋଧନ କରୁଥିଲେ ।

ତୃତୀୟ ଦିନ ବେଳକୁ ଆମର ସାହସ ବଢ଼ିଗଲା ଏବଂ ଆମେ ଯେ କୌଣସି ମୁହୂର୍ତ୍ତରେ ପୁରୁଷମାନଙ୍କୁ ମଧ୍ୟ ଲୁଗା ନ କିଣିବା ଲାଗି ଅନୁରୋଧ କରିଥିଲୁ । ପ୍ରାୟ ଦୁଇଟାବେଳେ, ଯେତେବେଳେ ଶାସ୍ତ୍ରୀଜୀ ଓ ଗୌତମଜୀ ଆସିଲେ, ଆମେ ଫେରିଆସୁ । ଚତୁର୍ଥ ଦିନ ପୁଣି ଠିକ୍ ସମୟରେ ଆସିବାକୁ ପଡ଼ିଲା । ଯେଉଁ ଦୋକାନ ସାମନାରେ ଆମେ ପିକେଟିଂ କରୁଥିଲୁ, ସେହି ଦୋକାନକୁ ଜଣେ ରାଇ ସାହେବ ନିଜ ସ୍ତ୍ରୀ ବା ଭଉଣୀଙ୍କ ସହିତ ବିଭାଘର ଲାଗି ଲୁଗା କିଣିବାକୁ ଆସି ପ୍ରାୟ ପାଞ୍ଚ ସାତ ଶହ ଟଙ୍କାର ଲୁଗା କିଣିଲେ । ଆମେ ଭିତରକୁ ଯାଇ ତାଙ୍କୁ ବିଦେଶୀ ଜିନିଷ କିଣିବାକୁ ମନାକରନ୍ତେ, ଦୋକାନୀ ଆମ ଉପରେ ଚିଡ଼ି ଯାଇ କହିଲା, "ବିଦେଶୀ ଲୁଗା କିଣିବାକୁ ଆପଣମାନେ ମନା କରୁଛନ୍ତି; କିନ୍ତୁ ନିଜେ ବିଦେଶୀ ଚୁଡ଼ି ହାତରେ ପିନ୍ଧିଛନ୍ତି ।"

ମୁଁ ଟିକିଏ ଅପ୍ରସ୍ତୁତ ହୋଇଗଲି; ତଥାପି ମୋର ଧାରଣା ଥିଲା ଯେ, ମା' ଚୂଡ଼ି ବିଦେଶୀ ହୋଇ ନ ଥିବ । ତେଣୁ ମୁଁ ଚୂଡ଼ିକୁ ଦେଖାଇ ବାରମ୍ବାର ପଚାରିଲି, " ଏ ବିଦେଶୀ, ଏ ବିଦେଶୀ ଚୂଡ଼ି ?"

"ହଁ, ନିଶ୍ଚୟ ବିଦେଶୀ !"

ଗୌତମଙ୍କର ସ୍ତ୍ରୀ ଦୋକାନୀକୁ କହିଲେ, "ତୁ ଯେଉଁ ଘଡ଼ି ପିନ୍ଧିଛୁ ସେ ତ ବିଦେଶୀ" ( ପଞ୍ଜାବରେ ତାଙ୍କ ଘର ହୋଇଥିବାରୁ ସେ ଏ ପ୍ରକାର କଥା କହନ୍ତି । ) ଦୋକାନୀ ହସିପକାଇ କହିଲା, "ହଁ, ମୁଁ ତ ସବୁ ବିଦେଶୀ ଜିନିଷ ବିକ୍ରୟ କରୁଛି । ବିଦେଶୀ ଜିନିଷ ପ୍ରତି ଘୃଣା ଆପଣମାନଙ୍କର – ମୋର ନୁହେଁ ।"

ମୋର ମନେହେଲା ଯଦି ଚୂଡ଼ି ବିଦେଶୀ ହୋଇଥିବ, ତା'ହେଲେ ତାକୁ ଭାଙ୍ଗି ଦେବାକୁ ପଡ଼ିବ । ମା'ଙ୍କ ପଚାରିଲେ କ'ଣ ଜବାବ୍ ଦେବି ! ତେଣୁ ଶାଳ ଭିତରେ ଧୀରେ ଧୀରେ ସବୁ ଚୂଡ଼ି ବାହାର କରି କାଗଜରେ ବାନ୍ଧିଦେଲି । ତା'ପରେ ମୁଁ ଦୋକାନୀକୁ ପଚାରିଲି "ଆଚ୍ଛା, ଆପଣ ଯଦି ଏହାକୁ ବିଦେଶୀ ଚୂଡ଼ି କହୁଛନ୍ତି, ମୁଁ ଏହାକୁ ଭାଙ୍ଗିଦେଲେ ଆପଣ ନିଜ ଘଡ଼ିଟି ଭାଙ୍ଗି ଦେବେ ତ ?"

ହଠାତ୍ କେମିତି କେଜାଣି ଦୋକାନୀ କହିଦେଲା, "ହଁ, ମୁଁ ଭାଙ୍ଗିଦେବି; କିନ୍ତୁ ଆପଣଙ୍କୁ ପ୍ରଥମେ ନିଜ ଚୂଡ଼ି ଭାଙ୍ଗିବାକୁ ପଡ଼ିବ ।" ଦୋକାନୀର କଥା ଶେଷ ହେବା ମାତ୍ରେ ଶାସ୍ତ୍ରୀଜୀ ଓ ଗୌତମ ସେଠାରେ ଆସି ପହଞ୍ଚିଲେ । ମୁଁ ତାଙ୍କୁ ଦେଖିବାମାତ୍ରେ ପଚାରିଲି, "ଏ କହୁଛନ୍ତି ଜୀ, ଏ ଚୂଡ଼ି ବିଦେଶୀ ।"

ଶାସ୍ତ୍ରୀଜୀ ଧୀରେ କହିଲେ, "ଯେତେବେଳେ ସେ କହୁଛନ୍ତି, ତାହା ବିଦେଶୀ ହୋଇପାରେ !" ସେ ଏହା କହିବା ସଙ୍ଗେ ସଙ୍ଗେ ସାମନାରେ ପଡ଼ିଥିବା ଲୁହା ଗଜ ଆଡ଼କୁ ସଙ୍କେତ କରି ଚୂଡ଼ିଗୁଡ଼ିକୁ ଭାଙ୍ଗି ଦେବାର ଇଙ୍ଗିତ ଦେଲେ । ମୁଁ ଲୁଗା କାଗଜରୁ ଦୁଇଟି ସୂତା ଡ଼ୋରି ବାହାର କରି ହାତରେ ବାନ୍ଧି ଚୂଡ଼ିଗୁଡ଼ିକୁ ସଙ୍ଗେ ସଙ୍ଗେ ଲୁହା ଗଜରେ ପିଟି ଭାଙ୍ଗିଦେଲି । ମୁଁ ଭାଙ୍ଗିବା ସଙ୍ଗେ ସଙ୍ଗେ ଗୌତମଙ୍କ ସ୍ତ୍ରୀ ଦୋକାନୀକୁ ନିଜ ଘଡ଼ି ଭାଙ୍ଗି ଦେବାକୁ କହିଲେ; ମାତ୍ର ଦୋକାନୀ ତାଙ୍କ ଘଡ଼ି ଭାଙ୍ଗିବାକୁ ପ୍ରସ୍ତୁତ ହେଲା ନାହିଁ । ଯେଉଁ ଭଦ୍ରମହିଳା ସେଠାରେ ଲୁଗା କିଣିବାକୁ ଆସିଥିଲେ, ସେ ମଧ୍ୟ ଦୋକାନୀ ଉପରେ ବିରକ୍ତ ହୋଇ କହିଲେ, "ବାଃ ଆପଣ ତ ବଡ଼ ଧୂର୍ତ୍ତ ! ସେ ଝିଅର ଚୂଡ଼ି ଭଙ୍ଗେଇଲେ, ଏବେ ନିଜ ଘଡ଼ି ଭାଙ୍ଗିବାକୁ ମନାକରି ଦେଉଛନ୍ତି । ଏ ତ ଭଲ କଥା ନୁହେଁ ।"

ହଠାତ୍ କଥା ବଢ଼ିଗଲା । ଶେଷରେ ଅବସ୍ଥା ଏପରି ହେଲା ଯେ, ସେ ଭଦ୍ରଲୋକ ଯେଉଁ ଲୁଗାତକ କିଣିଥିଲେ, ସେଗୁଡ଼ିକରେ ନିଆଁ ଲଗାଇ ଦେଲେ ଓ ତତ୍ ସଙ୍ଗେ ସଙ୍ଗେ ଦୋକାନରେ ମଧ୍ୟ ନିଆଁ ଲଗାଇ ଦେଲେ ।

ଶାସ୍ତ୍ରୀଜୀ ଓ ଗୌତମଜୀ କେତେବେଳୁ ଆମ ପାଖରୁ ଗୁଳି ଯାଇଥିଲେ; ତାହା ମୋତେ ଜଣା ନ ଥିଲା ।

ଘରେ ପହଞ୍ଚିବା ପରେ ମୋ' ହାତ ଉପରେ ମା'ଜୀଙ୍କର ଦୃଷ୍ଟି ପଡ଼ିବା ମାତ୍ରେ ସେ ବିରକ୍ତ ହୋଇ ଚୂଡ଼ି ଭାଙ୍ଗିବାର କାରଣ ପଚାରିଲେ । ସତକଥା କହିଲେ ସେ ଖୁବ୍ ବିଗିଡ଼ିଯାଆନ୍ତେ, ତେଣୁ ମୁଁ ତାଙ୍କୁ ଅନ୍ୟ କାରଣ କହି ଅବସ୍ଥା ସମ୍ଭାଳି ନେଲି ।

---

# ସାତ

**ଶାସ୍ତ୍ରୀଜୀଙ୍କ ପଡ଼ୋଶିନୀ—**

ଛ'ସାତ ମାସ ପରେ ଶାସ୍ତ୍ରୀଜୀ ଜେଲରୁ ଖଲାସ ହୋଇ ଆସିଲେ । କିଛିଦିନ ରାମନଗରରେ ରହିବା ପରେ ଏଲାହାବାଦର ବାହାଦୁରଗଞ୍ଜ ମହଲାରେ ଘର ଭଡ଼ା ନିଆଗଲା ଏବଂ ଆମେ ସେଠାକୁ ଚାଲିଆସିଲୁ ।

ରାମନଗରରେ ଦିନେ ଦି'ପହରରେ ଗୋଟିଏ ତଉଲିଆ ମୁଣ୍ଡରେ ପକାଇ ଶାସ୍ତ୍ରୀଜୀ ଗାଧୋଇବାକୁ ଯାଉଥିଲେ । ସେଇଠି ପାଖରେ କୁସୁମ ଗୋଟିଏ ଖଟିଆ ଉପରେ ଶୋଇ ହାତ ଗୋଡ଼ ହଲାଉଥିଲା । ଶାସ୍ତ୍ରୀଜୀ ସେ ଖଟିଆ ଉପରେ ବସିପଡ଼ି କୁସୁମକୁ ଖେଳାଇବାକୁ ଲାଗିଲେ । ମା'ଜୀ କୌଣସି କାମରେ ପଡ଼ୋଶୀ ଘରକୁ ଯାଇଥିଲେ । ତେଣୁ ଶାସ୍ତ୍ରୀଜୀଙ୍କୁ ଏଭଳି ଅବସର ମିଳିଥିଲା । ଅନ୍ୟଥା ତାଙ୍କ ସାମନାରେ ନିଜ ଝିଅକୁ ଖେଳାଇବା ତ ଦୂରର କଥା, ତା' ଆଡ଼କୁ ମଧ୍ୟ ଚାହୁଁ ନ ଥିଲେ । ସୌଭାଗ୍ୟର ବିଷୟ ମା'ଜୀ ସେତିକିବେଳେ ଆସିଗଲେ । ମା'ଜୀଙ୍କୁ ଦେଖି ଶାସ୍ତ୍ରୀଜୀ ବଡ଼ ଅଡୁଆରେ ପଡ଼ିଗଲେ; ସେ ଟିକିଏ ଲଜେଇ ଲାଜେଇ ହୋଇ ସଫେଇ ଦେଇ କହିଲେ—"ମା' କ'ଣ କହିବି, ଛୋଟ ଛୋଟ ପିଲାଙ୍କୁ ଦେଖି ଖେଳାଇବାକୁ ମନ ହେଉଛି ।"

"ତା' ହେଲେ ଖେଳାଉ ନାହଁ କାହିଁକି ବରଂ ! ପିଲାମାନଙ୍କୁ ଖେଳାଇବା ଉଚିତ !" ତାଙ୍କ କହିବା ପରଠାରୁ ଶାସ୍ତ୍ରୀଜୀ ମା'ଜୀଙ୍କ ସାମନାରେ କୁସୁମକୁ କୋଳରେ କାଖରେ ନେଇ ଖେଳାଉଥିଲେ ।

ମୋ ବିବାହରେ ଉପହାର ସ୍ୱରୂପ ମାତ୍ର ପାଞ୍ଚହଳ ଗହଣା ମିଳିଥିଲା; କିନ୍ତୁ ଯେତେବେଳେ ମୁଁ ରାମନଗର ଆସିଲି, ସେତେବେଳେ ମୁହଁଚାହାଁରେ ଏତେ ଗହଣା ମିଳିଲା ଯେ, ଥାଳି ପୂରିଗଲା । ସବୁ ଭାଇ ବନ୍ଧୁ, ଏପରି କି ପାଖ ପଡ଼ୋଶୀ ମଧ୍ୟ କିଛି ନା କିଛି ଦେଇଥିଲେ । ଗହଣାଗୁଡ଼ିକ ମଧ୍ୟରେ ହଁସୁଳି, ଅଣ୍ଟାସୂତା, ଚୁଡ଼ି, କାନଫୁଲ ଆଦି

ମିଳିଥିଲା । ଅନ୍ଦାଜରେ ପ୍ରାୟ ହଜାରେ ଦେଢ଼ ହଜାର ଟଙ୍କା ମୂଲ୍ୟର ଗହଣା ମିଳିଥିଲା । ସ୍ତ୍ରୀମାନଙ୍କର, ବିଶେଷ କରି ଆମ ଅମଳର ସ୍ତ୍ରୀମାନଙ୍କର ଗହଣାପତ୍ର ବିଷୟରେ ଯେଉଁ ଲାଳସା ଥାଏ, ତାହା ମୋର ପୂର୍ଣ୍ଣ ହୋଇଥିଲା । ମୁଁ ସେଥିଲାଗି ଖୁବ୍ ଖୁସି ହୋଇଥିଲି ।

**ଅସଲ ଗହଣା—**

ଆମେ ଯେତେବେଳେ ବାହାଦୂରଗଞ୍ଜରେ ଥିଲୁ, ସେତେବେଳେ ଶାସ୍ତ୍ରୀଜୀଙ୍କ କକାଙ୍କର କୌଣସି ବ୍ୟବସାୟରେ କ୍ଷତି ହୋଇଥିଲା କିମ୍ବା ତାଙ୍କର କୌଣସି ପ୍ରକାର ବାକିଟଙ୍କା ଶୁଝିବାକୁ ପଡ଼ିଥିଲା । ମୋତେ ସେ ସମ୍ବନ୍ଧରେ ଠିକ୍ ଜଣା ନ ଥିଲା କିମ୍ବା ମୁଁ କେବେହେଲେ ଶାସ୍ତ୍ରୀଜୀଙ୍କୁ ସେ ବିଷୟରେ କିଛି ପଚାରି ନ ଥିଲି । ଦିନେ ଶାସ୍ତ୍ରୀଜୀ ଦୁନିଆଁରେ ନାନାପ୍ରକାର ଅସୁବିଧା ତଥା ତା’ ମଧ୍ୟରେ ମଣିଷର ଅସହାୟ ଅବସ୍ଥା ସମ୍ପର୍କରେ କେତେ କଥା ବୁଝାଇ ମୋତେ ଗହଣାତକ ମାଗିଲେ । ସେ ଗହଣା ମାଗିବାରୁ କିଛି ସମୟପାଇଁ ମୋ ମନ ଅନ୍ୟପ୍ରକାର ହୋଇଗଲା ଏବଂ ଗହଣାତକ ଦେବାଲାଗି ମୁଁ କୁଣ୍ଠାବୋଧ କଲି; କିନ୍ତୁ ପରକ୍ଷଣରେ ଭାବିଲି ତାଙ୍କର (ଶାସ୍ତ୍ରୀଜୀଙ୍କର) ଆନନ୍ଦରେ ହିଁ ମୋର ଆନନ୍ଦ । ଏହା ଭାବି ମୁଁ ତାଙ୍କୁ ଗହଣାତକ ଦେଇଦେଲି । ମୁଁ କେବଳ ସିନ୍ଦୂରୀ, ନଥ ଓ ମୁଦି ମୋ’ ପାଖରେ ରଖିଥିଲି । ସେଗୁଡ଼ିକ ଥିଲା ମୋର ସୌଭାଗ୍ୟର ଚିହ୍ନ । ଶାସ୍ତ୍ରୀଜୀ ଅବଶ୍ୟ ସେ ସମୟରେ କିଛି କହିଲେ ନାହିଁ; ମାତ୍ର ପରଦିନ ସେ ତାଙ୍କର ଅନ୍ତର୍ବେଦନା ରୋକି ନ ପାରି କହିଲେ, “ତୁମେ ଯେବେ ମିର୍ଜାପୁର ଯିବ, ଲୋକମାନେ ଗହଣା ସମ୍ବନ୍ଧରେ ତୁମକୁ ପଚାରିଲେ କ’ଣ କହିବ ?” ମୁଁ ହସି ହସି କହିଲି, “ସେଥିପାଇଁ ଆପଣ ଚିନ୍ତା କରନ୍ତୁ ନାହିଁ, ମୁଁ କ’ଣ ବାହାନା କରିବି, ଭାବି ପାରୁଛି । ମୋତେ କେହି ପଚାରିଲେ ମୁଁ କହିବି, ଗାନ୍ଧିଜୀଙ୍କ କହିବା ଅନୁସାରେ ମୁଁ ଗହଣା ପିନ୍ଧା ଛାଡ଼ିଦେଇଛି । ଏଭଳି ଉତ୍ତରରେ ଆଉ କାହାରି କିଛି କହିବାର ନ ଥିବ ।” ଶାସ୍ତ୍ରୀଜୀ ଏହା ଶୁଣି କିଛିକ୍ଷଣ ନୀରବ ରହି ପୁଣି କହିଲେ, “ମୁଁ ଭଲଭାବରେ ଜାଣିପାରୁଛି, ତୁମକୁ ଏଠାରେ ଖୁବ୍ କଷ୍ଟ ହେଉଛି । ତୁମର ବିବାହ ଖୁବ୍ ଭଲ ଘରେ ତଥା ସୁଖୀ ପରିବାରରେ ହୋଇପାରିଥାନ୍ତା; କିନ୍ତୁ ଏବେ ଆଉ କ’ଣ କରାଯାଇପାରିବ ! ତୁମକୁ ଆନନ୍ଦ ଦେବା ତ ଦୂରର କଥା, ତୁମ ଦେହରୁ ସବୁ ଗହଣାତକ ବି ଓହ୍ଲାଇ ନେଲି ।”

“କିନ୍ତୁ ଯାହା ପ୍ରକୃତ ଗହଣା, ତାହା ତ ମୋ’ ପାଖରେ ଅଛି । ମୋର କେବଳ ତାହାହିଁ ଦରକାର । ଆପଣ ସେ ଗହଣାତକ ଲାଗି ଚିନ୍ତା କରନ୍ତୁ ନାହିଁ ।

ସୁବିଧା ହେଲେ ପୁଣି ଉଆର କରନେବା । ସବୁଦିନେ କ'ଣ ଏଭଳି ଅବସ୍ଥା ରହିଥିବ ? ଦୁଃଖ ସୁଖ ତ ଲାଗି ରହିଛି ।" ଶାସ୍ତ୍ରୀଜୀ ଏହା ଶୁଣି ଆଉ କିଛି ନ କହି ଚୁପ୍‌ଚାପ୍ ସେଇଠାରେ ଏପାଖ ସେପାଖ ହେଲେ; ମୁଁ ଅନ୍ୟ କାମରେ ଲାଗିଗଲି ।

## ଶାସ୍ତ୍ରୀଜୀଙ୍କ ଉପରେ ରାଜ—

ବାହାଦୁରଗଞ୍ଜ ଘରର ତଳ ମହଲାରେ ଆଉ ଗୋଟିଏ ଘର ଥିଲା । ସେଇଠି ଆମର ରୋଷେଇ ହୁଏ । ଗୌତମଜୀ ପାଖ ଘରେ ରହୁଥିଲେ । ଗୌତମଜୀଙ୍କ ସ୍ତ୍ରୀଙ୍କ ସହିତ ମୋର ଖୁବ୍ ଭଲ ପଡୁଥିଲା । ସେହି ସମୟରେ କୌଣସି କାମରେ ମା'ଜୀଙ୍କୁ ରାମନଗର ଯିବାକୁ ପଡ଼ିଲା । ଯିବାବେଳେ ତାଙ୍କର ମୋତେ ଯାହା ବୁଝାଇବାର ଥିଲା, ସବୁ ବୁଝାଇ ଦେବା ସଙ୍ଗେ ସଙ୍ଗେ ଶାସ୍ତ୍ରୀଜୀଙ୍କୁ ମଧ୍ୟ ଘରର ସଉଦାପତ୍ର ଓ ପାନପରିବା ସମ୍ବନ୍ଧରେ ଚେତେଇ ଦେଇଥିଲେ । କାରଣ ଅଟା ଓ ଅନ୍ୟାନ୍ୟ ଦରକାରୀ ଜିନିଷ ପ୍ରାୟ ଶେଷ ହୋଇଆସିଥିଲା । ଶାସ୍ତ୍ରୀଜୀ ଆରମ୍ଭରୁ ଦିନବେଳେ ଦୁଇଖଣ୍ଡି ରୁଟି ଓ କିଛି ଭାତ ତଥା ରାତିରେ କେବଳ ଦୁଇଖଣ୍ଡି ରୁଟି ଖାଉଥିଲେ । ମା'ଜୀଙ୍କ ଯିବାପରେ ମୁଁ ପୋଷେ ହେବ ଅଟା ଦଳିଦିଏ । ସେଥିରେ ତିନି ଖଣ୍ଡି ରୁଟି ହୋଇପାରେ ନାହିଁ । ଦୁଇଖଣ୍ଡି ରୁଟି କରିସାରି ଆଉ ଖଣ୍ଡିଏ ଛୋଟ ରୁଟି ତିଆରି କରେ । ଦୁଇଖଣ୍ଡି ରୁଟି ଓ ଚୁଞ୍ଚିଏ ଭାତ ଶାସ୍ତ୍ରୀଜୀଙ୍କ ଲାଗି ବାଢ଼ିଦେଇ ଘର ଭିତରେ ଦେଇଆସେ ଏବଂ ସେହି ଛୋଟ ରୁଟି ଖଣ୍ଡିକ ଓ ମୁଠାଏ ଭାତ ମୋ' ପାଇଁ ବାଢ଼ିଆଣି ମୁଁ ଖାଇବସେ । ଶାସ୍ତ୍ରୀଜୀଙ୍କ ଖାଇବା ସଙ୍ଗେ ସଙ୍ଗେ ମୁଁ ମଧ୍ୟ ଖାଇଦିଏ । ଏପରି କରିବାର ମୂଳରେ କେତେକ କାରଣ ଥିଲା । ମୁଁ ତାଙ୍କ ଖାଇବା ପରେ ଖାଇଲେ, ସେ ହୁଏତ ଭାବନ୍ତେ ଯେ ତାଙ୍କୁ ଶୀଘ୍ର ବାହାର କରିଦେବାକୁ ମୁଁ ଚାହିଁ ବସିଛି । ଠିକ୍ ତାଙ୍କ ଖାଇବା ଶେଷ ହେବା ସଙ୍ଗେ ସଙ୍ଗେ ମୋର ଖାଇବା କାମ ସାରିବାକୁ ହେଲେ ମୋତେ କମ୍ ଖାଇବାର ଅଭ୍ୟାସ କରିବା ଦରକାର । ଅନ୍ୟଥା ଅସୁବିଧାରେ ପଡ଼ିବାକୁ ହୁଅନ୍ତା । ଥରେ ଦି'ଥର ମୋତେ ଶାସ୍ତ୍ରୀଜୀ ଏପରି ନ କରିବାକୁ କହିଛନ୍ତି—"ଖୁବ୍ ଜଲ୍‌ଦି ଖାଇ ଦେଉଛ ? ରାମନଗରରେ ତ ଶୁଣିଥିଲି; ତୁମେ ଖାଉ ଖାଉ ଶୋଇ ପଡୁଥିଲ । ଏଠାରେ ଏତେ ଶୀଘ୍ର ଖାଉଛ କାହିଁକି ? ଚୋବାଇ ଚୋବାଇ ଖାଇବା ଉଚିତ, ନଇଲେ ପେଟ ଖରାପ ହେବ ।" ମୁଁ ତାଙ୍କ କଥାରେ ହୁଁ-ହାଁ ମାତ୍ର ଟାଳିଦିଏ ।

ପ୍ରାୟ କୋଡ଼ିଏ ଦିନ ପରେ ମା'ଜୀ ରାମନଗରରୁ ଆସିଲେ । ସେ ମୋତେ ଚାହିଁଦେଇ ଅବାକ୍ ହୋଇଗଲେ । ମୁଁ ଖାଇବା ବିନା ଶୁଖି କଣ୍ଟାପରି ହୋଇଯାଇଥିଲି ଏବଂ ମୁଁ ଏତେ ଦୁର୍ବଳ ହୋଇଯାଇଥିଲି ଯେ, ଚାଲିବା ସମୟରେ ଆଖି ଆଗରେ ଅନ୍ଧାର

ଦେଖାଯାଉଥିଲା । ପ୍ରଥମେ ମା'ଙ୍କ ଭାବିଲେ, ମୁଁ ବେମାର ପଡ଼ିଛି; ମାତ୍ର ସେ ଭଣ୍ଡାର ଘର ଦେଖି ମୋତେ ପଚରାପଚରି କଲେ । ମୁଁ ସବୁ କଥା କହିଦେଲି । ସେ ମୋ' ଉପରେ ଯାହା ବିଗିଡ଼ିଲେ ତ ବିଗିଡ଼ିଲେ, ସନ୍ଧ୍ୟାବେଳକୁ ଶାସ୍ତ୍ରୀଜୀ ଆସନ୍ତେ ତାଙ୍କ ଉପରେ ଖୁବ୍ ବିରକ୍ତ ହୋଇ କହିଲେ—"କ'ଣ ପର ଝିଅଟାକୁ ମାରିଦେବା ଲାଗି ଘରକୁ ଆଣିଛ ? ଶୁଖିକରି କଣ୍ଠା ହୋଇଗଲାଣି ! ତାକୁ ଥରେ ବି ପଚାରିଲ ନାହିଁ କି, ତା'ର କ'ଣ ଅସୁବିଧା ହୋଇଛି ? ତୋତେ ଘର ସଉଦା ଆଣିବା ଲାଗି ବାରମ୍ବାର କହି ଯାଇଥିଲି, କିଛି ଆଣିଛ ?"

ଶାସ୍ତ୍ରୀଜୀ ଲୁଗା ବଦଳାଇବାବେଳେ ଏଣେ ତେଣେ ମୋ' ଆଡ଼କୁ ଚାହୁଁ ଥିଲେ । ଶେଷରେ କହିଲେ—"କିନ୍ତୁ, ମା' ! ମୋତେ କେହି କିଛି କହିଥିଲେ ତ ଆଣିଥା'ନ୍ତି ।" ତା'ପରେ ମା'ଙ୍କ ମୋର ସମସ୍ତ ହାଲ୍ ଶାସ୍ତ୍ରୀଜୀଙ୍କୁ ଶୁଣାଇଦେଲେ । ପରେ ଶାସ୍ତ୍ରୀଜୀ ମୋ ପାଖରେ ଖୁବ୍ ଦୁଃଖ ପ୍ରକାଶ କଲେ ।

ଥରେ ଶାସ୍ତ୍ରୀଜୀ ଜାମୁକୋଳି ନେଇ ଆସିଲେ । ବଡ଼ ବଡ଼ କଳା ମଚମଚ ଜାମୁକୋଳି ଦେଖି ଖାଇବାକୁ ଖୁବ୍ ମନହେଲା । ଭାବିଲି, ଗଣି ତ ନ ଥିବେ, ତେଣୁ ଚୁପ୍ କରି ଚାରି ଛ'ଟି ଜାମୁକୋଳି ଖାଇଦେଲି । କେତେ ସମୟ ପରେ ଖଟିଆ ଉପରେ ପଡ଼ିଥିବା ଦର୍ପଣଟି ଉଠାଇ ମୁହଁ ଦେଖେ ତ' ଦାନ୍ତ ସବୁ କଳା କଳା ହୋଇଯାଇଛି । ମୁଁ ଶୀଘ୍ର ଗାଧୁଆ ଘରକୁ ଧାଇଁ ଯାଇ ଖୁବ୍ ରଗଡ଼ି ଦାନ୍ତ ଘଷିଲି । ନଇଲେ ମୋ' ଚୋରି ଧରା ପଡ଼ିଯିବାର ସମ୍ଭାବନା ଥିଲା ।

ଏହିପରି ଥରେ ପ୍ରଦର୍ଶନୀ ଦେଖିଯିବା ପାଇଁ ମନହେଲା । ପାଖ ପଡ଼ଶାର ଝିଅ ବୋହୂମାନେ ଦେଖି ଆସିଲେଣି । ମୁଁ ଶାସ୍ତ୍ରୀଜୀଙ୍କୁ ଯିବାପାଇଁ କହିଲି । ପ୍ରଥମେ ସେ ଏଣୁ ତେଣୁ କହି ଟାଳିଲେ; ମୁଁ ବାରମ୍ବାର କହିବାରୁ ଦିନେ ସନ୍ଧ୍ୟାବେଳକୁ ଆସି ଯିବାକୁ ରାଜି ହେଲେ । ସେଦିନ ମୁଁ ମୋର ଅନ୍ୟ ଶାଢ଼ୀଟିକୁ ଭଲ ଭାବରେ ସାବୁନ ଦେଇ ସଫାକଲି । ସନ୍ଧ୍ୟାବେଳକୁ ଶୀଘ୍ର ଶୀଘ୍ର ଗେହ୍ୱେଇ ସାରି ମୁହଁ ହାତ ଧୋଇ ତିଆରି ହୋଇଗଲି । ସ୍ୱାଧୀନତା ମିଳିବା ପୂର୍ବରୁ ମୋ' ପାଖରେ କେବେ ଦୁଇଖଣ୍ଡ, କେବେ ତିନିଖଣ୍ଡରୁ ଅଧିକ ଶାଢ଼ୀ ରହୁ ନ ଥିଲା । ଶାସ୍ତ୍ରୀଜୀ ସନ୍ଧ୍ୟାବେଳକୁ ନ ଆସି କୌଣସି କାର୍ଯ୍ୟବ୍ୟସ୍ତତା ଯୋଗୁଁ ରାତିରେ ଯାଇ ଆସିଲେ । ପୁଣି ପରଦିନ ଯିବାକଥା ଠିକ୍ ହେଲା; କିନ୍ତୁ ସେ ଦିନ ମଧ୍ୟ ସେଇଆ ହେଲା । ତୃତୀୟ ଦିନ ପୁଣି ପ୍ରସ୍ତୁତ ହେଲି । ସେଦିନ ମୋ' ସାନ ନଣନ୍ଦ ଓ ପାଇ ପଡ଼ଶାର ଝିଅମାନେ ମୋତେ ଥଟ୍ଟାକରି କହିଲେ, "ଆଜି ଭାଉଜ ଜରୁର ଯିବେ । ଆଜି ଠିକ୍ ଜବାବ କରେଇ ନେଇଛନ୍ତି; ତାଙ୍କର କିଛି କାମ ହେଉ ବା ନ ହେଉ, ଆଜି ଭାଇଙ୍କୁ ଆସିବାକୁ ହିଁ ପଡ଼ିବ..." ଏଇମିତି ସେମାନେ କେତେ କ'ଣ କହି ହସ କଉତୁକ

କରିବାକୁ ଲାଗିଲେ । ସେଦିନ ମଧ୍ୟ ଶାସ୍ତ୍ରୀଜୀ ଡେରିରେ ଆସିଲେ । ରାତିରେ ଯେତେବେଳେ ସେ ଡେରି ହେବାର କାରଣ କହିଲେ, ସେତେବେଳେ ମୁଁ ଟିକିଏ ରାଗିଯାଇ ନଣନ୍ଦ ଓ ଅନ୍ୟ ଝିଅମାନଙ୍କ ଅଛା ପରିହାସ କଥା କହିଲି—ଯଦି ଠିକ୍ ସମୟରେ କାଲି ତାଙ୍କର ଆସିବା ନ ହୁଏ, ତା'ହେଲେ ମୋର ଖାଇବା ପିଇବା ବନ୍ଦ ହୋଇଯିବ । ଶାସ୍ତ୍ରୀଜୀ ଟିକିଏ ହସିଦେଇ ଅନ୍ୟ କଥା ଆରମ୍ଭ କଲେ । ପରଦିନ ସେ ଠିକ୍ ସମୟରେ ସନ୍ଧ୍ୟାବେଳକୁ ଆସିଗଲେ । ବାହାରିବାବେଳେ ମୁଁ ତାଙ୍କୁ ପାଞ୍ଚୋଟି ଟଙ୍କା ମାଗିଲି । ତାଙ୍କ ପାଖରେ ମାତ୍ର ଦେଢ଼ ଟଙ୍କା ଥିଲା; ସେତକ ସେ ମୋ' ହାତରେ ଧରାଇ ଦେଲେ । ମୁଁ ସେ ଟଙ୍କା ଫେରାଇ ଦେବା ସଙ୍ଗେ ସଙ୍ଗେ ପ୍ରଦର୍ଶନୀ ଯିବାପାଇଁ ମନା କରିଦେଲି । ସେ ଯେତେ ବୁଝାଇଲେ ବି, ମୁଁ ପ୍ରଦର୍ଶନୀକୁ ଯିବାପାଇଁ ଆଦୌ ରାଜି ହେଲିନାହିଁ । ବାଧ୍ୟହୋଇ ସେ ସାନ ନଣନ୍ଦଙ୍କଠାରୁ ଟଙ୍କା ଧାର ମାଗିବାକୁ କହିଲେ । ସେ କେବେହେଲେ ଏପରି ମାଗିବାଟାକୁ ପସନ୍ଦ କରୁନଥିଲେ; କିନ୍ତୁ ମୋ' ପାଇଁ ତାଙ୍କୁ ସେଦିନ ଉଧାର ମାଗିବାକୁ ପଡ଼ିଲା । ମୁଁ ନଣନ୍ଦଙ୍କୁ ଟଙ୍କା ମାଗିଲି । ସେ ଦେବାପାଇଁ ଟାଳଟୁଳ କରିବାରୁ ଆରଘରୁ ଶାସ୍ତ୍ରୀଜୀ କହିଲେ, "ଆରେ ତୁ ଥରେ ତା'ର ଇଚ୍ଛା ପୂର୍ଣ୍ଣ କରିଦେ; କେତେବେଳେ ତ କିଛି ମାଗେ ନାହିଁ !" ସେ ପାଞ୍ଚୋଟି ଟଙ୍କା ବାହାରକରି ଦେଲେ । ପ୍ରଦର୍ଶନୀରେ ପହଞ୍ଚି ମୁଁ କିଛି କିଣିବାଲାଗି ଯେଉଁ ଦୋକାନ ପାଖରେ ଛିଡ଼ାହୁଏ, ଆଗରେ ଭଲ ଜିନିଷ ମିଳିବ ବୋଲି କହି ସେ ମୋତେ ଆଗେଇ ନିଅନ୍ତି । ଏହିପରି ଭାବରେ ପଇସାଟିକର ସୁଦ୍ଧା ଜିନିଷ ନ କିଣି ସେ ମୋତେ ପ୍ରଦର୍ଶନୀ ଦେଖାଇ ବାହାରକୁ ଘେନି ଆସିଲେ । ଘରକୁ ଆସି ସେ ନଣନ୍ଦଙ୍କ ଟଙ୍କା ଫେରାଇ ଦେଲେ ଏବଂ ମୋତେ କହିଲେ—"କିଛି ଜିନିଷ କିଣିଲି ନାହିଁ ବୋଲି ଦୁଃଖିତ ହୋଇନାହୁଁ ତ ? ପର ପଇସାରେ ନିଜପାଇଁ ଜିନିଷ କିଣିବା ଠିକ୍ ନୁହେଁ । ଯେତିକି ପଇସା ନିଜ ପାଖରେ ଅଛି; ସେତିକିରେ ସନ୍ତୁଷ୍ଟ ହେବା ଉଚିତ ।" ମୁଁ ସେ ସମୟରେ ତାଙ୍କୁ କୌଣସି ଉତ୍ତର ଦେଇ ନ ଥିଲି; କିନ୍ତୁ ପ୍ରଦର୍ଶନୀରେ ମୋତେ ତାଙ୍କ ମନୋଭାବର ଆଭାସ ମିଳି ଯାଇଥିଲା ।

**ଘରେ କେହି ନାହାନ୍ତି—**

କୌଣସି ସତ୍ୟାଗ୍ରହ ଆରମ୍ଭ ହେବା ପୂର୍ବରୁ କିମ୍ବା ଅନ୍ୟ କୌଣସି ସୂଚନା ମିଳିଲେ ଇଂରେଜ ସରକାର କଂଗ୍ରେସର ସକ୍ରିୟ କର୍ମକର୍ତ୍ତାମାନଙ୍କୁ ବଡ଼ ଚତୁରତା ସହିତ ଗିରଫ କରି ନେଉଥିଲେ । ପ୍ରଥମେ ଗୌତମଜୀ ଗିରଫ ହୋଇଗଲେ । ତାଙ୍କ ନାମରେ କଚେରୀରେ ମୋକଦ୍ଦମା ଚାଲିଲା । ଶାସ୍ତ୍ରୀଜୀ ପ୍ରତି ତାରିଖ ଦିନ ଯାଉଥିଲେ । ଗୋଟିଏ ତାରିଖରେ ତାଙ୍କୁ ମଧ୍ୟ ଓ୍ୱାରେଣ୍ଟ ଦେଖାଇ ଗିରଫ କରିନିଆଗଲା । ତାଙ୍କ ନାମରେ ମୋକଦ୍ଦମା ଚାଲିଲା । ତାରିଖ ଦିନ ଶହ ଶହ ଲୋକ କଚେରୀକୁ ଯାଉଥିଲେ ।

ଆମ୍ଭେମାନେ ମଧ୍ୟ ଯାଇଥିଲୁ । କଥାବାର୍ତ୍ତା କରିବାର ସୁବିଧା ନ ଥିଲେ ମଧ୍ୟ ଜେଲରୁ କଚେରୀକୁ ଓ କଚେରୀରୁ ଜେଲ୍‌କୁ ଯିବା ଆସିବାବେଳେ ତାଙ୍କ ଦେଖା ମିଳୁଥିଲା । ଫଇସଲା ତାରିଖ ଦିନ ତାଙ୍କ ବଡ଼ ଭଉଣୀ ଓ ପିଉସୀ ଆସିଥିଲେ । ଦେଖା କରିବା ଲାଗି ପୂର୍ବରୁ ଦରଖାସ୍ତ ଦିଆଯାଇ ଅନୁମତି ମିଳିଥିଲା ସତ; କିନ୍ତୁ କିଏ କିଏ ଦେଖା କରିବେ ଏହା ଗୋଟିଏ ବଡ଼ ସମସ୍ୟା ହୋଇଥିଲା । ତିନିଜଣରୁ ଅଧିକ ସାକ୍ଷାତ କରିବାର ହୁକୁମ ନଥିଲା । ନଣନ୍ଦେଇ ଦେଖାକରିବାକୁ ଆସିଥିଲେ; ତେଣୁ ତାଙ୍କର ଦେଖା କରିବା ବିଶେଷ ଜରୁରୀ ଥିଲା । ମା'ଙ୍କ ନିଶ୍ଚୟ ଦେଖା କରିବେ ! ବାକି ରହିଲୁ ପିଉସୀ ଓ ମୁଁ । ମୋର ଅବସ୍ଥା ଯାହା, ତାହା ମୋ' ବ୍ୟତୀତ ଅନ୍ୟ କିଏ ଅବା ଜାଣିପାରନ୍ତା ! ଯେତେ ଚେଷ୍ଟା କଲେ ମଧ୍ୟ ଲୁହ ବରାବର ବହିବାରେ ଲାଗିଥାଏ । ମା'ଙ୍କ ଓ ନଣନ୍ଦେଇ ଦୁହେଁଯାକ ପିଉସୀଙ୍କ ସପକ୍ଷରେ ମତ ଦେଲେ, ତେଣୁ ସେ ଦେଖା କରିବାକୁ ଗଲେ । ମୁଁ ଜେଲ ଫାଟକ ସାମନାରେ ଥିବା ଗଛମୂଳ ଚଉତରା ଉପରେ ବସି ରହିଲି । ସାମନାରେ ଥିଲା ଜେଲରଙ୍କ ଅଫିସ । ଖୁବ୍ ସମ୍ଭବତଃ ଜେଲର ଭିତରକୁ ଯିବାବେଳେ ମା'ଙ୍କଙ୍କ ସହିତ ମୋତେ କାନ୍ଦୁଥିବାର ଦେଖିଥିଲେ । ମା'ଙ୍କ ଦେଖା କରିବାକୁ ଗଲାବେଳେ ଜେଲର ସେହିଠାରୁ ମୋ' ଆଡ଼କୁ ଆଙ୍ଗୁଠି ଦେଖାଇ ଶାସ୍ତ୍ରୀଜୀଙ୍କ ସହିତ ମୋର ସମ୍ପର୍କ ସମ୍ବନ୍ଧରେ ପଚାରିଲେ । ଶାସ୍ତ୍ରୀଜୀଙ୍କଠାରୁ ଆମର ସମ୍ବନ୍ଧ ବିଷୟରେ ଶୁଣି ସେ ମୋତେ ଡକାଇ ପଠାଇଲେ । କଥାବାର୍ତ୍ତା ସାରି ଯିବା ସମୟରେ ମୁଁ ଜାଣି ଶୁଣି ଟିକିଏ ଅଟକି ଗଲି । ଶାସ୍ତ୍ରୀଜୀଙ୍କୁ ସେତିକିବେଳେ ଅବସର ମିଳିଗଲା । ମୋ' ପିଠି ଉପରେ ହାତ ବୁଲାଉ ବୁଲାଉ ସେ ଧୀରେ କହିଲେ, "ଠିକ୍ ଖବରେ ରହିବ, ଚିନ୍ତା କରିବ ନାହିଁ ।" କେବଳ ତାଙ୍କ କଥା ଶୁଣିବା ବ୍ୟତୀତ ମୋ' ପକ୍ଷରେ ଆଉ ଉପାୟ କ'ଣ ଥିଲା ?

ଦଣ୍ଡ ହେବା ସଙ୍ଗେ ସଙ୍ଗେ ଶାସ୍ତ୍ରୀଙ୍କ ଉପରେ ଜୋରିମାନା ମଧ୍ୟ ହୋଇଥିଲା ଏବଂ ଜୋରିମାନା ଆଦାୟ କରିବା ଉଦ୍ଦେଶ୍ୟରେ ଦିନେ ହଠାତ୍ କେତେଜଣ ପୋଲିସବାଲା ଓ ଜଣେ ଦାରୋଗା ଘର କୋରକ୍ କରିବା ଲାଗି ଆସି ପହଞ୍ଚିଗଲେ । ଘରେ ମୋ' ବ୍ୟତୀତ ଆଉ କେହି ନ ଥିଲେ । ମା'ଙ୍କ ସାନ ନଣନ୍ଦଙ୍କ ସହିତ ଗଙ୍ଗାକୁ ଗାଧୋଇବାକୁ ଯାଇଥିଲେ । ଘରେ କିଏ ଅଛ ବୋଲି ଦାରୋଗା ପଚାରିବାରୁ ମୁଁ ଜବାବ ଦେଲି, "କେହି ନାହାନ୍ତି, ସମସ୍ତେ ଗାଧୋଇ ଯାଇଛନ୍ତି ।"

"ଆଉ ଆପଣ କିଏ ?"

"ମୁଁ ପଡ଼ୋଶୀ ଘରେ ରହେ ?"

ସେ ପୁଣି ପଚାରିଲେ, "ଆପଣଙ୍କ ସ୍ୱାମୀଙ୍କ ନାମ କ'ଣ ?"

ମୁଁ ସଙ୍ଗେ ସଙ୍ଗେ ଜବାବ ଦେଲି—"ଚନ୍ଦ୍ରିକା ପ୍ରସାଦଙ୍କ।"

"ସେ କ'ଣ ଘରେ ଅଛନ୍ତି ?"

"ନା, କାନପୁର ଯାଇଛନ୍ତି, କାଲି ଫେରି ଆସିଯିବେ ।"

"ହେଉ ଭଲକଥା, କାଲି ଆମେ ପୁଣି ଆସିବୁ" କହି ସମସ୍ତେ ଚାଲିଗଲେ । ମା'ଙ୍କ ଆସିଯିବାରୁ ଗ୍ରନ୍ଥବାଟେ କିଛି ଜିନିଷପତ୍ର ଗୌତମଜୀଙ୍କ ଘରେ ପହଞ୍ଚାଇ ଦିଆଗଲା ଏବଂ ଆଉ କିଛି ଜିନିଷ ଏଣେତେଣେ ପଡ଼ୋଶୀଙ୍କ ଘରେ ରଖାଗଲା । ପରଦିନ ସେମାନେ କୋରକ କରିବାପାଇଁ ଆସି ଦେଖିଲେ ଘର ଖାଲି । ଆମଘରୁ ସେମାନଙ୍କୁ କିଛି ମିଳିଲା ନାହିଁ । ସେମାନେ କାନମୁଣ୍ଡ ଆଉଁସି ଫେରିଗଲେ ।

———

# ଆଠ

## ଜେଲ୍‌ରେ ଆମ୍ବ ଉପହାର—

ମଲାକା ଜେଲରୁ ଫୈଜାବାଦ ଜେଲ୍‌କୁ ଶାସ୍ତ୍ରୀଜୀଙ୍କୁ ପଠାଯାଉଛି ବୋଲି କାର୍ଡ଼ ଆସିଲା । ସେହି କାର୍ଡ଼ରେ ପରିବର୍ତ୍ତନର ଦିନ, ତାରିଖ ଆଦି ଲେଖାଥିଲା । ତତ୍ ସଙ୍ଗେ ସଙ୍ଗେ 'ମଟର ପୁରି' ପାଇଁ ଶାସ୍ତ୍ରୀଜୀ ବରାଦ କରିଥିଲେ । ମଟର ପୁରଦିଆ ପୁରି ଖାଇବାକୁ ଶାସ୍ତ୍ରୀଜୀଙ୍କୁ ଖୁବ୍ ଭଲ ଲାଗେ । ଜେଲ ପରିବର୍ତ୍ତନ ଦିନ ଘର ଲୋକଙ୍କ ସହିତ ଦେଖା କରିବାର ସୁବିଧା ଦିଆଯାଏ । ତା' ସଙ୍ଗେ ସଙ୍ଗେ କିଛି ଜିନିଷପତ୍ର ଦେବା ଓ ଘର ତିଆରି ଖାଦ୍ୟ ଇତ୍ୟାଦି ଖୋଇବାର ମଧ୍ୟ ସୁବିଧା ଦିଆଯାଏ । ଫୈଜାବାଦ ଜେଲ୍‌କୁ ତାଙ୍କର ବଦଳି ହୋଇଯାଇଛି ଶୁଣି ଯେଉଁ ଦୁଃଖ ହେଲା, ତାହା ସଙ୍ଗେ ସଙ୍ଗେ ପାସୋର ହୋଇଗଲା । ତା' ସହିତ ଆସି ଚିନ୍ତା ପଡ଼ିଲା, ମଲାକା ପର୍ଯ୍ୟନ୍ତ ଯିବା ଓ ଜେଲ୍‌ଠାରୁ ଷ୍ଟେସନ ପର୍ଯ୍ୟନ୍ତ ଗାଡ଼ି ଆସିବା ଭଡ଼ାର ଯୋଗାଡ଼ କିପରି କରାଯିବ ? ପୁରି ତିଆରି କରି ନେବା ତ ଆଉ ଗୋଟିଏ ସମସ୍ୟା ? ମା'ଜୀଙ୍କ ପାଖରେ ପଇସା ନ ଥିଲା କିମ୍ବା ମୋ' ପାଖରେ ବି ପଇସା ନ ଥିଲା । ଆଉ କିଛି ଉପାୟ ନ ପାଇ ଗୌତମଜୀଙ୍କ ସ୍ତ୍ରୀଙ୍କୁ କହିଲି । ସେ ବିଚାରୀଙ୍କ ପାଖରେ ମଧ୍ୟ ଟଙ୍କା ନ ଥିଲା । ଯାହା କିଛି ହେଉ ତାଙ୍କ ପାଖରେ ଯେଉଁ ଦୁଇଟଙ୍କା ଥିଲା, ସେ ଦେଇ ଦେଲେ । ଗାଡ଼ି ଭଡ଼ାପାଇଁ ପଇସା ତ ମିଳିଗଲା; କିନ୍ତୁ ମଟରପୁରି ପାଇଁ ପଇସା ଅଭାବ ।

## ପୋଲିସ୍‌ର ଚାବୁକ—

ନିର୍ଦ୍ଦିଷ୍ଟ ଦିନ ମୁଁ ସାନ ନଣନ୍ଦଙ୍କୁ ସାଙ୍ଗରେ ନେଇ ମଲାକା ଜେଲ ପାଖରେ ଯାଇ ପହଞ୍ଚିଲି । ଜେଲ ଫାଟକ ପାଖରେ ଗୋଟିଏ ଦାଢ଼ିବାଲା ସିପାହୀ ଜଗିଥିଲା । ମୁଁ ତାକୁ ଦେଖିବାମାତ୍ରେ ଚିହ୍ନିଗଲି । ପୂର୍ବରୁ ଆମ ଘର ଯେତେବେଳେ କୋରକ୍ ହୋଇଥିଲା, ସେତେବେଳେ ସେହି ପୁଲିସ୍‌ବାଲା ତାଙ୍କ ସାଥିରେ ଥିଲା । ସାନ ନଣନ୍ଦ

ଶାସ୍ତ୍ରୀଜୀଙ୍କ ସମ୍ବନ୍ଧରେ ତାଙ୍କୁ ପଚାରିଲେ । ପଚାରିଲେ ତ ସାନ ନନ୍ଦଙ୍କ କଥା ସେ ଆଦୌ ଶୁଣିଲେନି, ପରେ କହିଲା, "ବର୍ତ୍ତମାନ ଅପେକ୍ଷା କରନ୍ତୁ, ଆସିବାବେଳ ହୋଇଗଲାଣି ।" ଆମେ ଦୁହେଁ ଜେଲ୍ ଫାଟକର କିଛି ଦୂରରେ ଠିଆହୋଇ ରହିଲୁ ।

ସେ ଦାଢ଼ିବାଲା ସିପାହୀ ବାରମ୍ବାର ଆମ ଆଡ଼କୁ ଚାହିଁ ମୁରୁକି ମୁରୁକି ହସୁଥାଏ । ତା' ପାଖରେ ଠିଆ ହୋଇଥିବା ଆଉ ଗୋଟିଏ ପୁଲିସବାଲା, ଆମକୁ ଶୁଣାଇ କହୁଥାଏ, "ଜାଣିଛ, ଏ କିଏ ? ଏ ହେଉଛନ୍ତି ଶ୍ରୀମତୀ ଚନ୍ଦ୍ରିକାପ୍ରସାଦ ଓରଫ୍ ଶ୍ରୀମତୀ ଲାଲବାହାଦୁର । କ'ଣ ବୁଝିଲ, କଂଗ୍ରେସବାଲାଙ୍କ ସ୍ତ୍ରୀମାନେ ବଡ଼ ଚାଲାକ ! ସେଦିନ ଆମକୁ ଏ' ଖୁବ୍ ଠକି ଥିଲା ।"

ଛିଡ଼ା ହୋଇ ହୋଇ ଆଉ କେତେ ସମୟ ବିତିଗଲା । ଡେରି ହେବାର କାରଣ ବୁଝାପଡୁ ନ ଥିଲା । ଏତିକିବେଳେ ଜଣେ ଭଦ୍ରଲୋକ ଆମ ପାଖକୁ ଆସି ଧୀରେ ପଚାରିଲେ, "ଆପଣ ଲାଲବାହାଦୁରଙ୍କ ସମ୍ପର୍କୀୟା କି ?"

'ହଁ ।'

"ତା' ହେଲେ ଷ୍ଟେସନ ଯା'ନ୍ତୁ । ଏଠାରେ କାହିଁକି ଛିଡ଼ା ହୋଇଛନ୍ତି ? ଆପଣଙ୍କ ଆସିବା ପୂର୍ବରୁ ସେ ଷ୍ଟେସନ ଚାଲିଗଲେଣି । ସେ ସିପାହୀ ଜଣକ ବଦମାସୀ କରି ଆପଣଙ୍କୁ କିଛି କହିଲା ନାହିଁ । ମୁଁ ମଧ୍ୟ ଏଠାକାର ଜଣେ ସିପାହୀ ।" ଶୀଘ୍ର ଶୀଘ୍ର ସଡ଼କ ଉପରକୁ ଆସି ଗାଡ଼ି କରି ଷ୍ଟେସନକୁ ଆସିଲୁ । କାଳେ ଶାସ୍ତ୍ରୀଜୀଙ୍କ ଗାଡ଼ି ଛାଡ଼ିଦେବ, ସେଥିଲାଗି ଖୁବ୍ ଉଦ୍‌ବିଗ୍ନ ହେଉଥିଲି ଏବଂ ତା' ସଙ୍ଗେ ସଙ୍ଗେ ମନ ଭିତରେ ମୋର ଅନ୍ତର କାନ୍ଦୁଥିଲା । ଷ୍ଟେସନ ବାହାରେ ଜେଲ୍ ମୋଟରଟି ବନ୍ଦ ହୋଇ ଛିଡ଼ା ହୋଇଥିଲା । ଦୂରରୁ ଜେଲ ଗାଡ଼ିଟିକୁ ଦେଖି ଏତିକି ଆନନ୍ଦ ଲାଗିଲା ଯେ, ଏ ପର୍ଯ୍ୟନ୍ତ ଶାସ୍ତ୍ରୀଜୀ ଅଛନ୍ତି ଏବଂ ତା' ସଙ୍ଗେ ସଙ୍ଗେ ଆହୁରି ମଧ୍ୟ ଭ୍ରମ ହେଲା ଯେ, ସେ ଏହି ଗାଡ଼ି ଭିତରେ ବସିଛନ୍ତି । ଆମେ ସେହି ପାଖରେ ଛିଡ଼ା ହୋଇଗଲୁ; କାରଣ ମୋଟରରୁ ଓହ୍ଲାଇବା ମାତ୍ରେ ଦେଖା ହୋଇଯିବ । ଏହି ସମୟରେ ଟଣ୍ଡନଜୀ ( ରାଜର୍ଷି ପୁରୁଷୋତ୍ତମ ଦାସ ଟଣ୍ଡନ ) ଆସି ସେଠାରେ ପହଞ୍ଚିଲେ । ମୋତେ ଦେଖିବା ମାତ୍ରେ ପଚାରିଲେ, "ବୋହୂ, ଦେଖା ହେଲାଣି ?"

"ଏବେ କେଉଁଠି ଦେଖା ମିଳିଲାଣି ?"

"ତା' ହେଲେ ଏଠାରେ କାହିଁକି ଛିଡ଼ା ହୋଇଛ ? ଜଲଦି ପ୍ଲାଟଫର୍ମକୁ ଚାଲ ଗାଡ଼ି ଛାଡ଼ିବାକୁ ବସିଲାଣି ।"

**ଜେଲ ଖାଦ୍ୟ ବି ମିଳଇନି—**

ଆମେ ଦୁହେଁ ତାଙ୍କ ପଛେ ପଛେ ପ୍ଲାଟଫର୍ମକୁ ଗଲୁ । ଶାସ୍ତ୍ରୀଜୀ ଖିଡ଼କିବାଟେ ମୁହଁ ବାହାର କରି ଏଣେ ତେଣେ ଗ୍ଳୁହୁଁଥିଲେ । ତାଙ୍କ ବଗି ପାଖରେ ପହଞ୍ଚିଲାବେଳକୁ ଗାଡ଼ି ଗ୍ଳଲିବାକୁ ଲାଗିଲା । ସେ ସଙ୍ଗେ ସଙ୍ଗେ ତେଇଁପଡ଼ି ତଳକୁ ଆସିଗଲେ । ଏହା ଦେଖି ପୁଲିସବାଲାମାନେ ଗର ଗର୍ ହୋଇ କହିଲେ, ଏ କ'ଣ କରୁଛନ୍ତି ବାବୁଜୀ ! ଆମର ଦାନାପାଣି ଯିବ, ଆପଣଙ୍କର କ'ଣ ଯାଉଛି ? ଏ ତ ବଡ଼ ଧୋକାବାଜ କାମ ! ଆପଣମାନେ···।" କିନ୍ତୁ ଶାସ୍ତ୍ରୀଜୀ କିଛି ନ ଶୁଣି କୌଣସି ମତେ ଆମକୁ ବଗିରେ ଚଢ଼ାଇନେଲେ । ଟଣ୍ଡନଜୀ ଓ ତାଙ୍କର ଜଣେ ସାଙ୍ଗ ମଧ୍ୟ ଚଢ଼ିଗଲେ । ଟଣ୍ଡନଜୀ ଶାସ୍ତ୍ରୀଜୀଙ୍କ ସହିତ କଥାବାର୍ତ୍ତା କରିବାକୁ ଆରମ୍ଭକରି ମୋତେ କହିଲେ, "ବୋଦ୍ଧୁ ? ତୁମେ ଟିକିଏ ପରେ କଥାବାର୍ତ୍ତା କରିବ, ମୁଁ କେତେକ ଜରୁରୀ କଥାବାର୍ତ୍ତା ସାରି ଆଗ ଷ୍ଟେସନରେ ଓହ୍ଲାଇ ଯିବି ।"

ଫାଫାମଉ (ଫୈଜାବାଦ ଲାଇନ୍‌ରେ ଗୋଟିଏ ରେଲୱେ ଷ୍ଟେସନ) ଷ୍ଟେସନରେ ଟଣ୍ଡନଜୀ ଦୁଇଟି ଟିକଟ ଆଣି ଆମକୁ ଦେଲେ ଏବଂ ଖଣ୍ଡିଏ ଚିଠି ମଧ୍ୟ ଲେଖିଦେଲେ । ଯେଉଁ ଷ୍ଟେସନରେ ଆମକୁ ଚିଠି ଦେବାକୁ ହେବ, ସେ ସମ୍ବନ୍ଧରେ ଶାସ୍ତ୍ରୀଜୀଙ୍କୁ ସବୁ ଠିକ୍ ଠିକ୍ ବୁଝାଇ ଦେଲେ ଏବଂ ତା' ସଙ୍ଗେ ସଙ୍ଗେ ଆମର ଖାଇବା ପିଇବା ଓ ଫେରିବାର ସମୁଚିତ ବ୍ୟବସ୍ଥା କରିଦେବେ ବୋଲି କହିଗଲେ । ଟଣ୍ଡନଜୀ ଓ ତାଙ୍କ ସାଙ୍ଗ ସେଇଠାରେ ଓହ୍ଲାଇଗଲେ । ଗାଡ଼ି ଗ୍ଳଲିବା ମାତ୍ରେ ଶାସ୍ତ୍ରୀଜୀ ପଗ୍ଳରିଲେ, "କ'ଣ ଖାଇବା ପାଇଁ ଆଣି ନାହିଁ କି ? ଯାଃ. ପୁଣି ଖାଇବାଲାଗି ମୋର ଜେଲଖାନା ଖାଦ୍ୟ ବି ହାତରୁ ଗଲା ।" ସେ ଟିକିଏ ହସିଦେଇ ଅନ୍ୟ କଥା ଆରମ୍ଭ କଲେ । ସେ ବାସ୍ତବିକ ପରିସ୍ଥିତିର ଅନୁମାନ କରିନେଇଥିଲେ; କିନ୍ତୁ ମୋ' ହୃଦୟ ଭିତରେ ସତେ ଯେପରି ଗୋଟିଏ ବଡ଼ ଧକ୍କା ଲାଗିଲା । ବହୁ ଚେଷ୍ଟା କଲେ ମଧ୍ୟ ମୁଁ ମୋର ଲୁହ ରୋକି ପାରିଲି ନାହିଁ । ଷ୍ଟେସନରୁ କିଛି କିଣିଆଣି ତାଙ୍କୁ ଖୋଇବା ଲାଗି ମଧ୍ୟ ପାଖରେ ଯଥେଷ୍ଟ ପଇସା ନ ଥିଲା ।

ଆମ ଓହ୍ଲାଇଯିବା ଷ୍ଟେସନ ଆସିବା ପର୍ଯ୍ୟନ୍ତ ଶାସ୍ତ୍ରୀଜୀ ଦେଶ ଓ ସମାଜର କେତେ କଥା ବୁଝାଇବା ସଙ୍ଗେ ସଙ୍ଗେ, ନ୍ୟାୟପରାୟଣତା ଓ କର୍ତ୍ତବ୍ୟପରାୟଣତା ମଣିଷର ସବୁଠାରୁ ବଡ଼ ବଳ ବୋଲି ଜୋର ଦେଇ କହିଥିଲେ । ତା' ସଙ୍ଗେ ସଙ୍ଗେ ଯେ କୌଣସି ଅବସ୍ଥାରେ ମଧ୍ୟ ନ୍ୟାୟ, ସତ୍ୟ ଓ କର୍ତ୍ତବ୍ୟପଥରୁ ବିଚ୍ୟୁତ ହେବା ଉଚିତ ନୁହେଁ ବୋଲି ଉପଦେଶ ଦେଇଥିଲେ ।

ବିଶ୍ୱନାଥ ଗଞ୍ଜ (ବୋଧହୁଏ ଆମ ଓହ୍ଲାଇବା ଷ୍ଟେସନର ନାମ) ଷ୍ଟେସନ ଆସିବା ମାତ୍ରେ ଆମେ ଓହ୍ଲାଇ ପଡ଼ିଲୁ । ଯାହାଙ୍କ ପାଇଁ ଟଣ୍ଡନ୍‌ଜୀ ଆମ ହାତରେ ପତ୍ର ଦେଇଥିଲେ, ସେ ସେଇଠାରେ ଥିଲେ । ସେ ଶାସ୍ତ୍ରୀଜୀଙ୍କ ଜଳପାନର ବ୍ୟବସ୍ଥା କରାଇ ତାଙ୍କୁ ଦୁଧ ଓ ମିଠାଇ ଖୁଆଇଥିଲେ । ଗାଡ଼ି ଚାଲିଯିବା ପରେ ସେ ଆମର ସବୁ ବ୍ୟବସ୍ଥା କରିଦେଲେ । ଏହ୍ଲାବାଦ ଲାଗି ଦୁଇଟି ଟିକଟ ଆଣିଦେଲେ ଓ ରାତ୍ର ଦଶଟାରେ ଗାଡିରେ ବସାଇଦେଇ ଘରକୁ ଗଲେ । ପ୍ରାୟ ରାତ୍ର ଗୋଟାକବେଳେ ଆମ ଗାଡ଼ି ଏହ୍ଲାବାଦରେ ପହଞ୍ଚିଲା ।

ଶାସ୍ତ୍ରୀଜୀ ମଲାକା ଜେଲରେ ଥିବା ପର୍ଯ୍ୟନ୍ତ କେବଳ ତାଙ୍କଠାରୁ ଅଲଗା ରହିବାର ଚିନ୍ତା ବ୍ୟତୀତ, ତାଙ୍କ ସମ୍ବନ୍ଧରେ ମୋ' ମନରେ ଅନ୍ୟ କୌଣସି ଚିନ୍ତା ନ ଥିଲା । ସେ କ'ଣ କରୁଥିବେ, କିପରି ଥିବେ, କ'ଣ ଖାଉଥିବେ, ଏ ବିଷୟରେ ମୋ' ମନରେ ଅସ୍ଥିରତା ଆଦୌ ନ ଥିଲା । ସେ କାଳେ ଜେଲ୍‌ରେ ବେମାରରେ ପଡ଼ିପାରନ୍ତି, ଏ ବିଷୟରେ ମଧ୍ୟ ଚିନ୍ତା ନ ଥିଲା; କିନ୍ତୁ ସେ ଫୈଜାବାଦ ଯିବାପରେ ରାତଦିନ ତାଙ୍କର ଚିନ୍ତାରେ ମୋର କୌଣସି କାମରେ ମନ ଲାଗିଲା ନାହିଁ । ସବୁବେଳେ ମୋର ଧ୍ୟାନ ଧାରଣା ତାଙ୍କଠାରେ ଲାଗି ରହିଲା । ଦିନ କାଟିବା ବଡ଼ ଦୁଷ୍କର ହୋଇପଡ଼ିଲା । ଥରେ ଯାଇ ଦେଖି ଆସିବାକୁ ସବୁବେଳେ ଇଚ୍ଛା ହେଉଥିଲେ ବି ଫୈଜାବାଦ ଯିବା ଆସିବା ଲାଗି ରେଳଭଡ଼ା ଯୋଗାଡ଼ କରିବା ଗୋଟିଏ ପ୍ରଶ୍ନ ଥିଲା । ଘର ଖର୍ଚ୍ଚ ତ ବଡ଼ ଅସୁବିଧାରେ ଚାଲୁଥିଲା, ସେଥିରେ ଗାଡ଼ିଭଡ଼ା ଯୋଗାଡ଼ କରିବା ଲାଗି ଟଙ୍କା କୁଆଡ଼ୁ ଆସିବ ? କାହାରିକୁ ଉଧାର ମାଗିବା ସମ୍ଭବ ନୁହେଁ; କାରଣ ଉଧାର ସୁଝନ୍ତି କିପରି ? ସୁଝିବାକୁ ନ ପଡ଼ିଲେ ମଧ୍ୟ ଶାସ୍ତ୍ରୀଜୀ ଧାର ଉଧାରକୁ ଆଦୌ ପସନ୍ଦ କରୁ ନ ଥିଲେ । ସେଥିଲାଗି ମୁଁ କାହାରିକୁ ଉଧାର ମାଗୁ ନ ଥିଲି । ଏହ୍ଲାବାଦରୁ ଆଉ ଯେଉଁମାନେ ଗିରଫ ହୋଇଥିଲେ, ତାଙ୍କ ସ୍ତ୍ରୀମାନେ ପ୍ରତି ମାସରେ ଦେଖିବାକୁ ଯାଉଥିଲେ; କିନ୍ତୁ ମୋ' ଭାଗ୍ୟରେ ସେ ସୁଖ ଭୋଗ କରିବା ସମ୍ଭବ ନ ଥିଲା । ସେଥିପାଇଁ ମୋର ଚାରା କ'ଣ ? ମନେ ମନେ କେତେ ଛଟପଟ ହୁଏ ଏବଂ କେବେ କେବେ କାନ୍ଦି ପକାଏ ।

ଶାସ୍ତ୍ରୀଜୀଙ୍କ ସହିତ ଦେଖା କରିବାକୁ ହେଲେ ପେଟରୁ କାଟିବା ବ୍ୟତୀତ ଅନ୍ୟ ଉପାୟ ନ ଥିଲା । ଶେଷକୁ ତାହା ହିଁ କରିବାକୁ ପଡ଼ିଲା । ଘରକୁ ଯାହା କିଛି ପରିବା ଆସୁଥିଲା, ସେତକ ମଧ୍ୟ ବନ୍ଦ କରିଦେଲି ।-ତେଲମସଲାର ବ୍ୟବହାର ପ୍ରାୟ ନ ଥିଲା ବୋଲି କହିଲେ ଚଳେ । ମା'ଜୀଙ୍କ ପାଇଁ ରୁଟି ଓ ଆମ ପାଇଁ ଲିଟି ( ହାତରେ ତିଆରି କରି ନିଆଁରେ ସେକା ରୁଟି ) ତିଆରି କରେ । ଏଇମିତି ପଇସେ ଦି'ପଇସା ସାଇତି ସାଇତି ଛ' ମାସ ପରେ ମୁଁ ଫୈଜାବାଦ ଯିବାକୁ ସକ୍ଷମ ହେଲି । ଦୈବଯୋଗକୁ ସେଇ

ସମୟରେ ଗୌତମଜୀଙ୍କ ସ୍ତ୍ରୀ ଓ ମାଲବ୍ୟ (କେଶବ ଦେବ ମାଲବ୍ୟ) ଙ୍କ ସ୍ତ୍ରୀଙ୍କର ଯିବାର ଥିଲା । ବେଶ୍ ଅବସର ମିଳିଗଲା । ମୁଁ ସେମାନଙ୍କ ସହିତ ଯିବାର ଯୋଗାଡ଼ କଲି ।

ଶାସ୍ତ୍ରୀଜୀ ଆମ୍ବ ଖାଇବାକୁ ଖୁବ୍ ପସନ୍ଦ କରନ୍ତି । ତାଙ୍କ ପାଇଁ ଦୁଇଟି ଆମ୍ବ ଖରିଦ କଲି । ଫୈଜାବାଦରେ ପହଞ୍ଚିବା ମାତ୍ରେ ଆମ୍ବ ଦୁଇଟିକୁ ବ୍ଲାଉଜ ମଧ୍ୟରେ ଲୁଚାଇ ଦେଲି । କାରଣ ଜେଲ୍ ଫାଟକ ପାଖରେ ଜମା କରି ଦେଇଥିଲେ ଚାଲିଥାନ୍ତା; ମାତ୍ର ତା' ଫଳରେ ଶାସ୍ତ୍ରୀଜୀଙ୍କୁ ମିଳନ୍ତା କି ନାହିଁ, ଯଦିବା ମିଳନ୍ତା, ମୁଁ ନିଜ ହାତରେ ତାଙ୍କୁ ଖୁଆଇବାର ସୌଭାଗ୍ୟ ପାଆନ୍ତି ନାହିଁ ! ଏଇଥିପାଇଁ ମୁଁ ଆମ୍ବ ଦୁଇଟିକୁ ଲୁଚାଇ ଜେଲ ଭିତରକୁ ନେଇଗଲି । ମୁଁ ଆମ୍ବ ବାହାର କରି ଶାସ୍ତ୍ରୀଜୀଙ୍କ ସାମନାରେ ରଖିଛି କି ନାହିଁ; ସେ ଏକାଥରକେ ରାଗି ଉଠି କହିଲେ, "ଏ କ'ଣ ? ତୁମେ ସ୍ୱାକୁ ଲୁଚାଇ କରି ଘେନି ଆସିଛ ! ମୁଁ ଖାଇବି ନାହିଁ । ବର୍ତ୍ତମାନ ମୁଁ ଯାଇ ଫାଟକଠି କହୁଛି, ଏ ଲୁଚେଇ କରି ଭିତରକୁ ଆମ୍ବ ଆଣିଛି । ସ୍ୱା'ଙ୍କୁ ଯାଞ୍ଚକରି ଛଡ଼ାଗଲା ନାହିଁ କାହିଁକି ? ତୁମେ ଏଇମିତି ହଇରାଣ କରୁଛ ? ମୁଁ ସଙ୍ଗେ ସଙ୍ଗେ ଫାଟକ ପାଖକୁ ଯାଇ ତୁମକୁ ଅପମାନିତ କରୁଛି ରହ । ମୁଁ ବୁଝୁଛି ତୁମେ କାହିଁକି ଆମ୍ବ ଆଣିଛ; ମୁଁ ଆମ୍ବ ଖାଇଲେ ତୁମେ ଆମ୍ବ ସମୟରେ ଆମ୍ବ ଖାଇ ପାରିବ, ଅନ୍ୟଥା ତୁମେ ଖାଇ ପାରିବ ନାହିଁ, ଏଇଆ ତ, ନା ଆଉ କ'ଣ ? ବଡ଼ ଲଜ୍ଜାର କଥା ନିଜର ସ୍ୱାର୍ଥପାଇଁ ଅନ୍ୟକୁ କର୍ତ୍ତବ୍ୟମାର୍ଗରୁ ବିଚ୍ୟୁତ କରିବ ? ମୁଁ କେବେହେଲେ ଆମ୍ବ ଖାଇବି ନାହିଁ ।"

ମୁଁ କାନ୍ଦିବାକୁ ଲାଗିଲି । କେତେ ମାସ ପରେ ଥରେ ତାଙ୍କର ଦେଖା ମିଳିଥିଲା, କେତେ କଥା ପଚରା ପଚରି କରି ଶୁଣିବାକୁ ଭାବିଥିଲି, ସବୁ ଓଲଟା ହୋଇଗଲା ! ମୋତେ ସବୁଠାରୁ ବେଶି ଦୁଃଖ ଲାଗିଲା ଯେ, ସେ କାହିଁକି ଭାବିଲେ, ମୁଁ ଆମ୍ବ ଦିନରେ ଆମ୍ବ ଖାଇ ପାରିବି ବୋଲି ଭାବି ତାଙ୍କ ପାଇଁ ଆମ୍ବ ନେଇଥିଲି । ସେଇକଥା ଭାବି ମୋତେ ବେଶି କାନ୍ଦ ମାଡ଼ିଲା । ମୁଁ ଚୋରି କରିଥିଲି, ତାହା ମୋର ଦୋଷ; କେଉଁ ଉଦ୍ଦେଶ୍ୟରେ ସେପରି କରିଥିଲି ତାହା ସେ ଜାଣିଥିଲେ, ତଥାପି ଏପରି ଚିଡ଼ିଲେ କାହିଁକି ? ଏଇ କଥା ଭାବି ମୋ ଆଖିରୁ ଆଦୌ ଲୁହ ବନ୍ଦ ହେଲାନାହିଁ । ମାଲବ୍ୟଜୀଙ୍କ ସ୍ତ୍ରୀ ପୁଣି ତ ମୋରି ପରି ଲୁଚେଇ କରି ଗୁଆ ଓ ଆହୁରି କେତେ କ'ଣ ନେଇଥିଲେ । ମାଲବ୍ୟଜୀ ସବୁ ଜିନିଷତକ ରଖି ନେଲେ । ମିଳନର ସେଇ ଘଣ୍ଟାଏ ସମୟ ମଧ୍ୟ ମୁଁ କିଛି ହେଲେ ପଚାରି ପାରିଲି ନାହିଁ । ହିଁ ଶାସ୍ତ୍ରୀଜୀ ଅବଶ୍ୟ ମାଁ'ଜୀ ତଥା ଅନ୍ୟ ଲୋକମାନଙ୍କ ବିଷୟରେ କେତେ କଥା ପଚାରିଥିଲେ । ଆସିବାବେଳେ ଶାସ୍ତ୍ରୀଜୀ ଆମ୍ବ ଫେରାଇ ଦିଅନ୍ତେ ଗୌତମଜୀ ଅନ୍ୟ କୌଣସି କଏଦୀକୁ ଦେଇଦେବେ ବୋଲି କହି ନେଇଗଲେ ।

ଫୈଜବାଦରୁ ଫେରିବାର ଖୁବ ଛ'ଦିନ ପରେ ତାଙ୍କଠାରୁ ପତ୍ର ଆସିଲା । ସେଥିରେ ସେ ବହୁତ ଦୁଃଖ ପ୍ରକାଶ କରିଥିଲେ ଏବଂ ସେଦିନ ସେ କ୍ରୋଧବଶତଃ ଯାହା କିଛି କହିଥିଲେ ସେଥିଲାଗି କ୍ଷମା ମାଗିଥିଲେ ।

## ବନରୁ ଆସିଲେ ରଘୁନନ୍ଦନ—

ଶୀତ ଦିନର ରବିବାର । ଶାସ୍ତ୍ରୀଜୀଙ୍କ ପାଖରୁ ଆଗରୁ ଯେଉଁ ଚିଠି ଆସିଥିଲା, ସେଇ ଅନୁସାରେ ତାଙ୍କର ଜେଲରୁ ଖଲାସ ହେବା ଲାଗି ଆଉ ଦଶଦିନ ବାକିଥାଏ । ସେଦିନ ମା'ଜୀ ତଳ ଅଗଣାର ସେପାଖ ବାରଣ୍ଡାରେ ରୋଷେଇ କରୁଥା'ନ୍ତି । ମୁଁ ଲଣ୍ଠନ ଜଳାଇବା ପରେ ଆମ ଘରକୁ ଆସିଥିବା ଗୋସେଇଁ ଶାଶୁଙ୍କୁ ଗୋଟିଏ ଦୁଇଟି ଭଜନ ଶୁଣାଇବା ଲାଗି ମୋତେ ସେ କହିଲେ । ଦୁଇ ତିନି ଦିନ ହେଲା ସେ ତାଙ୍କ ପୁଅଙ୍କଠାରୁ କୌଣସି ଖବର ନ ପାଇ ବଡ଼ ଚିନ୍ତାରେ ପଡ଼ିଥାନ୍ତି । ମୁଁ ଉପରକୁ ଯାଇ ତାଙ୍କ (ଗୋସେଇଁ ଶାଶୁଙ୍କ) ଗୋଡ଼ ଘସି ଦେଉ ଦେଉ ଏଇ ଭଜନଟି—"ବନରୁ ଆସିଲେ ରଘୁନନ୍ଦନ" (ଆଇ ରହେ ବନ ସେ ରଘୁନନ୍ଦନ) ଗାଇ ଶୁଣାଇଲି । ଭଜନ ଗାଉ ଗାଉ ମୋ' ମନ ଯାଇ ଶାସ୍ତ୍ରୀଜୀଙ୍କ ନିକଟରେ ପହଞ୍ଚିଗଲା । ମୁଁ ନିଜ କଳ୍ପନାରେ ବୁଡ଼ିଯାଇ ଭଜନର ପଦଟିକୁ ବାରମ୍ବାର ବୋଲିବାକୁ ଲାଗିଲି । ଭଜନ ପ୍ରାୟ ସରିନାହିଁ, ମୁଁ ଝରକାରେ ଦେଖିପାରିଲି ଯେ, ଗୋଟିଏ ଘୋଡ଼ାଗାଡ଼ି ଆସି ଦୁଆର ମୁହଁରେ ଠିଆ ହେଲା । ମୁଁ ଉଠିପଡ଼ି ଦେଖେ ତ, କେହି ଜଣେ କମ୍ବଳ ଘୋଡ଼ିହୋଇ ଓହ୍ଲାଉଛନ୍ତି । ମୁଁ ଖୁସି ହୋଇ କହିଲି—"ବାବୁଜୀ ଆସିଗଲେଣି ଦାଦା, ତଳକୁ ଚାଲନ୍ତୁ ।" ଦାଣ୍ଡ ଦୁଆରର କିଳଣୀ ଖୋଲିବା ଲାଗି ମୁଁ ଶୀଘ୍ର ତଳକୁ ଚାଲିଗଲି । ଶିକୁଳୀ ଖୋଲିବା ପରେ ଯେମିତି ସେ ଭିତରକୁ ଆସିଲେ, ମୁଁ ତାଙ୍କ ପାଦରେ ମୁଣ୍ଡ ରଖି ପ୍ରଣାମ କଲି । ତାଙ୍କ ପାଦ ଉପରୁ ମୋ' ମୁଣ୍ଡ ଉଠିବା ପୂର୍ବରୁ ମୋ' ପିଠି ଥାପୁଡ଼େଇ ସେ କହିଲେ "ପାଗଳୀ !" ମୁଁ ତାଙ୍କୁ ଛାଡ଼ି ଦେଇ ଚମକି ପଡ଼ି ଶୀଘ୍ର ଘରକୁ ଧାଇଁ ଯାଇ ମା'ଜୀଙ୍କୁ କହିଲି—"ଏ ମା'ଜୀ ଦେଖନ୍ତୁ ତ' ଏ ମା'ଜୀ ଦେଖନ୍ତୁ !" ଆନନ୍ଦରେ ମୋର ସାରା ଦେହ କମ୍ପୁଥାଏ ଏବଂ ମୋ' ମୁହଁରୁ ଖାଲି ସେଇଆ ବାହାରୁଥାଏ ।

ମୋତେ ଥରୁଥିବାର ଦେଖି ମା'ଜୀ ଭାବିଲେ ଯେ କୌଣସି ବଦ୍‌ମାସ ଲୋକ ବୋଧହୁଏ ଘର ଭିତରକୁ ପଶିଆସିଛି । ସେ ରାଗିଯାଇ କହିଲେ—"କିଏସେ ରେ ? ତୁ କାହାକୁ କବାଟ ଖୋଲିଲୁ କ ବୋହୂ !" ସେତେବେଳକୁ ଶାସ୍ତ୍ରୀଜୀ ଅଗଣାକୁ ଆସିଗଲେଣି ତାଙ୍କୁ ଦେଖି ମା'ଜୀ ଆଶ୍ଚର୍ଯ୍ୟ ହୋଇଯାଇ ଏକାଥରକେ ତାଙ୍କୁ କୁଣ୍ଢାଇ ପକାଇ ଛାତିରେ ଚାପି ଧରିଲେ । ଦାଦାଜୀ ତଳକୁ ଆସି ଯାଇଥିଲେ; ମାତ୍ର ଅନ୍ଧାର

ହୋଇଥିବାରୁ କିଛି ଦେଖିପାରୁ ନ ଥିଲେ । ସେ ଦୂରରୁ ଥାଇ କହିଲେ—"କ'ଣ ହେଲାକି ବଡ଼ବୋହୂ, ମୋ' ପିଣ୍ଡରେ ପ୍ରାଣ ପଶିଗଲା ।" ସେ ଶାସ୍ତ୍ରୀଜୀଙ୍କ ମୁଣ୍ଡ ମୁହଁ ଓ ପିଠି ଉପରେ ହାତ ବୁଲଇ ଆଉଁସିବାକୁ ଲଗିଲେ । ଶାସ୍ତ୍ରୀଜୀ ମୋଟା ଲୁଗା ପିନ୍ଧି ଗୋଟିଏ କମ୍ବଳ ଘୋଡ଼ି ହୋଇଥିଲେ ଏବଂ ଖୁବ୍ ଦୁର୍ବଳ ହୋଇଯାଇଥିଲେ ।

କେତେ ଦିନ ପରେ ଶାସ୍ତ୍ରୀଜୀ କହିଲେ ଯେ, ମୁଁ ଦେଇ ଆସିଥିବା ଦୁଇଟି ଆମ୍ବକୁ ଗୌତମଜୀ ଏପରି ଏକ କଏଦୀକୁ ଖାଇବାକୁ ଦେଇଥିଲେ, ଯେ କି କୋଡ଼ିଏ ବର୍ଷ ହେବ ଜେଲ୍ ଭୋଗି ଭୋଗି ଆମ୍ବର ସ୍ୱାଦ ଭୁଲି ଯାଇଥିଲା ।

---

# ନଅ

**ଏମିତ ଦାରୁଣ ଦୁଃଖ ଦେଲ—**

ଫୈଜାବାଦ ଜେଲରୁ ଆସିବା ପରେ ପ୍ରାୟ ଏକ ବର୍ଷ ପର୍ଯ୍ୟନ୍ତ ଶାସ୍ତ୍ରୀଜୀ ବାହାରେ ବାହାରେ ରହିଲେ । ଦିନେ ସନ୍ଧ୍ୟାବେଳର ଘଟଣା; ରୋଷେଇବାସ ସରିଯାଇଥାଏ । ମୁଁ ଉପରେ ବସି ମା'ଜୀଙ୍କ ସହିତ ଗପସପ କରୁଛି । ସେତିକିବେଳେ ବାହାର ଦୁଆର ଖଟ୍ ଖଟ୍ ହେଲା । ଶାସ୍ତ୍ରୀଜୀ ଯେମିତି ଦୁଆର ଖଟ୍ ଖଟ୍ କରନ୍ତି ମୁଁ ଜାଣେ, ତେଣୁ ଶୀଘ୍ର ତଳକୁ ଓହ୍ଲାଇ ଆସିଲି । ଦୁଆର ଖୋଲି ଦେଇ ଜଣେ ଅଜଣା ଲୋକକୁ ଦେଖି ସିଧା ଉପରକୁ ଦୌଡ଼ି ପଳାଇ ଆସିଲି । ସେ ମଧ୍ୟ ମୋ' ପଛେ ପଛେ ବାଡ଼ିଟିଏ ଠକର୍ ଠକର୍ କରି ସିଡ଼ି ଚଢ଼ି ଉପରକୁ ଚାଲି ଆସିଲେ । ମୋତେ ଭୟଭୀତ ହୋଇଥିବାର ଦେଖି ମା'ଜୀ କାରଣ ପଚାରିବା ମଧ୍ୟରେ ଶାସ୍ତ୍ରୀଜୀ ଉପରକୁ ଚାଲିଆସିଲେ । ଶାସ୍ତ୍ରୀଜୀଙ୍କୁ ସ୍କାଉଟ୍ ଡ୍ରେସ୍ ଓ ଟୋପି ପିନ୍ଧିବାର ମୁଁ କେବେ ହେଲେ ଦେଖି ନ ଥିଲି । ତେଣୁ ମୁଁ ଅନ୍ଧାରରେ ଦେଖି ଚିହ୍ନି ପାରି ନ ଥିଲି । ମା'ଜୀ ତାଙ୍କୁ ଦେଖିପକାଇ କହିଲେ —"ଏ କି ଆଦତ୍ ତୋର ? ମିଛଟାରେ ବୋହୂକୁ ଡରେଇ ଦେଲୁ ।"

"ନା ମା', ମୁଁ ଦେଖୁଥିଲି, ତୁ କିଭଳି ଗୋଟିଏ ବୀରଲଳନା ସହିତ ମୋର ବିବାହ କରାଇଛୁ ।"

ତହୁଁ ମୁଁ ଧୀରେ କହିଲି, "ମୁଁ ପ୍ରସ୍ତୁତ ନ ଥିଲି, ନଇଲେ ମୋ' ଡରିଯିବା ଖେଳଘର କଥା ନୁହେଁ । ଜାଣିଥିଲେ ଦୃଢ଼ତାର ସହିତ ମୁକାବିଲା କରିଥାନ୍ତି ।"

ଶାସ୍ତ୍ରୀଜୀ କଥାବାର୍ତ୍ତା କରୁ କରୁ ଯେତେବେଳେ ବୁଲି ପଡ଼ନ୍ତି, ସେତେବେଳେ ସେ ନିଶ୍ଚିତ ଭାବରେ ବଡ଼ ଗମ୍ଭୀର ଭାବରେ ଆଲୋଚନା କରନ୍ତି । ସେ ଠିକ୍ ସେହିପରି ବୁଲିପଡ଼ି କହିଲେ—"ବିପଦ କେବେହେଲେ ଆଗରୁ ସୂଚନା ଦେଇ ଆସେନା; ହଠାତ୍

ଆସିଯାଏ । ମଣିଷକୁ ତା'ର ସମ୍ମୁଖୀନ ହେବା ଲାଗି ସଦାସର୍ବଦା ପ୍ରସ୍ତୁତ ରହିବାକୁ ପଡ଼ିବ; ତା' ହେଲେ ଯାଇ ଅସୁବିଧା ବିରୁଦ୍ଧରେ ବିଜୟ ପାଇବା ସମ୍ଭବ ହେବ ।"

ଶାସ୍ତ୍ରୀଜୀଙ୍କର ଏ ଉପଦେଶ ବାଣୀକୁ ମୁଁ ଆଜି ସୁଦ୍ଧା ଭୁଲିପାରି ନାହିଁ; କିନ୍ତୁ ଯେତେ ଚେଷ୍ଟା କଲେ ମଧ୍ୟ ସେହି ଅନୁସାରେ ନିଜକୁ ଚଳାଇ ପାରୁ ନାହିଁ । ପରମେଶ୍ୱର ଏପରି ଦୁଃଖ ଦେଲେ ଯେ, ଯାହାର ପ୍ରତିରୋଧ କରିବା, ଆଉ ଏ ଜୀବନରେ ସମ୍ଭବ ହେବନାହିଁ ।

କୁସୁମ ଚାରି ପାଞ୍ଚ ବରଷର ହୋଇଯାଇଥାଏ । ସେତେବେଳେ ସେ ଖେଳନାରେ ଖେଳିବା ପାଇଁ ଖୁବ୍ ବ୍ୟାକୁଳ ହେଉଥାଏ । ବରଫ ମଲାଇ ଓ ଖସାଲଡୁ ଖାଇବାପାଇଁ ମଧ୍ୟ ଚାହୁଁଥାଏ; କିନ୍ତୁ ପଇସା ଅଭାବରେ ତାହାସବୁ ଯୋଗାଇବା ସମ୍ଭବ ହୁଏନାହିଁ । ସକାଳ ହେବା ମାତ୍ରେ ସେ ଝରକା ପାଖରେ ଛିଡ଼ା ହୋଇଯାଏ, ଯେ କୌଣସି ଖେଳନା ବିକାଳି ବା ବରଫ ମଲାଇ ବିକାଳୀ ସେ ବାଟେ ଯାଆନ୍ତି, ତାଙ୍କୁ ଦେଖି ସେ ସବୁ ନେବାପାଇଁ ଝିଙ୍କି ଧରି କାନ୍ଦେ । ଯେ କୌଣସିମତେ ବୁଝାଇ ସୁଝାଇ, ଧମକ ଦେଇ ତାକୁ ବୁଝାଇ ଦିଏ; କିନ୍ତୁ ମନର ବେଦନା ମନରେ ମାରି ରହିଯିବାକୁ ପଡ଼େ । ଦିନେ ସେ ଝରକା ପାଖରେ ଠିଆ ହୋଇଥିବା ବେଳେ ଗୋଟିଏ ଖେଳନାବାଲା ସେ ବାଟଦେଇ ଗଲା । ଗୋଟିଏ ଝୁମୁକା ନେବାପାଇଁ ସେ ଏପରି ଜିଦ୍ ଧରିଲା ଯେ, ଘରଦ୍ୱାର ଭାଙ୍ଗି ପକାଇଲା । ଯେତେ ବୁଝାଇ ଭୁଲାଇବାକୁ ଚେଷ୍ଟା କଲି, ଶେଷକୁ ମାଡ଼ ଦେଲି; କିନ୍ତୁ ସେ କୌଣସିମତେ ମାନିଲା ନାହିଁ । ବାଧ୍ୟ ହୋଇ ଶେଷରେ ଅଣାଟିଏ ଦେଇ ଗୋଟିଏ ଝୁମୁକା କିଣିବାକୁ ପଡ଼ିଲା ।

ସନ୍ଧ୍ୟାବେଳକୁ ଶାସ୍ତ୍ରୀଜୀ ଘରକୁ ଆସିଲାରୁ ମୁଁ କହିଲି—"ଆଜି ମୁଁ ଗୋଟିଏ ଭୁଲ କରିଦେଇଛି ।"

"କଣ ?"

"ଆପଣଙ୍କ ନ ପସ୍ତର କୁସୁମ ପାଇଁ ଅଣାଟିଏ ଦେଇ ଗୋଟିଏ ଝୁମୁକା କିଣିଛି । ଏମିତି ଜିଦ୍ ଧରିବସିଲା ଯେ, କୌଣସି ପ୍ରକାରେ ମାନିଲା ନାହିଁ । ଶେଷକୁ ମାଡ଼ ଦେଲି, ତେବେ ସୁଦ୍ଧା ମାନିଲା ନାହିଁ, ବାଧ୍ୟ ହୋଇ କିଣିଲି ।" ଶାସ୍ତ୍ରୀଜୀ ହସି ହସି କହିଲେ—ଠିକ୍ କରିଛ; ତା' ବ୍ୟତୀତ ଆଉ ଉପାୟ କ'ଣ ଥିଲା ? ଅବଶ୍ୟ ମିଛଟାରେ ମାଡ଼ ଦେଲ, ମାରିଲେ କେବେ ହେଲେ ଉଦ୍ଦେଶ୍ୟ ସାଧନ ହୁଏ ନାହିଁ ।"

ଏମିତି ଆଉ ଦିନେ ସେ ବରଫ ମଲାଇ ପାଇଁ ଜିଦ୍ ଲଗେଇଲି । ସେଦିନ ଶାସ୍ତ୍ରୀଜୀ ଘରେ ଥା'ନ୍ତି; ଲୁଗାପଟା ପିନ୍ଧି କେଉଁଆଡ଼େ ଯିବାକୁ ବାହାରିଥାନ୍ତି । ମୁଁ କାନ୍ଦିଶୁନ୍ଦି ସେ ଆଡ଼କୁ କାନ ଦେଲି ନାହିଁ । ପ୍ରଥମେ ପ୍ରଥମେ ସେ (ଶାସ୍ତ୍ରୀଜୀ) ବହୁତ ପ୍ରକାର ବୁଝେଇ ସୁଝେଇ ଭୁଲେଇ ଦେବାକୁ ଚେଷ୍ଟା କଲେ; କିନ୍ତୁ ସେ ଯେତେ ଯେତେ ବୁଝାଇବାକୁ ଚେଷ୍ଟା କରୁଥାନ୍ତି, ସେ ତେତେ ତେତେ ବେଶି ବେଶି କାନ୍ଦିବାକୁ ଲାଗିଥାଏ । ଶେଷରେ ସେ ମଲାଇବାଲାକୁ ଡାକି ତା'ଠାରୁ ଅଧିକାକର ମଲାଇ କିଣିଲେ । ସେ (ମଲାଇବାଲା) ଅଧିକାକର ମଲାଇ ଗୋଟିଏ ଦୀପାଲିରେ ଦେଲା । ସେହିଦିନ ଠାରୁ କୁସୁମକୁ ଅଧିକାକର ମଲାଇ ରୋଜ୍ ଖାଇବାକୁ ମିଳିଲା । ଶାସ୍ତ୍ରୀଜୀ ସେ ମଲାଇବାଲାକୁ ପ୍ରତିଦିନ ଦେଇଯିବା ଲାଗି କହିଲେ; ସେହିଦିନଠାରୁ କୁସୁମ ପ୍ରତିଦିନ ଝରକା ପାଖରେ ଠିଆହୋଇ ରହେ । ମଲାଇବାଲା ତା' ସମୟରେ ଆସି ଗୋଟିଏ ଦୀପାଲି ତାକୁ (କୁସୁମକୁ) ଧରେଇ ଦେଇ ଚାଲିବାଲାଗି ଆଗେଇଯାଏ । କୌଣସି କୌଣସି ଦିନ କାଳେ କୁସୁମକୁ ମଲାଇ ମିଳିଛି କି ନା, ମୋର ସନ୍ଦେହ ହେଲେ ମୁଁ ଯାଇ ଦେଖେ ଓ ଝରକା ପାଖରେ ଗୋଟିଏ ଦୀପାଲି ପଡ଼ିଥାଏ ।

ଶାସ୍ତ୍ରୀଜୀ ପୁଣି ଗିରଫ ହେଲେ । ପ୍ରଥମେ ମଲକା ଜେଲ୍‌ରେ ରହିଲେ, ପରେ ପୁଣି ଫୈଜାବାଦ ଗଲେ । ଏଥର ମୁଁ ତାଙ୍କ ସହିତ ଫୈଜାବାଦ ପର୍ଯ୍ୟନ୍ତ ଗଲି । ସେଥର ମା'ଜୀ ମଧ୍ୟ ଯାଇଥାନ୍ତି । ବାଟରେ ସେ ମା'ଜୀଙ୍କୁ କହି କଲେଇଁ କିଣାଇ ମୋତେ ଖାଇବାକୁ କହିଲେ—ମୁଁ ଧୀରେ କହିଲି, "ମୁଁ ମୁହଁ ହାତ ଧୋଇନାହିଁ, ଗାଧୋଇ ନାହିଁ—କିପରି ଖାଇବି ?"

କିନ୍ତୁ ସେ କୌଣସିମତେ ମାନିଲେ ନାହିଁ, ଜିଦ୍‌କରି ମୋତେ ଖୁଆଇଲେ । ଖାଇ ସାରିବାପରେ ସେ କହିଲେ—"ତୁମକୁ ଖୋଇବାର କାରଣ ହେଉଛି, ଦିନସାରା ତୁମେ ତ ଆଉ ଭୋକିଲା ରହିବ ନାହିଁ ! ନଇଲେ ଫୈଜାବାଦରେ ପହଞ୍ଚି ଓ ସେଠାରୁ ଘରରେ ଫେରିବା ପର୍ଯ୍ୟନ୍ତ ତୁମେ କିଛି ଖାଇ ନ ଥାନ୍ତ । ଫୈଜାବାଦ ସହରରେ ଆମର କେତେକ ଆତ୍ମୀୟ ଥିଲେ; ମାତ୍ର ଆମେ ସେ ସମୟରେ ତାଙ୍କ ଘରକୁ ଯିବା ଉଚିତ ମନେ କଲୁନାହିଁ । କାରଣ, କେଜାଣି ସେମାନେ ଆମକୁ ଦେଖି କ'ଣ ଭାବିଥାନ୍ତେ ! ଏହିପରି ଅସୁବିଧା ସମୟରେ ଆତ୍ମୀୟମାନଙ୍କଠାରୁ ଦୂରରେ ରହିବା ଭଲ । ଶାସ୍ତ୍ରୀଜୀ ବରାବର ସେହି ମତ ଅନୁସରଣ କରୁଥିଲେ ।

———

# ଦଶ

**ଘରେ ଚୋର ପଶିଲା—**

ଶାସ୍ତ୍ରୀଜୀ ଜେଲରୁ ଖଲାସ ହୋଇ ଆସିଲା ପରେ ବାହାଦୁରଗଞ୍ଜର ଘର ଛାଡ଼ିଦେଇ ଇଦ୍‌ଗାହ ରୋଡ଼ରେ ଗୋଟିଏ ଘର ଭଡ଼ା ନିଆଗଲା । ଏ ଘରର ତଳ ମହଲାରେ ସରଜୁପ୍ରସାଦଜୀ ଓ ତାଙ୍କ ପତ୍ନୀ ରହୁଥିଲେ । ସ୍ୱା’ ମଧ୍ୟରେ ଗୋଟିଏ ଦୁଃଖଦ ଘଟଣା ଘଟିଗଲା । ମୋ’ ସାନ ନଣନ୍ଦଙ୍କ ସ୍ୱାମୀଙ୍କର ଅକାଳବିୟୋଗ ହୋଇଗଲା । ବିବାହ ହେବାର ପ୍ରାୟ ଆଠବର୍ଷ ହୋଇଥାଏ । ତାଙ୍କ ସ୍ୱାମୀଙ୍କ ମୃତ୍ୟୁବେଳକୁ ତାଙ୍କ ( ସାନ ନଣନ୍ଦଙ୍କ ) କୋଳରେ ସତାଇଶ ଦିନର ଗୋଟିଏ ପୁଅ ଥାଏ । ତାଙ୍କର ତାହା ପୂର୍ବରୁ ଗୋଟିଏ ଝିଅ ଥିଲା; ଅବଶ୍ୟ ସେ ଝିଅଟି ପରେ ପନ୍ଦର ଷୋଳ ବର୍ଷର ହୋଇ ମରିଗଲା । ସେ ଆମ ସହିତ ଆସି ରହିଲେ । ଶ୍ୱଶୁର ଘରେ ସେ ପ୍ରାୟ ଖୁବ୍ କମ୍ ରହୁଥିଲେ ।

ଏହି ସମୟରେ ଦିନେ ଆମ ଘରେ ଚୋର ପଶିଲା । ବାହାଦୁରଗଞ୍ଜଘର କୋରକ୍ ହେବାବେଳେ ମୋ’ଗ୍ରହଙ୍କା ଯେମିତି କାମ ଦେଖାଇଥିଲା, ସେଦିନ ସେମିତି ମୋ’ ଗ୍ରହଙ୍କରେ ବିଶେଷ ସଫଳତା ମିଳିଲା । ସେଦିନ ଶାସ୍ତ୍ରୀଜୀ କଂଗ୍ରେସ କାମରେ ‘ମେଜା’ ଯାଇଥା’ନ୍ତି, ସରଜୁ ପ୍ରସାଦଜୀ ନିଜ ସ୍ତ୍ରୀଙ୍କ ସହିତ ଗାଁରେ ଥା’ନ୍ତି; ମା’ଜୀ ଓ ସାନ ନଣନ୍ଦ ରାମନଗର ଯାଇଥା’ନ୍ତି । ଘରେ ମୁଁ ମୋର ଆଉ ତିନି ଛୁଆଙ୍କୁ ଧରି ଏକୁଟିଆ ଥାଏ । କୁସୁମ ପରେ ଆଉ ମୋର ଦୁଇଟି ପିଲା ହୋଇଥା’ନ୍ତି—ଏକରେ ସୁମନ, ଦୁଇରେ ହରି ।

ରାତି ବେଶୀ ହୋଇନଥାଏ; ଖୁବ୍ ବେଶିରେ ନଅଟା ସାଢ଼େ ନଅଟା ବେଳ ହେବ । ମୁଁ ଓ ପିଲାମାନେ ସମସ୍ତେ ଖାଇସାରି ଉପରକୁ ଯିବାଲାଗି ବାହାରିଥାଉଁ । ବାହାର କବାଟଟି ବନ୍ଦ କରିଦେବାଲାଗି ରୋଷେଇଘରୁ ବାହାରୁଥାଏ; ହଠାତ୍ କବାଟ ପାଖରେ ଠିଆହୋଇଥିବା ଗୋଟିଏ ଲୋକ ଉପରେ ମୋ’ ନଜର ପଡ଼ିଗଲା । ତାକୁ

ଦେଖିବା ମାତ୍ରେ ମୁଁ ଚମକିପଡ଼ି ଛିଡ଼ା ହୋଇଗଲି । ସେ କବାଟ ଉହାଡ଼ରେ ଲୁଚିଥାଏ । ମୁଁ ସତେ ଯେପରି ତାଙ୍କୁ ଦେଖିନାହିଁ, ସେହି ପ୍ରକାର ଛଳନା କରି ଅଗଣାରେ ଏଣେ ତେଣେ ପଡ଼ିଥିବା ବାସନକୁସନତକ ଗୋଟେଇ ଟେକେଇ ଘରେ ରଖିଲି । ସୁମନକୁ ନେଇ ଉପରକୁ ଯିବାଲାଗି କୁସୁମକୁ କହିଲି । ସେ ଦୁହିଁଙ୍କ ପଛରେ ହରିକୁ କାଖେଇ ମୁଁ ସିଡ଼ି ପାଖରେ ଯାଇ ପହଞ୍ଚିଲି । ହରିକୁ କୁସୁମ କାଖରେ ଦେଇ ମୁଁ ସିଡ଼ି ଦରଜାଟି ବନ୍ଦ କରୁ କରୁ ଜୋରରେ ପାଟିକରି କହିଲି—"ସରଜୁ ପ୍ରସାଦଜୀ ! ସରଜୁ ପ୍ରସାଦଜୀ ! ଶୋଇଗଲେଣି ନା, କ'ଣ ? ମୁଁ ଉପରକୁ ଯାଉଛି । ବାହାର ଦୁଆର ଖୋଲା ଅଛି, ବନ୍ଦକରି ଦେବେ ।" ମୁଁ ଯେପରି ଭାବରେ ସରଜୁପ୍ରସାଦଜୀଙ୍କୁ ସମ୍ବୋଧନ କରି ଦ୍ୱାର ବନ୍ଦକରି ଦେବାକୁ କହିଲି, ସେଥିରେ ଚୋରର ଦେହ ଥରିବାକୁ ଲାଗିଲା । କାଳେ ସରଜୁ ପ୍ରସାଦଜୀ ପ୍ରକୃତରେ ଦ୍ୱାର ବନ୍ଦ କରି ଦେବାକୁ ଆସିଯିବେ; ସେଥିଲାଗି ସେ ତରବରେ ପଳାଇଗଲା । ଯିବାବେଳେ ବାହାରେ ରଖାହୋଇଥିବା ଶାସ୍ତ୍ରୀଜୀଙ୍କ ଆରାମ ଚୌକିଟିକୁ ନେଇଗଲା ।

ମୁଁ ଉପରେ ପହଞ୍ଚି ଖୋକା ଖୁକିଙ୍କୁ ଡାକ ପକେଇବାକୁ କୁସୁମକୁ କହିଲି । ଆମ ଘର ସାମନାରେ ଯେଉଁ ବଙ୍ଗାଳୀ ପରିବାର ରହୁଥିଲେ, ସେମାନେ ଆମକୁ ଖୁବ୍ ଭଲପାଉଥିଲେ । ସେମାନେ ଗୁଡ଼ିଏ ଭାଇ ଭଉଣୀ ଥିଲେ । ଆମ ଘରେ ଚୋର ପଶିଛି ବୋଲି ସେମାନେ ଜାଣିଲାରୁ ସମସ୍ତେ ବାଡ଼ି ଓ ଟର୍ଚ୍ଚ ଧରି ଆସି ଘରର ଅନ୍ଧପନ୍ଧ ଖୋଜିବାକୁ ଲାଗିଲେ । ସେ ରାତିରେ ମୁଁ ଛୁଆଙ୍କୁ ଧରି ଭିତର ବାରଣ୍ଡାରେ ଶୋଇଲି । ଭିତର ବାରଣ୍ଡା ସାମନାରେ ଆମର ସନ୍ତୋଷ ନିମିତ୍ତ ଖୋକା, ଖୁକି ଓ ତାଙ୍କର ଆଉ ଗୋଟିଏ ଦୁଇଟି ଭାଇ ଶୋଇଲେ ।

ଶାସ୍ତ୍ରୀଜୀଙ୍କର ଗୋଟିଏ ବଡ଼ ଅଭ୍ୟାସ ଥିଲା ଯେ, ସେ ଘରକୁ ପ୍ରବେଶ କରିବା ମାତ୍ରେ ଚାରିଆଡ଼କୁ ଦୃଷ୍ଟି ପକାଇ ଏଣେତେଣେ ପଡ଼ିଥିବା ଜିନିଷଗୁଡ଼ିକୁ ଯଥା ସ୍ଥାନରେ ରଖି ଦେଉଥିଲେ । ଏଣେ ତେଣେ ଅଲରା ବାଲରା ହୋଇ ପଡ଼ିଥିବା ଲୁଗାଗୁଡ଼ିକ ଅଲଗୁଣୀରେ ସଜାଡ଼ିକରି ରଖୁଥିଲେ ଏବଂ ଏ'ପଟ ସେପଟ ପଡ଼ିଥିବା ବାସନଗୁଡ଼ିକ ଉଠାଇ ଯଥାସ୍ଥାନରେ ରଖିଦେଇ ତା'ପରେ ସେ ଲୁଗା ପାଲଟୁଥିଲେ । ଯଦ୍ୟପି ତାଙ୍କ ଆସିବା ପୂର୍ବରୁ ଜିନିଷପତ୍ରଗୁଡ଼ିକୁ ଯଥାସ୍ଥାନରେ ସଜାଡ଼ି ରଖିବାଲାଗି ମୁଁ ସର୍ବଦା ସଜାଗ ରହୁଥିଲି, ତଥାପି ଯେମିତ ହେବା କଥା ଠିକ୍ ସେଇପରି ହୋଇ ପାରୁ ନ ଥିଲା । ବିଶେଷତଃ, କୁସୁମର ବହିପତ୍ର ପାଇଁ ମୁଁ ବେଶି ହଇରାଣ ହେଉଥିଲି । ତା'ର କେଉଁ ବହି ଏଠାରେ ପଡ଼ିଥାଏ ତ କେଉଁ ବହି ସେଠାରେ ପଡ଼ିଥାଏ । ଶାସ୍ତ୍ରୀଜୀ ସବୁଗୁଡ଼ିକ ଗୋଟେଇ ଏକାଠି କରନ୍ତି; କିନ୍ତୁ ସେଥିଲାଗି ତାକୁ ( କୁସୁମକୁ ) କିଛି ନ କହି ତା'ର

ଏ ପ୍ରକାର ଅବହେଳା ପାଇଁ ମୋତେ ତାଙ୍କ ଦୋଷ ଦିଅନ୍ତି । ମୁଁ ଅନ୍ୟ ତାଙ୍କୁ କିଛି କହେ ନାହିଁ; କିନ୍ତୁ ବେଳେ ବେଳେ ସେ (ଶାସ୍ତ୍ରୀଜୀ) କାହିଁକି କିଛି ଛୁଆଙ୍କୁ କହୁନାହାନ୍ତି ବୋଲି ତାଙ୍କୁ ଦୋଷ ଦେଲେ, ସେ ନିରୁତ୍ତର ହୋଇଯାଆନ୍ତି । ସେ ପିଲମାନଙ୍କୁ କେବେହେଲେ ଧମକାଚମକା କରନ୍ତି ନାହିଁ । ଯଦି କେବେ ଖୁବ୍ ରାଗିଯା'ନ୍ତି, ତା' ହେଲେ କହନ୍ତି—"ମୋ' ପାଖରୁ ପଳା ! ନଇଲେ ଖୁବ୍ ପିଟିବି !"

ସେ ଥରେ ସେହି ବଦିପଣ ପାଇଁ କୁସୁମକୁ ପଙ୍ଖାରେ ପିଟିଥିଲେ । ମୁଁ ତଳେ ରୋଷେଇ ଘରେ ଥିଲି । ସେ ଉପରେ କୁସୁମ ଉପରେ ରାଗୁଥିଲେ । ତା'ପରେ ପଟ୍ ପଟ୍ ଶବ୍ଦ ଶୁଣାଗଲା । ମୁଁ ଉପରକୁ ଯାଇ ଦେଖେ ତ, ଶାସ୍ତ୍ରୀଜୀଙ୍କ ହାତରେ ପଙ୍ଖାଟିଏ ଅଛି ଓ କୁସୁମ କାନ୍ଦୁଛି । ମୁଁ କୁସୁମକୁ ତଳକୁ ଯିବାଲାଗି କହି ମୁହଁକୁ ତଳକୁ କରି ଚାଲିଆସିଲି । ତହୁଁ ସେ କହିଲେ—"ମୁହଁ କାହିଁକି ଫୁଲେଇଲ, ନିଜେ ମାରିଲେ ତ ଗାଲରେ ଆଙ୍ଗୁଳିଦାଗ ବସିଯାଏ; ସେତେବେଳେ ତ କାହିଁ ମୁଁ ମୁହଁ ଫୁଲାଏ ନାହିଁ ? ମୁଁ ପୁଣି ଆଜି ମାରିଛି ତାକୁ ପଙ୍ଖାରେ ତାଙ୍ଗରେ ବି ନୁହେଁ ! ପଙ୍ଖାରେ ବା କେତେ କଷ୍ଟ ହୋଇଥିବ, ତୁମେ ନିଜେ ଜାଣି ପାରୁଥିବ ।"

ଶାସ୍ତ୍ରୀଜୀଙ୍କର ଆଉ ଗୋଟିଏ ବଡ଼ ଅଭ୍ୟାସ ଥିଲା ଖାଇବାପାଇଁ ଯେତେବେଳେ ବସନ୍ତି, ଗୋଟିଏ ମିନଟ୍ ଡେରି ହେଲେ ସେ ସହି ପାରନ୍ତି ନାହିଁ । ସେ ସମୟରେ କୌଣସି କାରଣ ଦର୍ଶାଇ ତାଙ୍କୁ କେତେ ସମୟ ଅପେକ୍ଷା କରିବାକୁ କୁହାଗଲେ ସେ ଖୁବ୍ ଚିଡ଼ନ୍ତି । ମୁଁ ଏଥିପାଇଁ ବଡ଼ ସତର୍କ ରହୁଥିଲି । ତେଣୁ କେବଳ ରୁଟି ବ୍ୟତୀତ ସନ୍ଧ୍ୟାବେଳରୁ ସବୁ କିଛି ତିଆରି କରି ପ୍ରସ୍ତୁତ ହୋଇ ଯାଉଥିଲି । ସେ ଆସି ଲୁଗାପଟା ପାଲଟି ମୁହଁ ହାତ ଧୋଉଁ ଧୋଉଁ ମୁଁ ଗରମ ରୁଟି ତିଆରି କରିଦିଏ । ଦିନେ ସକାଳୁ ବାହାରକୁ ଯିବାବେଳେ ସନ୍ଧ୍ୟାବେଳକୁ ଶୀଘ୍ର ଖାଇବା ଜିନିଷ ତିଆରି କରି ଦେବା ଲାଗି କହିଗଲେ । କାରଣ ଖାଇସାରି ଶୀଘ୍ର କୌଣସି କାମରେ ତାଙ୍କର ଯିବାର ଥାଏ । ମୁଁ ସେହି ଅନୁସାରେ କାମକଲି । ପ୍ରତିଦିନର ସମୟ ପୂର୍ବରୁ ରୋଷେଇବାସ ପ୍ରସ୍ତୁତ କରିବା ଲାଗି ପରିବା କାଟି, ମସଲା ବାଟି ରଖିଲି । ଏହା ପରେ ଘିଅ ଉପରେ ପାଣି ରଖିବା ପାଇଁ ଚାଲିଗଲି । ଭାବିଲି ଏ କାମ ଶୀଘ୍ର ଶୀଘ୍ର ଶେଷ ହୋଇଯିବ । ପାଣି ଭର୍ତ୍ତି କରି ସାରିଛି କି ନାହିଁ ଶୁଣିଲି, କୁସୁମ ପାଟିକଲା । ହରି ଓ ସୁମନ ଖେଳୁ ଖେଳୁ ଝଣା ଓଟରିରେ ହରି ସିଡ଼ି ଉପରୁ ତଳକୁ ଗଡ଼ି ପଡ଼ିଛି । କୁସୁମର ପାଟି ଶୁଣି ମୁଁ ଶୀଘ୍ର ତଳକୁ ଆସିଲି । ସିଡ଼ି ପାଖରେ ଅନ୍ଧାର; ତଥା ମୋ' ମନର ଭୟ ହେତୁ ମୁଁ କିଛି ଦେଖିପାରିଲି ନାହିଁ । ମୋ' ଗୋଡ଼ ସିଡ଼ିରେ ପଡ଼ିଯାଇଥିବା ହରି ଉପରେ ପଡ଼ିଗଲା । ମୁଁ ହାୟ' କହି ବ୍ୟାକୁଳ ହେବା ସଙ୍ଗେ ସଙ୍ଗେ ତାକୁ ଶୀଘ୍ର ଉଠାଇ ନେଇ "ହେ ରାମ, ମୋ' ପୁଅ

ମରିଗଲା” ବୋଲି ଜୋରରେ ପାଟିକରି ବାହାରକୁ ଦୌଡ଼ିଗଲି । ହରିର ନାକ ଓ ମୁହଁରୁ ରକ୍ତ ବାହାରୁ ଥାଏ । ସେ ବେହୋସ ହୋଇ ଯାଇଥାଏ । ପାଇ ପଡ଼ଶା ଲୋକେ ଆସି ରୁଣ୍ଡ ହୋଇଯାଇ ମୋତେ ଘର ଭିତରକୁ ଘେନ ଆସିଲେ । ହରିକୁ ଖଟିଆ ଉପରେ ଶୁଆଇ ଯେତେ କିଛି ଉପଚାର କରାଯାଇ ପାରେ ସେମାନେ କଲେ । ହରିର ଚେତା ଆସିବା ପରେ ସେ ଶୋଇପଡ଼ିଲା । ମୋତେ କୌଣସି ପ୍ରକାର ଚିନ୍ତା ନ କରିବାକୁ ଉପଦେଶ ଦେଇ ସେମାନେ ସମସ୍ତେ ଚାଲିଗଲେ ।

ଶାସ୍ତ୍ରୀଜୀଙ୍କର ଆସିବା ସମୟ ହୋଇଗଲା । ମୁଁ ରୋଷେଇ କରିବାକୁ ଆସି ତରକାରୀ ଛୁଙ୍କି ପାରିଛି କି ନାହିଁ, ସେ ଆସିଗଲେ । ମୋତେ ଦେଖି ବିରକ୍ତିର ସହିତ କହିଲେ “ବର୍ତ୍ତମାନ ସୁଦ୍ଧା ତୁମର ରୋଷେଇ ସରିନାହିଁ ? ମୋର ବାହାରକୁ ଯିବାକୁ ଅଛି ସେଥିଲାଗି ଆଜି ଶୀଘ୍ର ରୋଷେଇ କରିବା ପାଇଁ ମୁଁ କହିଯାଇଥିଲି ନା ?”

ମୁଁ ଡେରି ହେବାର କାରଣ କହି ଦଅନ୍ତେ ସେ ଲୁଗାପଟା ନ ପାଲଟି ସିଧା କୋଠରୀ ଭିତରକୁ ଯାଇ ହରିକୁ କାଖକରି ଡାକ୍ତର ପାଖକୁ ନେଇଗଲେ । ଆସିବା ପରେ ନିଜର ବିରକ୍ତି ଲାଗି ଖୁବ୍ ପଶ୍ଚାତ୍ତାପ କଲେ । ଏହା ହିଁ ଥିଲା ତାଙ୍କର ସବୁଠାରୁ ବଡ଼ ବିଶେଷତ୍ୱ ।

———

# ଏଗାର

**ଖଣ୍ଡିଏ ଗୋପନୀୟ ପତ୍ର—**

ମୋର ଶିକ୍ଷାଗତ ଯୋଗ୍ୟତା ପ୍ରାୟ ନ ଥିଲା । ମୁଁ ସ୍କୁଲରେ ଶିକ୍ଷା ପାଇ ନ ଥିଲି ଏବଂ ପରେ ଘରେ ରହି ଯାହା କିଛି ପଢ଼ିଥିଲି, ତାହା ରାମାୟଣ ପାଠ କରିବାପାଇଁ କୌଣସି ମତେ ଯଥେଷ୍ଟ ହୋଇଥିଲା । ତାହା ମଧ୍ୟ ବିଶୁଦ୍ଧ ପାଠ ନୁହେଁ, କେବଳ କାମଚଳା ମୁତାବକ ଥିଲା । ପଢ଼ିବାର ଇଚ୍ଛା ଖୁବ୍ ଥିଲେ ସୁଦ୍ଧା, ଆର୍ଥିକ ତଥା ପାରିବାରିକ ପରିସ୍ଥିତିର ସମ୍ମୁଖରେ ଏହା କିପରି ସମ୍ଭବ ହୁଅନ୍ତା ! 'ଈଦ୍‌ଗାହ ରୋଡ଼'ରେ ଘର ନେବା ପରେ, ମୋତେ ମୋର ଇଚ୍ଛା ପୂରଣ କରିବାର ଗୋଟିଏ ଅବସର ମିଳିଲା । ଆମ ଘର ସାମନାରେ ଯେଉଁ ବଙ୍ଗାଳୀ ପରିବାର ରହୁଥିଲେ ତାଙ୍କର ଗୋଟିଏ ବଡ଼ ଝିଅ ପଢ଼ିବାକୁ ଯାଉଥିଲା । ସେ ହିନ୍ଦୀ ମାଧ୍ୟମରେ ପଢ଼ୁଥିବାରୁ ତାକୁ ଖୁବ୍ ଭଲ ହିନ୍ଦୀ ଆସୁଥିଲା । ଦିନେ ମୋର ମନହେଲା; ତାହାରିଠାରୁ କିଛି ହିନ୍ଦୀ ପଢ଼ିଲେ ତ ହୁଅନ୍ତା ! ସେ ମୋର ସୁବିଧା ଅନୁସାରେ ଆସିପାରିବ ଓ ନିଜର ଲୋକ ଭଳି ପଢ଼ାଇ ପାରିବ ! ବାକି ରହିଲା—ତା'ର ଫି'ସ୍‌କଥା, ସେ ବିଷୟରେ ମୁଁ ଚିନ୍ତା କରି ପାରିଥିଲି ।

ମୁଁ ମା'ଙ୍କୁ କହିଲି, ଯେଉଁ ଟଙ୍କା ବାସନ ମାଜିବା ପାଇଁ ଦିଆଯାଉଛି, ତାକୁ ଦିଆ ନଯାଇ ସେହି ଟଙ୍କାକୁ ଫିସ୍ ବାବଦରେ ଦେଲେ ଚଳନ୍ତା ! ଘରର ବାସନକୁସନ ତ ମୁଁ ନିଜେ ସଫା କରି ପାରିବି ।

ଏ କଥା ସବୁ ଭାବି ସାରିବାପରେ, ମୁଁ ଦିନେ ଶାସ୍ତ୍ରୀଜୀଙ୍କୁ ପଚାରିଲି । ଶାସ୍ତ୍ରୀଜୀ ମୋ' ବିଚାରଧାରାରେ ଏକମତ ହେଲେ ସତ; କିନ୍ତୁ ଦିନସାରା ମୋର ପରିଶ୍ରମକୁ ଦେଖି ମୋତେ ଆଉ ଗୋଟିଏ ଅସୁବିଧାରେ ପକାଇବାକୁ କୁଣ୍ଠିତ ହେଲେ । ତଦ୍ୱାରା ମୋର ସ୍ୱାସ୍ଥ୍ୟ ଉପରେ ବିଶେଷ ଚାପ ପଡ଼ି ଭବିଷ୍ୟତରେ ସ୍ୱାସ୍ଥ୍ୟ ନଷ୍ଟ କରାଇବା ଯଥେଷ୍ଟ ସମ୍ଭାବନା ଥିଲା । ତଥାପି ମୁଁ ପଢ଼ିଲି । ଘରର କାମଧନ୍ଦାରୁ ନିବୃତ୍ତି ହେବାପରେ ଯେଉଁ ଟିକିଏ

ସମସ୍ତ ମିଳେ, ସେତିକବେଳେ ନିଜେ ବହି ଖୋଲି ବସେ କିମ୍ବା ସେ ଯେଉଁ କାମ ଦେଇ ଯାଇଥାଏ, ତାକୁ ହିଁ କରେ । ରାତି ଏଗାରଟା ବାରଟା ପରେ ଯେବେ ସମସ୍ତ ମିଳେ, କିଛି ସମୟ ଲେଖାପଢ଼ା କରିସାରି ଶୁଏଁ ।

ନିଜର ମନୋଭାବ ପ୍ରକାଶ ନ ପାରି ଦିନେ ଶାସ୍ତ୍ରୀଜୀ କହିଲେ, "ଆଚ୍ଛା ପାଠ ପଢ଼ିଲ ତୁମେ, ତୁମପାଇଁ ସିନା ଏହା କେବଳ ଶାରୀରିକ କଷ୍ଟ ହେଉଛି; କିନ୍ତୁ ମୋର ତ ମାନସିକ କଷ୍ଟ ବଢ଼ିଲାଣି । ଟିକିଏ ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ଦିଅ ।"

"ସେ କଥା ତ ସତ; କିନ୍ତୁ ପଢ଼ିବା ତ ନିତାନ୍ତ ଆବଶ୍ୟକ, ଅତି କମ୍‌ରେ ଟିକିଏ ଲେଖାଲେଖି ଓ କଥା କହିବାର ଢଙ୍ଗ ଜାଣିସିବା ଦରକାର । ନଇଲେ ଆପଣ ହିଁ ଉପହସିତ ହେବେ ।" ମୋ' ଠାରୁ ଏକଥା ଶୁଣି ସେ ନୀରବ ରହିଲେ ।

ଶାସ୍ତ୍ରୀଜୀ ପୁଣି ଗିରଫ ହୋଇଗଲେ । ଏଥର ତାଙ୍କୁ ମଲକା ଜେଲ୍‌ରୁ 'ଉନ୍ନାଓ' ଜେଲ୍‌କୁ ବଦଳି କରିଗଲା । ଷ୍ଟେସନରେ ସେ ଲୁଗାରେ ଗୁଡ଼ା ହୋଇଥିବା ଖଣ୍ଡିଏ ପତ୍ର ମୋତେ ବଢ଼ାଇଦେଲେ । କାଳେ ମା'ଜୀ ଦେଖିନେବେ, ସେଥିଲାଗି ସେ ଲୁଚାଇକରି ଦେଇଥିଲେ; କିନ୍ତୁ କିଛି ସମୟ ପରେ ରହସ୍ୟ ଖୋଲିଗଲା । ମୁଁ ଜାଣେନା, କିପରି ସେ ଚିଠିଟି ଲୁଗାରୁ ଖସିପଡ଼ିଲା । କାଳେ ତାକୁ ମା'ଜୀ ଉଠାଇନେବେ, ତେଣୁ ଚିଠିଟି ପଡ଼ିସିବାମାତ୍ରେ ଶାସ୍ତ୍ରୀଜୀ "ଆରେ ଦେଖ, ତୁମ ଚିଠି ଖସିପଡ଼ିଲା" ବୋଲି କହି ମୁଁ ନଇଁପଡ଼ିବା ପୂର୍ବରୁ ସେ ଚିଠିଟି ଆଣି ମୋତେ ଧରାଇଦେଲେ ।

ଘରକୁ ଫେରିବା ପରେ ମା'ଜୀ ସାନନଣନ୍ଦଙ୍କ ସହିତ ସେହି ଚିଠି ବିଷୟରେ ଆଲୋଚନା କରି ମୋ'ଠାରୁ ମାଗିନେଇ ପଢ଼ିବାଲାଗି ନଣନ୍ଦଙ୍କୁ କହିଲେ । ମା'ଜୀ ତ ମୋତେ ମାଗିପାରନ୍ତେ ନାହିଁ; କିନ୍ତୁ ସେଥିରେ କ'ଣ କ'ଣ ଲେଖାଥିଲା ତାହା ଜାଣିବାପାଇଁ ସେ ଖୁବ୍ ଆଗ୍ରହ ପ୍ରକାଶ କରିଥିଲେ । ଏ ପ୍ରକାର ଆଗ୍ରହ ହେବା ସ୍ୱାଭାବିକ୍ ମଧ୍ୟ । କାରଣ, ଏପରି କ'ଣ ଗୁପ୍ତକଥା ସେଥିରେ ଲେଖାଥିଲା ଯେ, ଶାସ୍ତ୍ରୀଜୀ ମୋତେ ଲେଖିକରି ଦେଲେ ଏବଂ ବିଶେଷତଃ ଲୁଚେଇ କରି ଦେଲେ । ନଣନ୍ଦ ମୋତେ ଚିଠିଟି ମାଗିଲେ ! ମୁଁ ପ୍ରଥମେ ଦେବାକୁ ଟାଳଟୁଳ କଲି, ପରେ ସେ ଜିଦ୍‌କରି ମାଗିବାରୁ ତାଙ୍କୁ ଦେବାକୁ ପଡ଼ିଲା । ସେ ପତ୍ର ସମ୍ବନ୍ଧରେ ଅନ୍ୟ କିଛି କଳ୍ପନା କରିଥିଲେ; କିନ୍ତୁ ପଢ଼ିବାପରେ ତାଙ୍କ ଆଖି ଛଳ ଛଳ ହୋଇଗଲା । ତାଙ୍କ ଭାଇ ଏଡ଼େ ମହାନ୍ ଓ ବିଚାରବାନ୍ ବ୍ୟକ୍ତି ଥିବାର, ସେ କେବେହେଲେ ସ୍ୱପ୍ନରେ ମଧ୍ୟ କଳ୍ପନା କରି ନ ଥିଲେ । ଚିଠିଟିର ସାରାଂଶ ହେଉଛି—ସାନ ଭଉଣୀର ସୁଖ ସୁବିଧାଲାଗି ଯାହା କିଛି କରିବା

ସମ୍ଭବ, ତାହା କରିବା ଉଚିତ । ସେ କ୍ଷଣକଲାଗି ଏ କଥା ନ ଭାବୁ ଯେ, ସେ ଏ ଘରର ଭାରସ୍ୱରୂପ ହୋଇ ରହିଛି । ତାର ଦୁଇଟି ପିଲାଙ୍କୁ ଆମେ ଆଖିର ପିତୁଳା ପରି ଦେଖିବା ଉଚିତ ।" ମା'ଜୀଙ୍କ ଉଦ୍ଦେଶ୍ୟରେ ଲେଖିଥିଲେ, "ତାଙ୍କର ସେବା ଶୁଶ୍ରୂଷା କରିବା ଆମର ଧର୍ମ । ତାଙ୍କ ଆଶୀର୍ବାଦରେ ହିଁ ଆମର ଜୀବନ ସାର୍ଥକ ହୋଇପାରିବ ।' ପତ୍ରରେ ଆହୁରି ମଧ୍ୟ ଉପଦେଶ ଥିଲା ଯେ, କେତେବେଳେ କ୍ରୋଧବଶତଃ ତାଙ୍କ କଥାରେ ଉତ୍ତର ଦେବା ବା ତାଙ୍କ କଥା ନ ମାନିବା ଅତ୍ୟନ୍ତ ଖରାପ ଓ ଦୁଃଖଦାୟକ ଅଟେ । ଭବିଷ୍ୟତରେ ଏହା ଯେପରି କେବେହେଲେ ନ ଘଟେ ! କ୍ରୋଧ ହିଁ ମଣିଷ ଜୀବନର ବିକାଶପଥରେ ସବୁଠାରୁ ବଡ଼ ପ୍ରତିବନ୍ଧକ ।

# ବାର

**ଦେଶ ସର୍ବ ପ୍ରଥମ—**

ଶାସ୍ତ୍ରୀଜୀ ଜେଲରୁ ଖଲାସ ହୋଇ ଆସିବା ପରେ ଆମ୍ଭେମାନେ କିଛିଦିନ ପରେ ଇଦ୍‌ଗାହରୋଡ଼ରେ ଥିବା ଘର ଛାଡ଼ି ଲକ୍ଷ୍ନୌ ଚାଲିଗଲୁ; କାରଣ ତାଙ୍କୁ ଲକ୍ଷ୍ନୌ ଅଫିସର କାର୍ଯ୍ୟଭାର ଅର୍ପଣ କରାଯାଇଥିଲା । ଲକ୍ଷ୍ନୌରେ ଆମ ସୁଷମାର ମୃତ୍ୟୁ ଘଟିଥିଲା । ସେ ହରି ପରେ ଜନ୍ମ ହୋଇଥିଲା । ସେ ଯେତେବେଳେ ରୋଗରେ ପଡ଼ିଥିଲା, ଶାସ୍ତ୍ରୀଜୀଙ୍କର କାର୍ଯ୍ୟବ୍ୟସ୍ତତା ହେତୁ ତା' ପାଖରେ ଘଣ୍ଟେ ଅଧଘଣ୍ଟେ ବସିବା ପାଇଁ ମଧ୍ୟ ତାଙ୍କୁ ସମୟ ମିଳୁ ନ ଥିଲା । ମୋତେ ଏହା ଦେଖି ଖୁବ୍ ଖରାପ ଲାଗୁଥିଲା । ଦେଶର କାମ ବିଶେଷ ଜରୁରୀ ଥିଲେ ପୁଣି ଏ କାମ ମଧ୍ୟ ଖୁବ୍ ଜରୁରୀ । ଧୀରେ ଧୀରେ ଯେତେବେଳେ ତା'ର ଅବସ୍ଥା ଖୁବ୍ ଖରାପ ହେବାକୁ ଲାଗିଲା, ମୁଁ ନିଜର ମନୋଭାବ ସମ୍ଭାଳି ନ ପାରି ଟିକିଏ କଠୋର ହୋଇ କହିଲି, "ପରିବାର ଓ ପିଲାକବିଲାଙ୍କ ପ୍ରତି କର୍ତ୍ତବ୍ୟ ପ୍ରଥମେ ପୂରଣ ହେବା ଆବଶ୍ୟକ ।" ସେ ମୁଣ୍ଡ ହଲାଇ କହିଲେ, "ତୁମେ ଭୁଲ କହିଲ, ଦେଶପ୍ରତି କର୍ତ୍ତବ୍ୟ ସର୍ବପ୍ରଥମେ ପୂରଣ ହେବା ଉଚିତ, ତା'ପରେ ଅନ୍ୟ ଯାହା କିଛି କରାଯାଇପାରେ !" ତାଙ୍କର ଏପରି ଉତ୍ତରରେ ମୋତେ ଟିକିଏ କଷ୍ଟବୋଧ ହେଲା ସତ; ତଥାପି ମୁଁ ନୀରବ ରହିଲି । ଶାସ୍ତ୍ରୀଜୀ ମୋର ମନୋଭାବ ବୁଝିପାରିଲେ । ମୋର ମନରେ ଆନନ୍ଦ ଦେବା ଉଦ୍ଦେଶ୍ୟରେ ସେ କଥା ବୁଲେଇ ବାଲେଇ କହିଲେ—"ତୁମେ ଦିନସାରା ତା' ପାଖରେ ରହୁଥିବାରୁ ମନେକର ନାହିଁ ଯେ, ତା' ପ୍ରତି ତୁମର ସ୍ନେହ ଅତ୍ୟଧିକ ରହିଛି । ମୋତେ ମଧ୍ୟ କଷ୍ଟ ହେଉଛି । କାମରେ ଅତ୍ୟଧିକ ବ୍ୟସ୍ତ ରହୁଥିଲେ ମଧ୍ୟ ସାରାଦିନ ମୋତେ ତା'ରି ଚିନ୍ତା ଘାରି ରହିଛି; କିନ୍ତୁ କରିବି କ'ଣ ? ଈଶ୍ୱରଙ୍କ ଉପରେ ଭରସା ରଖ, ସବୁ ଠିକ୍ ହୋଇଯିବ ।"

ସୁଷମାର ଅବସ୍ଥା ସୁଧାରିବା ପରିବର୍ତ୍ତେ ଦିନକୁ ଦିନ ଅଧିକ ଖରାପ ହେବାକୁ ଲାଗିଲା । ପରିଶେଷରେ ତା'ର ମୃତ୍ୟୁ ହୋଇଗଲା । ସେ ସେତେବେଳକୁ ମାତ୍ର ଏଗାର ମାସର ହୋଇଥିଲା । କେତେଦିନ ପର୍ଯ୍ୟନ୍ତ ମୁଁ ସବୁବେଳେ କାନ୍ଦିବାକୁ ଲାଗିଲି । ଶାସ୍ତ୍ରୀଜୀ

ମଧ୍ୟ କାନ୍ଦୁଥିଲେ । ମୋତେ ଧୈର୍ଯ୍ୟ ଦେବା ଉଦ୍ଦେଶ୍ୟରେ ସେ ପୁଷ୍ପା ଓ ମୋ' ସମ୍ବନ୍ଧରେ ଗୋଟିଏ କବିତା ତିଆରି କରିଥିଲେ । ଆଜି ସୁଦ୍ଧା ସେ କବିତାରୁ କେତେଧାଡ଼ି ମୋର ମନେଅଛି ।

**ଅନୁବାଦ—**

"ପୁଷ୍ପା ହୋଇଗଲୁ ଅମର ଆମର ସୁନ୍ଦର ଦେଶର ରାଣୀ ।
ଗଳ୍ପ କଥା ଶୁଣୁ କହୁଣୁ ପାଗଳ ବାକି ରହିଗଲା ତୋର କାହାଣୀ ।
କେତେ ଆଦରରେ ପୁଷ୍ପା ଲୋ ତୋତେ କୋଳକୁ ମୁଁ ନେଉଥିଲି ।"

× × × ×

ଗରିବ ଦୁଃଖୀ ଜନନୀକୁ ଛାଡ଼ି ପୁଷ୍ପା ରହିଲୁ କାହିଁ ।
ବାନ୍ଧି ଜଗତେ ସ୍ନେହବନ୍ଧନେ ପୁଣି କମା ଛାଡ଼ି ରହିଲୁ ଯାଇ ॥
ଏହିକି ସତେ ସେ ଜଗତର ଖେଳ ସାରିଗଲୁ ଯାହା ଖେଳ ।
ଜଗତଟା ଖାଲି-ମିଛ ଖେଳଘର ସେ ଲାଗି ଗଲୁ କି ଚାଲି ?

**ମୂଳ ହିନ୍ଦୀ କବିତା—**

ପୁଷ୍ପା ତୁ ବନଗଈ ହମାରୀ ଅମର ଦେଶକୀ ସୁନ୍ଦର ରାନୀ ।
ବାତୀ ବାତ ବତାତୀ ପଗଲୀ ଶେଷ ରହୀ ବସ୍ ଏକ କହାନୀ ॥
ବଡ଼େ ପ୍ୟାରସେ ପୁଷ୍ପେ ତୁଝକୋ ମୈଁ ଅଙ୍କୋମେ ଲେତୀ ଥୀ ।

× × × ×

ମୁଝ ଗରୀବନୀ ଦୁଖିୟା ମାଁକୋ କ୍ୟୋଁ ପୁଷ୍ପେ ତୁ ଛୋଡ଼ ଚଲୀ ।
ପହଲେ ତୋ ବନ୍ଧନ ମେଂ ବନ୍ଧା ଫିର କ୍ୟୋଁ ଇସ୍‌କୋ ତୋଡ଼ଚଲୀ ॥
ସୃଷ୍ଟି ଖେଲ୍ କ୍ୟା ନିଠୁର ଜଗତକା ଅଭୀ ଜୋ ତୁମନେ ଖେଲା ହୈ ।
ସ୍ନେହ କହ ବନ୍ଧନ ତୋଡ଼ ଚଲୀ କ୍ୟା ଜଗ ତୋ ଏକ ଝମେଲା ହୈ ॥

ଲକ୍ଷ୍ନୌରେ ଆଉ କିଛିଦିନ ରହିବା ପରେ ପୁଣି ଶାସ୍ତ୍ରୀଜୀଙ୍କୁ ଏଲାହାବାଦ ଆସିବାକୁ ପଡ଼ିଲା । ଏଥର ଆମକୁ ସାଉଥ୍ ମଲାକା ଅଞ୍ଚଳରେ ଗୋଟିଏ ଘର ମିଳିଲା ଓ ଆମେ ସେଇଠାରେ ରହିଲୁ ।

———

# ତେର

## ବିଚିତ୍ର ସ୍ୱପ୍ନ—

ବିବାହ ପରେ ଯେତେବେଳେ ମୁଁ ପ୍ରଥମେ ରାମନଗରରୁ ଏଲାହାବାଦ ଆସିଲି, ସେତେବେଳେ ମୋ' ପକ୍ଷରେ ସବୁଠାରୁ ବଡ଼ ସମସ୍ୟା ଥିଲା ରୋଷେଇ କରିବା । ରାମନଗରର କୁଳାଚାର ଅନୁସାରେ ବିଦେଶରେ ମାଟିର ଚୁଲି ତିଆରି କରି ରୋଷେଇ କଲେ ଅଶୁଭ ହୁଏ ବୋଲି ଧାରଣା ଥିଲା । ମାଟିଚୁଲିରେ ରୋଷେଇ କଲେ ଏକବର୍ଷ ମଧ୍ୟରେ ପରିବାର ମଧ୍ୟରେ କାହାରି ମୃତ୍ୟୁ ହେବାର ସମ୍ଭାବନା ଅଛି ବୋଲି ଏକ ଅନ୍ଧବିଶ୍ୱାସ ଥିଲା । ତେଣୁ ଉଠାଚୁଲିରେ ରୋଷେଇ କରିବାକୁ ପଡୁଥିଲା । ଅଭ୍ୟାସ ନ ଥିବାରୁ, ତାହା ମୋ' ପକ୍ଷେ ଅତ୍ୟନ୍ତ କଷ୍ଟଦାୟକ ବ୍ୟାପାର ହୋଇଉଠିଲା । ତେଣୁ ଦିନେ ଦିନେ ଡାଲି ପୋଡ଼ିଯାଏ ତ, ଦିନେ ଦିନେ ତରକାରି ପୋଡ଼ିଯାଏ । ଠିକ୍ ଭାବରେ ରୁଟି ମଧ୍ୟ ସେକା ହୁଏ ନାହିଁ । ସେଥିଯୋଗୁଁ ମୋ' ଆଙ୍ଗୁଳିରେ ପ୍ରାୟ ଫୋଟକା ହେଉଥିଲା । କେତେ ମାସ ଏହି ପ୍ରକାର ରୋଷେଇ କରିବାରେ ବିତିଗଲା; କିନ୍ତୁ ଏଥି' ପାଇଁ କି ଉପାୟ ଅବଲମ୍ବନ କରାଯିବ, କିଛି ବୁଦ୍ଧି ଦିଶୁନଥିଲା । ମୁଁ ଯଦିଓ କିଛି କରନ୍ତି, ମା'ଜୀଙ୍କ ପାଇଁ କିଛି କରିପାରେ ନାହିଁ । ଭାବି ଭାବି ଦିନେ ଗୋଟିଏ ଉପାୟ ଚିନ୍ତା କଲି । ମୁଁ ଦିନେ ମା'ଜୀଙ୍କର ଅଜ୍ଞାତରେ ଲୁଚେଇ କରି ଗୋଟିଏ ଶ୍ରେଷ୍ଠ ମାଟିଚୁଲି ତିଆରି କଲି । ତାକୁ ଶୁଖାଇ ସାରି ଦିନେ ମା'ଜୀଙ୍କ ଅନୁପସ୍ଥିତିରେ ସେଥିରେ ଚାରି ଛ'ଟି ପକୋଡ଼ି ତିଆରି କରି ଖାଇଦେଲି । ତା'ପରେ ତାକୁ ଲୁଚାଇ କରି ରଖିଦେଇ ଶିବଙ୍କୁ ପ୍ରାର୍ଥନା କରି କହିଲି—ଯଦି କିଛି ହେବାର ଥାଏ, ତା' ହେଲେ ମୋତେ ହିଁ ସେ ଦଣ୍ଡ ଦିଆଯାଉ । ଯଦି ପ୍ରକୃତରେ ମାଟି ଚୁଲିରେ ରାନ୍ଧିବା ଅପରାଧଜନକ ହୋଇଥାଏ, ତା'ହେଲେ ମୋର ମୃତ୍ୟୁ ହେଉ ! ମୋର ଏ ପ୍ରକାର ଭୁଲପାଇଁ ଅନ୍ୟ କାହାରିକୁ ଦଣ୍ଡ ଦିଆ ନ ଯାଉ । ଏ ପ୍ରକାର ପ୍ରାର୍ଥନା ମୁଁ ପ୍ରାୟ ପ୍ରତିଦିନ କରୁଥିଲି ।

ସମୟ ଗଡ଼ି ଚାଲିଲା; ମାସ ପରେ ମାସ ବିତିଗଲା, ଶେଷରେ ବର୍ଷଟିଏ ମଧ୍ୟ ବିତିଗଲା; କିନ୍ତୁ ଘରେ କିଛି ଦୁର୍ଘଟଣା ଘଟିଲା ନାହିଁ କିମ୍ବା ରାମନଗରରେ କିଛି ଘଟିଲା

ନାହିଁ । ସମସ୍ତେ ମଙ୍ଗଳରେ ଥିଲେ । ଏବେ ମୋତେ କହିବାର ଅବସର ମିଳିଗଲା । ଦିନେ ମା'ଜୀଙ୍କୁ ଚୁଲି ତିଆରି କରିଥିବା କଥା କହିଲି ଏବଂ ଆହୁରି ମଧ୍ୟ କହିଲି ଯେ, ବର୍ଷେ ହେଲା ମୁଁ ତିଆରି କଲିଣି । ରାମନଗର ଲୋକଙ୍କର ଯେଉଁ ଧାରଣା, ତାହା ପ୍ରକୃତରେ ଅନ୍ଧବିଶ୍ୱାସ । ପ୍ରଥମେ ତ ମା'ଜୀ ବିଶ୍ୱାସ କରିପାରିଲେ ନାହିଁ; କିନ୍ତୁ ମୁଁ ଯେତେବେଳେ ଆଣି ତାଙ୍କୁ ଚୁଲିକୁ ଦେଖାଇଲି, ସେ ଅବାକ୍ ହୋଇଗଲେ । ସେ ମୋତେ ମାଟିଚୁଲି ତିଆରି କରିବାଲାଗି ଅନୁମତି ଦେଇଦେଲେ । ତା' ପରେ ମୁଁ ଚୁଲି ତିଆରିକରି କେତେ ଦିନର କଷ୍ଟରୁ ନିଜକୁ ମୁକ୍ତ କଲି । ଏହିପରି ବଡ଼ି ତିଆରି କରିବା ବିଷୟରେ ଆଉ ଗୋଟିଏ ଭ୍ରମ ଧାରଣା ଥିଲା । ବିଦେଶରେ ବଡ଼ି ତିଆରି କରିବା ମନା ଥିଲା । କେବେ କେବେ ରାମନଗରରୁ କିଛି କିଛି ବଡ଼ି ତିଆରି ହୋଇ ଆସୁଥିଲା; କାରଣ ଶାସ୍ତ୍ରୀଜୀଙ୍କୁ ବଡ଼ି ଖୁବ୍ ଭଲଲାଗେ । ଦିନେ ମା'ଜୀଙ୍କୁ ନ ଜଣାଇ ମୁଁ ପଡ଼ୋଶୀଘରୁ ପାଣିକଖାରୁ ମାଗି ଆଣିଲି ଏବଂ ଅନ୍ୟ ମସଲା କୁଟାକୁଟି କରି ବଡ଼ି ତିଆରିକରି ଶୁଖାଇ ରଖିଦେଲି । ବର୍ଷଟିଏ ଗଲା ଉତ୍ତାରୁ ମା'ଜୀଙ୍କୁ ବଡ଼ିତକ ଦେଖାଇଲି । ସେହି ଦିନଠାରୁ ମୋତେ ବଡ଼ି ତିଆରି କରିବାଲାଗି ଅନୁମତି ମିଳିଲା ଏବଂ ଧୀରେ ଧୀରେ ସବୁ ଅନ୍ଧବିଶ୍ୱାସ ଆମଠାରୁ ଦୂର ହୋଇଗଲା ।

ଆମେ ଆସି ସାଉଥ୍ ମଲାକା ମହଲାରେ ରହିବାପରେ ଦିନେ ମୁଁ ଗୋଟିଏ ଜାର୍ କିଣିଲି ଓ ତେଲ ଦେଇ ପାଣିଫଳ ଆଚାର କରି ରଖିଲି । ତେଲଦିଆ ଆଚାର ସମ୍ବନ୍ଧରେ ପୂର୍ବପରି ଅନ୍ଧବିଶ୍ୱାସ ଥିଲା । ସେ ପ୍ରକାର ଆଚାର ବିଦେଶରେ କରାଯିବା ମନା ଥିଲା । ତେଣୁ ମୋ' ମା' ବରାବର ଆଚାର ତିଆରିକରି ଶାସ୍ତ୍ରୀଜୀଙ୍କ ଲାଗି ପଠାଉଥିଲେ । ପ୍ରଥମରୁ ମୋର ଗୋଟିଏ ଅଭ୍ୟାସ ଥିଲା ଯେ, ଶାସ୍ତ୍ରୀଜୀଙ୍କୁ ଯେଉଁ ଜିନିଷ ଭଲଲାଗେ, ସେସବୁ ଜିନିଷ ମୁଁ କୌଣସି ମତେ ତିଆରି କରେ । ପଇସାର ଅଭାବ ସତ୍ତ୍ୱେ ବଲେ ଲାଗି ରହିଥିଲେ ମଧ୍ୟ ମୁଁ ଅଳ୍ପ କିଛି ତିଆରି କରେ । ସେ ଜାର୍‌ଟିକୁ ଉପର ଥାକର ଗୋଟିଏ କୋଣରେ ଘୋଡ଼ାଇକରି ରଖିଦେଇଥାଏ । ସେ ଥାକ ଉପରକୁ କେହି ଯା'ନ୍ତି ନାହିଁ । ମା'ଜୀଙ୍କ ପକ୍ଷରେ ସେଠାକୁ ଯିବା ଆଦୌ ସମ୍ଭବ ନ ଥିଲା । ଯେଉଁ ସମୟରେ ମୁଁ ଆଚାର ତିଆରି କରିଥିଲି, ସେହି ସମୟରେ ଶାସ୍ତ୍ରୀଜୀ କଂଗ୍ରେସ କାମରେ ବନାରସ ଯାଇଥିଲେ । ସେ ଯେଉଁଦିନ ଆସିବାକୁ କହିଯାଇଥିଲେ; ତାଙ୍କ ହିସାବରେ, ଆହୁରି କେତେ ଦିନ ଆଗରୁ ତାଙ୍କର ଆସିବାର ଦିନ ଗଡ଼ି ଯାଇଥିଲା; କିନ୍ତୁ ଆସିବା ତ ଦୂରର କଥା, ଭଲମନ୍ଦ ଖବର ମଧ୍ୟ ମିଳିଲା ନାହିଁ । ସେଥିଲାଗି ମୁଁ ବଡ଼ ଚିନ୍ତାରେ ପଡ଼ିଲି ।

ଦିନେ ମୋର ଏକାଦଶୀ ବ୍ରତ ହୋଇଥାଏ । ପ୍ରାୟ ଦଶଟା ବେଳ ହେବ; ବନାରସରୁ ଗୋଟିଏ ଟେଲିଗ୍ରାମ୍ ଆସି ପହଞ୍ଚିଲା । ବନାରସରେ ଶାସ୍ତ୍ରୀଜୀଙ୍କ ଦେହ ଖରାପ

ହୋଇ ଯାଇଥିଲା । ତେଣୁ କୃଷ୍ଣା ନାମରେ ତାର ଆସିଥାଏ । ତାଙ୍କର ଦେଖାଶୁଣା କରିବାଲାଗି କୃଷ୍ଣାକୁ ଡକରା ଆସିଥାଏ । ଏହା ଶୁଣି ମୋର ପ୍ରାଣ ଛାଡ଼ିଗଲା । ସେହିକ୍ଷଣି ମୁଁ ଉପରକୁ ଯାଇ ତାର୍ ସହିତ ଆଗ୍ରହକୁ ସଡ଼କ ଉପରକୁ ଫିଙ୍ଗିଦେଲି । ଜଣେ ସଚୋଟ କର୍ମକର୍ତ୍ତା ଭାବରେ କଂଗ୍ରେସରେ କାମ କରୁଥିବା ସମୟରେ କୃଷ୍ଣା ଆମର ଘରେ ରହୁଥିଲା । ସେ ଯିବା ସମୟରେ ବନାରସରେ ପହଞ୍ଚି ତାରଦ୍ୱାରା ଅବସ୍ଥା ଜଣାଇ ଦେବାକୁ ମୁଁ ତାକୁ କହିଲି ।

ରାତି କଟିଗଲା, ସକାଳ ହେଲା; କିନ୍ତୁ କୃଷ୍ଣା ପାଖରୁ କୌଣସି ତାର ଆସିଲା ନାହିଁ । ଚିନ୍ତା ଖୁବ୍ ବଢ଼ିଗଲା । ନାନା ପ୍ରକାର ବିଚାର ଆସି ମନକୁ ଭ୍ରମରେ ପକାଇଲା । ପ୍ରାୟ ଏଗାରଟାବେଳେ ବନାରସ୍‌ରେ ଥିବା ମାଉସୀପୁଅ ଧୋଁଲେ ବାବୁ ଆସି ପହଞ୍ଚିଲେ । ସେ ମା'ଜୀଙ୍କୁ ନେଇଯିବାଲାଗି ଆସିଥିଲେ । ସେ ଶାସ୍ତ୍ରୀଜୀଙ୍କ ରୋଗକୁ ନିତାନ୍ତ ସାଧାରଣ ବୋଲି କହି ମୋତେ ସାନ୍ତ୍ୱନା ଦେବାକୁ ଚେଷ୍ଟା କରିଥିଲେ ମଧ୍ୟ ତାହା ହୋଇପାରିଲା ନାହିଁ । ମୁଁ ମଧ୍ୟ ବନାରସ ଯିବାପାଇଁ ପ୍ରସ୍ତୁତ ହେଲି ସତ ମାତ୍ର କେତେକ ଅସୁବିଧା ବଶତଃ ମୋତେ ରହିବାକୁ ବାଧ୍ୟ କରିଗଲା । ପଇସାର ଅସୁବିଧା ଥିଲା ପ୍ରଥମ । ଦ୍ୱିତୀୟ ଅସୁବିଧା ହେଲା ପିଲାମାନଙ୍କପାଇଁ; କାରଣ କୁସୁମ, ସୁମନ ଓ ହରି ଏହି ତିନିଜଣଙ୍କୁ ସରକୁ ପ୍ରସାଦଜୀ ତାଙ୍କ ପୁଅର ଉଠିଆସି ଉତ୍ସବ ( ଜାତ ହୋଇଥିବା ସନ୍ତାନର ବାରଦିନରେ ଯେଉଁ ସ୍ନାନ ତଥା ଅନ୍ୟାନ୍ୟ କାର୍ଯ୍ୟ ହୁଏ ) ଲାଗି ତାଙ୍କ ଗ୍ରାମକୁ ନେଇ ଯାଇଥିଲେ । କେବଳ ମଞ୍ଜୁ ( ଯେ କି ପୁଷ୍ପା ପରେ ଜନ୍ମ ହୋଇଥିଲା ) ମୋ ପାଖରେ ଥିଲା । ତୃତୀୟତଃ ମୋ' ନିଜର ଏକ ପ୍ରଧାନ ଅସୁବିଧା ଥିଲା । ଏକ ପକ୍ଷରେ ଯେପରି ଶାସ୍ତ୍ରୀଜୀଙ୍କୁ ଦେଖିବାକୁ ମନ ଛଟପଟ ହେଉଥିଲା; ଅନ୍ୟ ପକ୍ଷରେ ମୁଁ ନିଜେ ମଧ୍ୟ ବନାରସ ଯିବାଲାଗି ସଙ୍କୋଚ ବୋଧ କରୁଥିଲି; କାରଣ ମୁଁ ଭାବିଲି, ବୋଧହୁଏ ଶାସ୍ତ୍ରୀଜୀ କିଛି ବିଚାର କରି ମୋତେ ନ ଡକାଇ ମା'ଜୀଙ୍କୁ ଡକାଇଛନ୍ତି । ବନାରସରେ ଏପରି କୌଣସି ଅସୁବିଧା ନିଶ୍ଚୟ ଥିବ, ଅନ୍ୟଥା ମୋତେ ନ ଡକାଇବାର ଆଉ କ'ଣ କାରଣ ହୋଇପାରେ ! ଏପରି ଅବସ୍ଥାରେ ମୋର ହଠାତ୍ ଯାଇ ପହଞ୍ଚିବା ଅନୁଚିତ ହୋଇପାରେ ଏବଂ ତାହା ମଧ୍ୟ ଶାସ୍ତ୍ରୀଜୀଙ୍କ ମତ ବିରୁଦ୍ଧ କାର୍ଯ୍ୟ ହୁଅନ୍ତା । ସେହିସବୁ କଥାକୁ ବିଚାର କରି ମୋତେ ଅଟକି ଯିବାକୁ ପଡ଼ିଲା । ହଁ, ଅବଶ୍ୟ ମୁଁ ମା'ଜୀଙ୍କୁ ବନାରସରେ ପହଞ୍ଚି ତୁରନ୍ତ ଟେଲିଗ୍ରାମ୍ କରିବାଲାଗି ବାରମ୍ବାର କହିଥିଲି ।

ଧୋଁଲେ ବାବୁଙ୍କ ସହିତ ମା'ଜୀ ଚାଲିଗଲେ । ସେ ସମୟରେ ଯେ ମୋତେ ସାନ୍ତ୍ୱନାବାଣୀ ଶୁଣେଇ ଥା'ନ୍ତେ, ସେ ମଧ୍ୟ ମୋ'ଠାରୁ ଦୂରେଇ ଗଲେ । ଚିନ୍ତା କରିବା ତଥା କାନ୍ଦିବା ବ୍ୟତୀତ ଅନ୍ୟ କିଛି ଉପାୟ ମୋ' ନିକଟରେ ନ ଥିଲା ।

ଶୁଭ-କାମନା ଅପେକ୍ଷା ମୋ' ମନରେ ଅଶୁଭ ଚିନ୍ତା ବେଶି ମାତ୍ରାରେ ସ୍ଥାନ ପାଉଥିଲା । ଯେକୌଣସିମତେ ଦିନଟି ବିତିଗଲା ।

ରାତି ହେଲା, କିନ୍ତୁ ଯେତେବେଳେ ଭୋକ ଶୋଷ ଲାଗୁ ନ ଥିଲା, ସେତେବେଳେ ନିଦ କାହିଁ ମାଡ଼ନ୍ତା ? ବହୁତ ରାତି ହୋଇଯିବାପରେ କେତେବେଳେ ମୋ' ଆଖି ଲାଗିଗଲା ଏବଂ ମୁଁ ଗୋଟିଏ ଅଦ୍ଭୁତ ସ୍ୱପ୍ନ ଦେଖିଲି—ଗୋଟିଏ ଧଳାଘୋଡ଼ା ଉପରେ ଜଣେ ଦାଢ଼ିଆ ଲୋକ ବସିଛି । ତା' ପଛରେ ଶାସ୍ତ୍ରୀଜୀ ବସିଛନ୍ତି । ଘୋଡ଼ାଟି କିନ୍ତୁ ଆକାଶରେ ଉଡ଼ୁ ନ ଥିଲା; କିନ୍ତୁ ଭୂଇଁରୁ ଚାରିଖଣ୍ଡ ଦି'ଚାରିଖଣ୍ଡ ଉପରକୁ ଉଠି ଚାଲୁଥିଲା । ଯେତେବେଳେ ସେ ଆମ ଦ୍ୱାର ସମ୍ମୁଖକୁ ଆସିଲା, ଶାସ୍ତ୍ରୀଜୀ ସେ ଦାଢ଼ିଆ ଲୋକଟିକୁ କହିଲେ—"କିଛି ସମୟପାଇଁ ଏଇଠାରେ ଅପେକ୍ଷା କରିବାକୁ ପଡ଼ିବ, ମୋ' ସ୍ତ୍ରୀ ଏହି ଘରେ ରହେ, ତାକୁ କହିକରି ମୁଁ ଏହିକ୍ଷଣି ଆସୁଛି ।" ଶାସ୍ତ୍ରୀଜୀ ଭିତରକୁ ଆସି ମୋତେ କହିଲେ—"ଦେଖ, ମୁଁ ଯାଉଛି, ତୁମେ ଖୁସିରେ ରହିବ ! ମୋ' ଚିନ୍ତା କରିବ ନାହିଁ । ଈଶ୍ୱରଙ୍କର ଯାହା ଇଚ୍ଛା ତାହାହିଁ ହୁଏ । ମା'ଙ୍କୁ ଯେପରି କୌଣସି ପ୍ରକାର କଷ୍ଟ ନ ହୁଏ ସେଥିପ୍ରତି ଦୃଷ୍ଟି ଦେଉଥିବ ।" ଏତିକି କହି ଶାସ୍ତ୍ରୀଜୀ ବାହାରକୁ ଚାଲିଯାଇ ଘୋଡ଼ାରେ ବସି ଚାଲିଲେ । ମୁଁ ମଧ୍ୟ ତାଙ୍କ ପଛେ ପଛେ ଦୌଡ଼ି ଦୌଡ଼ି ଆସିଲି ଏବଂ ଘୋଡ଼ାର ଲାଙ୍ଗୁଳ ଧରି ଝୁଲି ପଡ଼ିଲି । ଶାସ୍ତ୍ରୀଜୀ ମୋତେ ପଛକୁ ଫେରିଯିବା ଲାଗି ବାରମ୍ବାର କହୁଥାନ୍ତି; ମାତ୍ର ମୁଁ କହୁଥାଏ ଯେ, ସେ ଯେଉଁଆଡ଼େ ଯିବେ ମୁଁ ମଧ୍ୟ ସେଇଆଡ଼େ ଯିବି । ମୁଁ କୌଣସି ମତେ ତାଙ୍କୁ ଛାଡ଼ିବାକୁ ପ୍ରସ୍ତୁତ ହେଲି ନାହିଁ । ବହୁତ ଦୂରଯାଏ ମୁଁ ଲାଙ୍ଗୁଳ ଧରି ଘୋଷାରି ହୋଇ ଯାଉଥାଏ । ଶେଷକୁ ଶାସ୍ତ୍ରୀଜୀ ବାଧହୋଇ ସେ ଦାଢ଼ିଆ ଲୋକ ପାଖରେ ଆଗକୁ ଯିବାଲାଗି ନିଜର ଅସମର୍ଥତା ପ୍ରକାଶ କଲେ; କିନ୍ତୁ ସେ ଦାଢ଼ିବାଲା ଲୋକଟି କିଛି ଉତ୍ତର ନ ଦେବାରୁ, ସେ ପଛଆଡ଼କୁ ଘୂରି ଘୂରି ଲାଙ୍ଗୁଳ ସାହାଯ୍ୟରେ ତଳକୁ ଓହ୍ଲାଇ ଆସିଲେ । ସେ ତଳକୁ ଆସିଯାଆନ୍ତେ ମୋ' ନିଦ ଭାଙ୍ଗିଗଲା ।

———

# ଚଉଦ

## ତ୍ରିପାଠୀଜୀଙ୍କ ଘରେ—

ପରଦିନ ସକାଳେ ସରଜୂପ୍ରସାଦଜୀ ପିଲାମାନଙ୍କୁ ନେଇ ଫେରି ଆସିଲେ । ତାଙ୍କୁ ସବୁ କଥା କହି ଟଣ୍ଡନଜୀଙ୍କ ନିକଟକୁ ଯିବାକୁ ଅନୁରୋଧ କଲି । ଟଣ୍ଡନଜୀଙ୍କଠାରୁ ଗାଡ଼ିଭଡ଼ା ପାଇଁ କିଛି ଟଙ୍କା ମାଗିବାର ଥିଲା । ତାଙ୍କ ସହିତ ଦେଖାକରି ସବୁ ଖବର ଦେଲି । ସେ ଏ ଖବର ଶୁଣି ବଡ଼ ଚିନ୍ତିତ ହୋଇ, ଆଉ ଗୋଟିଏ ଦିନ ଅପେକ୍ଷା କରିବାପାଇଁ ପରାମର୍ଶ ଦେଲେ ଓ ସେହିକ୍ଷଣି ଗୋଟିଏ ଫେରନ୍ତା ଟେଲିଗ୍ରାମ କରିଦେଲେ । ତାଙ୍କ ମତ ଅନୁସାରେ, ଯଦି ଶାସ୍ତ୍ରୀଜୀଙ୍କ ସ୍ୱାସ୍ଥ୍ୟ ସମ୍ବନ୍ଧରେ ସୁସମ୍ବାଦ ଆସି ପହଞ୍ଚିବ, ତା'ହେଲେ ବନାରସ ଯିବାରେ ଲାଭ ନାହିଁ । ମୋତେ ତାଙ୍କ କଥା ମାନିବାକୁ ପଡ଼ିଲା; କିନ୍ତୁ ମୋ' ପକ୍ଷରେ ସେତେବେଳେ ଗୋଟିଏ ଗୋଟିଏ ମୁହୂର୍ତ୍ତ ଅତିବାହିତ କରିବା ଖୁବ୍ କଷ୍ଟସାଧ୍ୟ ହେଉଥିଲା । ପରଦିନ ନିଜେ ଟଣ୍ଡନ୍‌ଜୀ 'ସାଉଥ୍ ମଲକା' ଆସିଥିଲେ । ସେ ପର୍ଯ୍ୟନ୍ତ ଟେଲିଗ୍ରାମ୍‌ର ଜବାବ୍ ଆସି ନ ଥିଲା । ତାଙ୍କୁ ଦେଖି ହରି କହିଲା—"ଟଣ୍ଡନ ବାବୁ ! ଯଦି ମା' ମୋତେ ବନାରସ ନେଇ ନ ଯା'ନ୍ତି, ତା'ହେଲେ ମୁଁ ଅଣ୍ଡା ଖାଇ ମୁସଲମାନ ହୋଇଯିବି !" ଟଣ୍ଡନଜୀ ତାକୁ କୋଳକୁ ଉଠାଇ ନେଇ ହସି ହସି କହିଲେ—"ବାପା, ମୁସଲମାନ ହୋଇଯିବା ଖରାପ କଥା ନୁହେଁ କିମ୍ବା କେହି ଅଣ୍ଡା ଖାଇଲେ ମୁସଲମାନ ହୋଇ ଯାଏନାହିଁ, ତଥାପି ଅଣ୍ଡା ଖାଇବା ବଡ଼ ଖରାପ କଥା । କେବେହେଲେ ଅଣ୍ଡା ଖାଇବା ଉଚିତ ନୁହେଁ । ତୁମେ ନିଶ୍ଚୟ ବନାରସ ଯିବ, ମୁଁ ବର୍ତ୍ତମାନ ତୁମପାଇଁ ଟିକଟ ମଗେଇ ଦେଉଛି ।" ସେ ସରଜୂ ପ୍ରସାଦଜୀଙ୍କୁ ଡକେଇ, ଫେରନ୍ତା ଟିକଟ ଆଣିବା ଲାଗି ଟଙ୍କା ଦେଲେ ଓ ରାତି ଗାଡ଼ିରେ ଚାଲିଯିବା ଲାଗି କହି ଫେରିଗଲେ । ଶାସ୍ତ୍ରୀଜୀଙ୍କୁ ଦେଖି ଫେରି ଆସିବା ଉଦ୍ଦେଶ୍ୟରେ ହିଁ ସେ ଫେରନ୍ତା ଟିକଟ କିଣାଇଥିଲେ ।

ଷ୍ଟେସନ ଯିବା ଲାଗି ପ୍ରସ୍ତୁତ ହେଉଛୁ, ଏହି ସମୟରେ ବନାରସରୁ କୃଷ୍ଣା ଆସି ପହଞ୍ଚିଲା । ସେ ଆମକୁ ଦେଖି କହିଲା, "ବର୍ତ୍ତମାନ ଆଉ ଯିବା ବେକାର ।" ସେ ତ ଅନ୍ୟ

ଉଦ୍ଦେଶ୍ୟରେ ସେପରି କହିଥିଲି; ମାତ୍ର ସେ ବିଚାରି ଏତେ ସାଦାସିଧା ଲୋକ ଯେ, କେଉଁ ସମୟରେ କି ପ୍ରକାର କଥା କୁହାଯାଏ, ସେ ଧାରଣା ତା'ର ନ ଥିଲା । ତା' କଥା ଶୁଣି କ୍ଷଣକ ପାଇଁ ମୋର ଅବସ୍ଥା ଯାହା ହେବାର ତ ହେଲା; ମାତ୍ର ସରଳୁ ପ୍ରସାଦଙ୍କ ସଙ୍ଗେ ସଙ୍ଗେ ନିଜକୁ ସମ୍ଭାଳି ନେଇ ପୁଣି ପଚାରିବାରୁ, ଆଗ ଅପେକ୍ଷା ଏବେ ଶାସ୍ତ୍ରୀଙ୍କ ସ୍ୱାସ୍ଥ୍ୟ ଭଲ ଅଛି ବୋଲି ସେ କହିଲା । ସେକଥା ଶୁଣି ମନରେ ଦମ୍ଭ ଆସିଲା; କିନ୍ତୁ ଆମ ଯିବା ବନ୍ଦ ହେଲା ନାହିଁ । ଚାରିଟି ପିଲା ଓ ସରଳୁପ୍ରସାଦଙ୍କୁ ସଙ୍ଗରେ ନେଇ ମୁଁ ଷ୍ଟେସନକୁ ଗଲି ।

ପ୍ରାୟ ରାତି ବାରଟାବେଳେ ଗାଡ଼ି ବନାରସରେ ପହଞ୍ଚିଲା । କିଛି ସମୟ ଦୁଆଟାରେ ଷ୍ଟେସନର ଟିକେଟ୍ ବାବୁଙ୍କ ସହିତ ବକ ବକ ଝକ୍‌ଝକ୍‌ରେ କଟିଗଲା । ସେ ହରିର ଟିକେଟ୍ ମାଗିଲେ; କାରଣ ତାଙ୍କ ହିସାବରେ ହରିର ବୟସ ବେଶି । ମୁଁ ଟିକିଏ ବିରକ୍ତ ହୋଇ କହିଲି—"ପିଲା ମୋର, ଆପଣ ବୟସ ଅନୁମାନ କରିବେ ? ଆପଣ ତ ବେଶ୍ ଟିକେଟ୍ କଲେକ୍ଟର ହୋଇଛନ୍ତି ।" ସେ ଟିକିଏ ସଙ୍କୋଚରେ ପଡ଼ିଲେ । ମୁଁ ପିଲାଙ୍କୁ ଧରି ଗେଟ୍ ବାହାରକୁ ଆସିଲି । ନଭେମ୍ବର ମାସ, ରାତି ପ୍ରାୟ ଦୁଇଟା ବାଜିଲାଣି । ମାଉସୀ ଘର ଖୋଜି ଖୋଜି କୌଣସି ସନ୍ଧାନ ପାଇଲୁ ନାହିଁ । ରାତିର ଥଣ୍ଡା ଯୋଗୁଁ ପିଲାମାନେ ଥରିବାକୁ ଲାଗିଲେଣି । ମୋତେ ଦାରାନଗର ମହଲା ବ୍ୟତୀତ ଅନ୍ୟ କୌଣସି ଠିକଣା ଜଣା ନ ଥିଲା । ଦୈବଯୋଗକୁ ଗୋଟିଏ ଘରର ସାମନା ସଡ଼କ ପାଖ ଚଉତରାରେ ଜଣେ ବୁଢ଼ା ଲୋକ ଶୋଇଥିଲେ । ମୁଁ ଧୀରେ ସରଳୁ ପ୍ରସାଦଙ୍କୁ, ସେ ବୁଢ଼ା ଲୋକଟିକୁ "ବାବା" ବୋଲି ସମ୍ବୋଧନ କରି, ତାଙ୍କୁ ଘର ଠିକଣା ସମ୍ବନ୍ଧରେ ନମ୍ରଭାବରେ ପଚାରିବାକୁ କହିଲି । ସରଳୁ ପ୍ରସାଦଙ୍କ ସେହିପ୍ରକାର ପଚାରିଲେ; କାରଣ ସେତେବେଳ ପର୍ଯ୍ୟନ୍ତ ସେ ଯେତେ ଲୋକଙ୍କୁ ଘରର ଠିକଣା ବିଷୟ ପଚାରିଥିଲେ, ତାଙ୍କର ପଚାରିବାର ଢଙ୍ଗ କାନକୁ ଟିକିଏ ଖରାପ ଶୁଣାଯାଉଥିଲା । "ବାବା" ସମ୍ବୋଧନ ଶୁଣି ସେ ବୃଦ୍ଧ ମହାଶୟ ଉଠି ବସିଲେ । ତାଙ୍କୁ ମଉସାଙ୍କ ଘରର ଠିକଣା ଜଣାଥିଲା । ସେ ଘର ଭିତରୁ ଗୋଟିଏ ପିଲାକୁ ଡାକି, ଆମକୁ ଘର ଦେଖାଇ ଦେବାଲାଗି କହିଲେ । ପ୍ରାୟ ରାତି ତିନଟାବେଳେ ଆମେ ମାଉସୀଙ୍କ ଘରଠାରେ ପହଞ୍ଚିଲୁ । ଘରେ ସମସ୍ତେ ଥିଲେ । ସେଠାରେ ପହଞ୍ଚି ବସିବା ପରେ ମା'ଙ୍କ କହିଲେ, "ତୋ'ର ସୌଭାଗ୍ୟରୁ ବଞ୍ଚିଗଲା ବୋହୂ ! ନଇଲେ ବଞ୍ଚିବାର କୌଣସି ଆଶା ନ ଥିଲା । ତିନି ଚାରିଦିନ ପର୍ଯ୍ୟନ୍ତ ନାଡ଼ି ପଡ଼ି ଯାଇଥିଲା । ଡାକ୍ତରମାନେ ଶେଷ ଜବାବ ଦେଇ ସାରିଥିଲେ । ପରମେଶ୍ୱର ହିଁ କୌଣସିମତେ କୂଳରେ ଲଗାଇଲେ । ଏବେ ଆଉ କିଛି ଚିନ୍ତା କରିବାର ନାହିଁ ।" ମୁଁ ମା'ଙ୍କ କଥା ଶୁଣୁଥାଏ ସତ, ମାତ୍ର ମୋର ଆଖି ଶାସ୍ତ୍ରୀଙ୍କୁ ଦେଖିବା ଲାଗି ଏଣେତେଣେ ଘୂରି ବୁଲୁଥାଏ । ତାଙ୍କୁ ଦେଖିବା ଲାଗି ମନ ଛଟପଟ ହେଉଥାଏ ଏବଂ

ନିଜର ଧୈର୍ଯ୍ୟ ଧରିବାର ଶକ୍ତି ସୀମା ବାହାରକୁ ଛୁଟି ଯାଉଥାଏ । ଶେଷରେ ବାଥ୍‌ରୁମକୁ ଯିବା ବାହାନାରେ ମୁଁ ଅଗଣାକୁ ଗଲି ଏବଂ ଶାସ୍ତ୍ରୀଜୀ କେଉଁ କୋଠରୀରେ ଶୋଇଛନ୍ତି, ତାହା ଜାଣିବା ଲାଗି ମାଉସୀଙ୍କ ଝିଅଙ୍କୁ ପଚାରିଲି । ସେ କହିଲା ଔଷଧପତ୍ରର ଉଚିତ ବ୍ୟବସ୍ଥା ଉଦ୍ଦେଶ୍ୟରେ ତାଙ୍କୁ ତ୍ରିପାଠୀଜୀ ( କମଳାପତି ତ୍ରିପାଠୀ )ଙ୍କ ଘରେ ରଖାଯାଇଛି ।

ସକାଳ ହେଲା, ତ୍ରିପାଠୀଜୀଙ୍କ ଘରକୁ ଯିବାଲାଗି ମୁଁ ମା'ଜୀଙ୍କୁ କହିଲି । ମା'ଜୀ କହିଲେ, "ବ୍ରେଷେଇବାସ କରିନଥ, ପୁଣି ସାଙ୍ଗ ହୋଇ ସମସ୍ତେ ଖାଇପିଇ କରି ଯିବା ।" ମୁଁ ମନାକରି କହିଲି—"ଯେ ପର୍ଯ୍ୟନ୍ତ ତାଙ୍କୁ ଥରେ ମାତ୍ର ନ ଦେଖିଛି, ସେ ପର୍ଯ୍ୟନ୍ତ ମୋ' ଦ୍ୱାରା କିଛି ହୋଇପାରିବ ନାହିଁ । ଆଜି ପଞ୍ଚମ ଦିନ ହେଲା; ପାଟିକୁ ଟୋପାଏ ହେଲେ ପାଣି ଦିଆ ଯାଇ ନାହିଁ ! ମୋତେ ପଠାଇବାର ବନ୍ଦୋବସ୍ତ କରାଇ ଦିଅନ୍ତୁ ।" ଘୋଡ଼ାଗାଡ଼ି ଆସିଲା, ମୁଁ ତ୍ରିପାଠୀଜୀଙ୍କ ଘରକୁ ଗଲି । ମୋ' ଖୁଡୁତାଶୁର ସେଇଠାରେ ଥିଲେ । ଯେଉଁ ଘରେ ଶାସ୍ତ୍ରୀଜୀ ଶୋଇଥିଲେ, ସେ ମୋତେ ଆଣି ସେଇ ଘରର ଝରକା ପାଖରେ ଛିଡ଼ା କରାଇଦେଲେ । ମୋ' ବିଷୟରେ ଶାସ୍ତ୍ରୀଜୀଙ୍କୁ କିଛି କହିବା ଲାଗି ମୁଁ ତାଙ୍କୁ ମନା କରିଦେଲି । ଶାସ୍ତ୍ରୀଜୀ ଆଖିବୁଜି ଶୋଇଥିଲେ । ଶ୍ୱଶୁର ମହାଶୟ ଭିତରକୁ ଯାଇ, କ'ଣ ଭାବିଲେ କେଜାଣି, କହିଲେ—"ଆରେ, ଏଲ୍ହାବାଦରୁ ବୋହୂ ଆସିଛନ୍ତି ।" ଶାସ୍ତ୍ରୀଜୀ ଆଖି ଖୋଲି ଏଣେ ତେଣେ ଚାହିଁଲେ । ମୋତେ ବାଧ ହୋଇ ଭିତରକୁ ଯିବାକୁ ହେଲା । ମୁଁ ତାଙ୍କୁ ଦେଖି ହାତ ଯୋଡ଼ିଦେଲି । ସେ କିଛି ସମୟ ଏକ ଦୃଷ୍ଟିରେ ମୋ' ଆଡ଼କୁ ଚାହିଁ ମୋତେ ବସିବାକୁ ସଙ୍କେତ ଦେଲେ । ମୁଁ ବସିପଡ଼ିବାରୁ ଶ୍ୱଶୁର ମହାଶୟ ବାହାରକୁ ଚାଲିଗଲେ । ତା'ପରେ ସେ ( ଶାସ୍ତ୍ରୀଜୀ ) ଧୀରେ ଧୀରେ ସବୁ ହାଲ୍‌ଚାଲ ପଚାରିଲେ । ସରଜୁପ୍ରସାଦଜୀ ସେଠାକୁ ଆସିଲାରୁ ସେ ଟିକଟ ଫେରାଇ ଦେଇ ମୋତେ ଅଟକାଇ ଦେଲେ ।

ଶାସ୍ତ୍ରୀଜୀ ବନାରସରୁ ଏଲ୍ହାବାଦ ଆସିବା ପୂର୍ବରୁ, ଦିନେ ରାମନଗରରେ ରହିବାକୁ ମନସ୍ଥ କରି, ନଦୀଘାଟ ପର୍ଯ୍ୟନ୍ତ ଯାଇଥିଲେ । ସେଠାରେ ସେ ଛାତିରେ ବ୍ୟଥା ଅନୁଭବ କଲେ । ଏତେ ଜୋରରେ ବ୍ୟଥା ହେଲା ଯେ, ସେହିଠାରେ ବେହୋସ ହୋଇଗଲେ । ତାଙ୍କ ସାଙ୍ଗମାନେ ସେହି ଅଚେତ ଅବସ୍ଥାରେ ତାଙ୍କୁ ଦାରାନଗର ନେଇଗଲେ । ସେଠାରେ ତାଙ୍କର ଅବସ୍ଥା ଖୁବ୍ ବିଗିଡ଼ି ଗଲା । ଶେଷକୁ ପାଟି ପଡ଼ିଗଲା । ଔଷଧପତ୍ରର ସୁବ୍ୟବସ୍ଥା ଲାଗି, ତାଙ୍କୁ ପୁଣି ସେଠାରୁ ତ୍ରିପାଠୀଜୀଙ୍କ ଘରକୁ ନିଆଗଲା । କେତେଦିନ ପରେ, ସେ ମୁହଁ ଖୋଲିଲେ ଏବଂ ତାଙ୍କ ସ୍ୱାସ୍ଥ୍ୟ ଭଲଆଡ଼କୁ ଯିବାର ଲକ୍ଷଣ ଜଣାପଡ଼ିଲା ।

ପ୍ରାୟ ଏକମାସ ପର୍ଯ୍ୟନ୍ତ ତାଙ୍କୁ ବନାରସରେ ରହିବାକୁ ପଡ଼ିଲା । ମୁଁ ସିଦ୍ଧପୀଙ୍କ ପାଖରେ ରହୁଥିଲି । ପ୍ରତିଦିନ ସକାଳ ନ'ଟାବେଳେ ତ୍ରିପାଠୀଜୀଙ୍କ ଘରକୁ ଯାଇ ପ୍ରାୟ ରାତି ନ'ଟାବେଳେ ଶାସ୍ତ୍ରୀଜୀଙ୍କୁ ଖୁଆଇ ପିଆଇ ଫେରୁଥିଲି । ସେ ଚଲାବୁଲା କରିବାପରେ ଆମେ ଏଲାହାବାଦ ଚାଲି ଆସିଲୁ । ଖରାଦିନ ହୋଇଯିବାରୁ ଡାକ୍ତରମାନେ ତାଙ୍କୁ କୌଣସି ଏକ ପାହାଡ଼ିଆ ସ୍ଥାନକୁ ଯିବାଲାଗି ପରାମର୍ଶ ଦେଲେ; କିନ୍ତୁ ଟଙ୍କା କୁଆଡ଼ୁ ଆସିବ ? ଶାସ୍ତ୍ରୀଜୀ ତ କାହାରିକୁ ଉଧାର ମାଗିପାରୁ ନ ଥିଲେ, ତେଣୁ ମୁଁ ବଡ଼ ଚିନ୍ତାରେ ପଡ଼ିଲି । ଅନ୍ୟ କୌଣସି ଉପାୟ ନ ଦେଖି କେଉଁଠାରୁ ଉଧାର ଆଣିବା ଲାଗି ତାଙ୍କୁ ବାଧ୍ୟ କଲି । କିଛି ପଇସାର ଯୋଗାଡ଼ ହୋଇଯିବାରୁ 'ରାଣୀକ୍ଷେତ' ଯିବାର ବନ୍ଦୋବସ୍ତ ହେଲା । ପଣ୍ଡିତଜୀ ( ଜବାହାରଲାଲ ନେହରୁ )ଙ୍କ ସେକ୍ରେଟେରୀ ଶ୍ରୀ ଶିବଦତ୍ତ ଉପାଧ୍ୟାୟ 'ରାଣୀକ୍ଷେତ'ର ବାସିନ୍ଦା ଥିଲେ । ତାଙ୍କ ଜରିଆରେ ସେଠାରେ ଶସ୍ତାରେ ଘରଟିଏ ବନ୍ଦୋବସ୍ତ ହୋଇଗଲା । ଯେଉଁଦିନ ଆମେ ଗଲୁ, ସେଦିନ ଶାସ୍ତ୍ରୀଜୀଙ୍କୁ ସାକ୍ଷାତ୍ କରିବାକୁ ଆସିଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ କେହି ଜଣେ ଭଦ୍ରବ୍ୟକ୍ତି ଅଢ଼େଇଶହ ଟଙ୍କା ଦେଇଥିଲେ ।

'ରାଣୀକ୍ଷେତ'ରେ ଆମ ରହିବା ସ୍ଥାନର ଅଳ୍ପ ଦୂରରେ ଅନେକଗୁଡ଼ିଏ ତେନ୍ତୁଳି ଗଛ ଥିଲା । ଦି'ପହରବେଳେ ମୁଁ ପିଲାମାନଙ୍କୁ ନେଇ ସେଠାକୁ ଚାଲିଯାଏ । ଖୋଳପା ଛଡ଼େଇ କରି ମେଞ୍ଚାଏ ତେନ୍ତୁଳି ଆଣେ । ଡାଲି ଅଭାବରେ ସେହି ତେନ୍ତୁଳିକୁ ଅଟାରେ ମିଶାଇ 'କଢ଼ି' ତିଆରି କରି ପିଲାଙ୍କୁ ଦିଏଁ ଓ ମୁଁ ଖାଏ । ପଇସା ଖୁବ୍ କମ୍ ଥିଲା, ତେଣୁ ଏ ପ୍ରକାର ଉପାୟରେ ପଇସା ବଞ୍ଚେଇ ମୁଁ ଶାସ୍ତ୍ରୀଜୀଙ୍କ ଲାଗି ଖାଇବା ପିଇବାର ଭଲ ବନ୍ଦୋବସ୍ତ କରିପାରିଲି । ଶାସ୍ତ୍ରୀଜୀ ପୂର୍ଣ୍ଣ ଆରୋଗ୍ୟ ଲାଭକରି 'ରାଣୀକ୍ଷେତ'ରୁ ଫେରିଲେ ।

ସେହିଦିନଠାରୁ ମୁଁ ଆଉ ତେଲଦିଆ ଆହାର କରିନାହିଁ । ଏବେ ଆଉ ତେଲଦିଆ ଆହାର କଲେ କେତେ, ନ କଲେ କେତେ !!!

---

# ପନ୍ଦର

**କବାଟ ଖୋଲିଲେ ନାହିଁ —**

ଶାସ୍ତ୍ରୀଜୀ ପୁଣି ଦେଶସେବାରେ ଲାଗିଗଲେ । ସେ ସକାଳୁ ଘରୁ ବାହାରିଯା'ନ୍ତି; ପ୍ରାୟ ରାତି ଏଗାରଟା ବାରଟା ପୂର୍ବରୁ ଫେରନ୍ତି ନାହିଁ । ଏତେ ପରିଶ୍ରମ କରୁଥିଲେ ହେଁ, ଘରକୁ ଆସିବା ପରେ ପ୍ରାୟ ଏମିତି ହୁଏ ଯେ, ସେ ଶୋଇବାକୁ ଟିକିଏ ଜାଗା ପା'ନ୍ତି ନାହିଁ । ଆମ ଉଭୟଙ୍କ ଗ୍ରାମରୁ ଏତେ ଭାଇବନ୍ଧୁ, ସାହିପଡ଼ିଶା ଆସନ୍ତି ଯେ, ଖଟିଆ ଓ ବିଛଣା ତ ଦୂରର କଥା, ବେଳେ ବେଳେ ଚଟାଇ ମଧ୍ୟ ଶୋଇବା ଜାଗାରେ ମିଳେନାହିଁ । ସେ ଅନେକ ଥର ଶୀତଦିନରେ ମଧ୍ୟ ପାହାଚ ପାଖରେ କୁକୁରିକାକୁରି ଗୁଦର ଖଣ୍ଡିଏ ଘୋଡ଼ିହୋଇ ଶୋଇ ପଡ଼ନ୍ତି । ମୁଁ ଅନେକ ବୁଝାଏ; ମାତ୍ର ସେ କେବେହେଲେ ମୋ' କଥା ଶୁଣନ୍ତି ନାହିଁ । ଘରେ ଯାହାକିଛି ବିଛଣା ଥାଏ, ସେ ଅତିଥିମାନଙ୍କ ଲାଗି ବିଛାଇ ଦିଅନ୍ତି । ନିଜେ ଓ ନିଜ ପିଲାପିଲି ପଛେ ସାରାରାତି ଶୀତରେ କମ୍ପୁଥାନ୍ତୁ; କିନ୍ତୁ ଅତିଥିମାନଙ୍କର ସୁଖ ଓ ସମ୍ମାନରେ ସେ କୌଣସି ପ୍ରକାର ଅସୁବିଧା କରନ୍ତି ନାହିଁ । ସେ ଆଜୀବନ ଏହି ଆଦର୍ଶକୁ ପାଳନ କରୁଥିଲେ ।

ସେ ପଣ୍ଡିତଜୀ ( ଜବାହାରଲାଲଜୀ ) ପାଖରେ ବସି ଚିଠିପତ୍ରର ଉତ୍ତର ଲେଖିବା, ତଥା ପାର୍ଟିର ଅନ୍ୟ କେତେକ ବିଷୟରେ ଲେଖାଲେଖି କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ କାମ କରୁଥିଲେ । କାମର ଆଧିକ୍ୟ ଦୃଷ୍ଟିରୁ ଅଧିକାଂଶ ଦିନ ତାଙ୍କୁ ପଣ୍ଡିତଜୀଙ୍କ ସହିତ ଭୋଜନ କରିବାକୁ ପଡ଼ୁଥିଲା । ମୁଁ କାଳେ ଅପେକ୍ଷା କରି ବସି ରହିବି, ସେଥିଲାଗି ସେ କୌଣସି ଲୋକଦ୍ୱାରା ଖବର ପଠାଇ ଦେଉଥିଲେ । ଏମିତି ବି କେତେଥର ଘଟିଛି, ଖବର ଦେବା ଲୋକ ଖବର ଦେବାକୁ ଭୁଲିଯାଏ । ତା' ଫଳରେ ମୋତେ ଦିନମାନ ଖାଡ଼ା ଖାଡ଼ା ଉପାସ ରହିଯିବାକୁ ପଡ଼େ । ଦିନକର ଘଟଣା, ସେ ଖବର ପଠାଇ ପାରିଲେ ନାହିଁ କିମ୍ବା ମୋତେ କୌଣସି ପ୍ରକାରେ ତାଙ୍କ ଖବର ମିଳିଲା ନାହିଁ । ସାରାଦିନ ବିତିଯାଇ ରାତି ହେଲା । ମୋତେ ଖୁବ୍ ଭୋକ ଲାଗିଲା; କିନ୍ତୁ ଯେପର୍ଯ୍ୟନ୍ତ

ସେ ନ ଆସିଛନ୍ତି, ମୁଁ ବା କପରି ଜୋଗେଇ ସାରି ଖାଇଦଅନ୍ତି ! କେବଳ ରୁଟି ସେକବା ବ୍ୟତୀତ ଅନ୍ୟ ସବୁ କିଛି ରାନ୍ଧିଦେଲି । ରାତି ଏଗାରଟା ପର୍ଯ୍ୟନ୍ତ ଶାସ୍ତ୍ରୀଜୀ ଆସିଲେ ନାହିଁ । ଶୋକ ଓ ଦିନସାକର ଉପବାସ ଫଳରେ ମୋତେ ନିଦ ମାଡ଼ିଲା । ମୁଁ ଖଟିଆ ଉପରେ ଟିକିଏ ଗଡ଼ିପଡ଼ିଲି । ଖଟିଆ ଧରିବାମାତ୍ରେ ମୋତେ ନିଦ ଆସିଗଲା । ମୁଁ ଆଖିବୁଜି ଶୋଇପଡ଼ିଲି ।

ପ୍ରାୟ ରାତି ଅଢ଼େଇଟା ଘଣ୍ଟାବେଳେ ମୋ' ନିଦ ଭାଙ୍ଗିଗଲା । ତା'ପରେ ଶାସ୍ତ୍ରୀଜୀଙ୍କ ପାଇଁ ଚିନ୍ତା ଆସି ମୁଣ୍ଡରେ ପଶିଲା । କୁଆଡ଼େ ଗଲେ, କେଉଁଠି ରହିଲେ, ଆସିଲେ ନାହିଁ କାହିଁକି ଆଦି ଅନେକ କଥା ଭାବିବାକୁ ଲାଗିଲି । ବସି ଚିନ୍ତା କରୁ କରୁ ରାତି ପାହିଗଲା । ପ୍ରାୟ ସକାଳ ଛ'ଟାବେଳକୁ ପୁଣି ବାହାର କବାଟର କଳିଣି ଖଟ୍ ଖଟ୍ ହେଲା । ଶାସ୍ତ୍ରୀଜୀ ଖଡ଼୍ ଖଡ଼୍ କରୁଥିଲେ । ମୁଁ ଦ୍ୱାର ଖୋଲିବା ମାତ୍ରେ କହିଲି, "ଧନ୍ୟ ତୁମେ, ଖାଇବା ଶିକା ମାରିଦେଲଣି ।" ମୋ କଥା ମଝିରେ ସେ ହଠାତ୍ କହିଲେ, "ରଖ ରଖ ତୁମ କଥା; ତୁମେ ଏମିତି ପତିବ୍ରତା ଯେ, ମୋତେ ସାରା ରାତି ପରଘରେ ଶୁଆଇଲ ।" ଏତିକ କହି ସେ ଉପରକୁ ଚାଲିଗଲେ । ମୁଁ ତାଙ୍କ କଥା ଶୁଣି ଅବାକ୍ ହୋଇ ରହିଗଲି । ମୁହଁହାତ ଧୋଇ ସାରିବା ପରେ, ମୁଁ ତାଙ୍କୁ ପଚାରିବାରୁ ସେ କହିଲେ ଯେ, ରାତିରେ ଅନେକ ସମୟ ପର୍ଯ୍ୟନ୍ତ ସେ କଳିଣି ଖଟ୍ ଖଟ୍ କଲେ ଓ ଡାକଲେ; ଶେଷକୁ ଅନ୍ୟ ଲୋକମାନେ ମଧ୍ୟ ଡାକଲେ । ତଥାପି ମୋର ନିଦ ଭାଙ୍ଗିଲା ନାହିଁ । ତେଣୁ ସେ ଯାଇ ବିଶ୍ୱମ୍ଭର ପାଣ୍ଡେଙ୍କ ପ୍ରେସରେ ବାଧ୍ୟ ହୋଇ ଶୋଇଲେ । ଏହା ଶୁଣି ମୁଁ ବଡ଼ ପଶ୍ଚାତ୍ତାପ କଲି । ନିଜ ଉପରେ ମୋର ରାଗ ହେଲା । ତାଙ୍କଠାରୁ ଦ୍ୱିପ୍ରହରବେଳେ କିଛି ଖବର ନ ପାଇବାରୁ ମୁଁ ଦିନସାରା ଉପାସ ରହିଥିଲି ବୋଲି ସେ ଯେମିତି ଜାଣିଲେ, ଖୁବ୍ ଦୁଃଖ ପ୍ରକାଶ କଲେ ।

ଏସବୁ ତ ହେଲା; କିନ୍ତୁ ମୁଁ ମୋର ପଶ୍ଚାତ୍ତାପ ଲାଗି ଆଉ କିଛି ପ୍ରାୟଶ୍ଚିତ୍ତ ମଧ୍ୟ କଲି । ମୁଁ ନିଜକୁ ବାରମ୍ବାର ଧିକ୍କାର କରିବା ସଙ୍ଗେ ସଙ୍ଗେ ପ୍ରତିଦିନ ରାତିରେ ଆଖିରେ ଶୋରିଷ ତେଲ ଲଗାଇଲି । ଏଥିରେ ଦୁଇ ପ୍ରକାର ଲାଭହେଲା । ନିଜକୁ ଦଣ୍ଡ ତ ମିଳିଲା, ଆଉ ନିଦ ବି ଲାଗିଲାନାହିଁ । କିଛିଦିନ ପରେ ସୋରିଷ ତେଲ ଶିଶି ଉପରେ ତାଙ୍କ ଦୃଷ୍ଟି ପଡ଼ିଲାରୁ ସେ ପଚାରିଲେ—"ଏଠାରେ ସୋରିଷ ତେଲ କାହିଁକି ରଖିଛ ?" "ଏମିତି" ମୁଁ ପ୍ରକୃତ କଥା ଲୁଚାଇବାକୁ ଚାହୁଁଥିଲି । ଠିକ୍ ସେତିକିବେଳେ ସୁମନ କହିଲା—"ବାପା ! ମା' ଝା'କୁ ଆଖିରେ ଲଗାଉଛି ।" ସେ ମୋ' ଆଡ଼କୁ ଚାହିଁ ପଚାରିଲେ—"ତୁମ ଆଖିରେ କ'ଣ ହୋଇଛି କି ?"

'ନା'

"ତା'ହେଲେ ଏ ତେଲ କାହିଁକି ଆଖିରେ ପକାଉଛ ?"

ବାଧହୋଇ ସବୁ କଥା କହିବାକୁ ପଡ଼ିଲା । ଶାସ୍ତ୍ରୀଜୀ କିଛି ସମୟ ନୀରବ ରହି କହିଲେ, "ବାସ୍ତବିକ ମୁଁ ତୁମ ଉପରେ ଅତ୍ୟାଚାର କରୁଛି ! ଆଜିଠାରୁ ମୁଁ ବାହାରେ ତାଲା ବନ୍ଦ କରିଦେଇ ଯିବି । ଯେତେବେଳେ ମୁଁ ଆସେନା କାହିଁକି, ମୁଁ ମୋର ତାଲା ଖୋଲି ଘରକୁ ଆସିଯିବି ।"

ସେମିତି ତାଲାବନ୍ଦ କରି ସେ ଗଲେ । ଦୁର୍ଭାଗ୍ୟବଶତଃ, ସେହି ସମୟରେ ଗୋଟିଏ ବଙ୍ଗାଳୀ ମହାଶୟଙ୍କ ଘରୁ ସେହି ଧରଣର ବାହାର ତାଲା ଖୋଲି ସବୁ ଜିନିଷ ଚୋର ବୋହିନେଲା । ଘର ଭିତରେ ଶୋଇଥିବା ଲୋକେ କିଛି ଜାଣିପାରିଲେ ନାହିଁ । ସେହିଦିନଠାରୁ ସେପରି ଭାବରେ ତାଲା ପକାଇବା ଲାଗି ମୁଁ ବାରଣ କଲି । କାରଣ, ଘରେ ଯାହା ବା ଥାଳି ଗିନା ଦି'ଖଣ୍ଡ ଥିଲା, ସେତକ ମଧ୍ୟ ହାତରୁ ଚାଲି ଯାଇଥା'ନ୍ତା । ଏହି ଘଟଣାର କେତେ ମାସ ପରେ ଶାସ୍ତ୍ରୀଜୀଙ୍କୁ ପୁଣି ଗିରଫ କରାଯାଇ ନୈନି ଜେଲ୍‌କୁ ପଠାଗଲା ।

---

# ସମ୍ମୋହନ

## ପୁଲିସ ଆଖିରେ ଧୂଳି—

ଶାସ୍ତ୍ରୀଜୀ ଜେଲରୁ ଖଲାସ ହୋଇ ଆସିଲେ; ମାତ୍ର ସମଗ୍ର ଦେଶରେ ଯେଉଁ ସରଗରମ ଆବହାଓ୍ୱା ଥିଲା; ସେଥିରୁ ଭଲଭାବରେ ଜଣାପଡ଼ୁଥିଲା ଯେ, ଶୀଘ୍ର କୌଣସି ବଡ଼ ଧରଣର ବିସ୍ଫୋଟ ହେବ । ତେଣୁ ଶାସ୍ତ୍ରୀଜୀ ସବୁବେଳେ ଖୁବ୍ ବ୍ୟସ୍ତ ରହୁଥିଲେ । ତାଙ୍କର ସେ ପ୍ରକାର ବ୍ୟସ୍ତତାରୁ ମୋର ସନ୍ଦେହ ଆହୁରି ଦୃଢ଼ୀଭୂତ ହୋଇଥିଲା । ତା'ପରେ ବମ୍ବେରେ କଂଗ୍ରେସର ବୈଠକ ବସିଲା ଏବଂ ଗାନ୍ଧିଜୀ 'ଭାରତ ଛାଡ଼' ଆହ୍ୱାନ ଜଣାଇଲେ । ଜାତୀୟ ଆନ୍ଦୋଳନ-ରୂପକ ଲେଲିହାନଶିଖାର ଅଗ୍ନିକଣିକା ଚାରିଆଡ଼କୁ ବ୍ୟାପିଗଲା । ନେତାମାନେ ଜଣକ ପରେ ଜଣେ ଗିରଫ ହେବାକୁ ଲାଗିଲେ । ଯେଉଁମାନଙ୍କ ଉପରେ ଅନ୍ୟାନ୍ୟ କାର୍ଯ୍ୟଭାର ଅର୍ପଣ କରାଯାଇ ଥିଲା ସେମାନଙ୍କୁ ସେହି କାର୍ଯ୍ୟର ପୂର୍ଣ୍ଣତା ହାସଲ ଲାଗି ଗିରଫ ହେବାକୁ ପଡ଼ୁଥିଲା । ଶାସ୍ତ୍ରୀଜୀଙ୍କୁ ଲୁଚିବାକୁ ପଡ଼ିଲା । ସେ ବେଶ ବଦଳାଇ ଲୁଚିଛପି ଯେ କୌଣସି ପ୍ରକାରେ ଏଲାହାବାଦ ଆସିଲେ । ଅଲଗୁରିସ୍ତ ଶାସ୍ତ୍ରୀ ସ୍ତ୍ରୀ ବେଶ ହୋଇ କାଖରେ ପିଲା ବଦଳରେ ଗୋଟିଏ ତକିଆ ଧରି ଲୁଚି ଥିଲେ । କେତେଦିନ ପରେ ଜଣେ ଭଦ୍ରଲୋକ ସନ୍ଧ୍ୟା ସମୟରେ ଘରକୁ ଆସି ମୋତେ ଶାସ୍ତ୍ରୀଜୀଙ୍କ ନିକଟକୁ ଯିବାକୁ କହିଲେ । ମୋତେ ତାଙ୍କ ପାଖକୁ ନେଇଯିବା ଲାଗି ଶାସ୍ତ୍ରୀଜୀ ତାଙ୍କୁ ପଠାଇଥିଲେ । ଶାସ୍ତ୍ରୀଜୀ ଜଣେ ପୁଲିସ ଅଫିସରଙ୍କ ଘରେ ଲୁଚିକରି ଥିଲେ । ମୁଁ ସେ ଭଦ୍ରଲୋକଙ୍କ କଥାରେ ବିଶ୍ୱାସ କରିଥିଲେ ହେଁ, ତାଙ୍କୁ ନିବେଦନ କରି କହିଲି—"ଆପଣ ଶାସ୍ତ୍ରୀଜୀଙ୍କଠାରୁ ଖଣ୍ଡିଏ ଚିଠି ଲେଖି ଆଣିଥିଲେ ଖୁବ୍ ଭଲ ହୋଇଥା'ନ୍ତା ! ବିନା ଚିଠିରେ ମୋର ଯିବା ଉଚିତ ହେବ ନାହିଁ । ମୋର ଅନୁରୋଧ ଆପଣ କିଛି ଖରାପ ଭାବିବେ ନାହିଁ ।"

ସେ ଫେରିଗଲେ ଏବଂ କିଛି ସମୟ ପରେ ଶାସ୍ତ୍ରୀଜୀଙ୍କଠାରୁ ଖଣ୍ଡିଏ ଚିଠି ଲେଖାଇ ଆଣିଲେ । ଚିଠି ପାଇବା ପରେ ମୋର ଭ୍ରମ ଦୂର ହୋଇଗଲା । ମୋତେ ଏକୁଟିଆ ଯିବାଲାଗି ଶାସ୍ତ୍ରୀଜୀ ଲେଖିଥିଲେ; କିନ୍ତୁ ମୁଁ ଯିବାକୁ ବାହାରିଲାରୁ ପିଲାମାନେ

ଯିବାକୁ ପ୍ରସ୍ତୁତ ହୋଇସାରି ପାଚିରୁଣ୍ଡ କଲେ । ମୁଁ କୁଆଡ଼େ ଯାଉଛୁ ବୋଲି ସେମାନେ ଜାଣିବାକୁ ଚାହିଁଲେ । ମୁଁ ବଡ଼ ଅସୁବିଧାରେ ପଡ଼ିଲି । ସେମାନଙ୍କୁ ସାଥିରେ ନେଇ ଯିବା ଯେପରି ଅସୁବିଧା, ନ ନେଇଥିଲେ ତା'ଠାରୁ ଅଧିକ ଅସୁବିଧାଜନକ ଥିଲା । ପିଲମାନଙ୍କୁ ନ ନେଇ ମୁଁ ଏକୁଟିଆ ଗଲେ ପାଖ ପଡ଼ଶା ଲୋକଙ୍କର ସନ୍ଦେହ ହୁଅନ୍ତା ! ଶେଷକୁ ପିଲାମାନଙ୍କୁ ସଙ୍ଗରେ ନେଇ ଯିବାକୁ ସ୍ଥିର କଲି । ଯେ ନେବାକୁ ଆସିଥିଲେ, ସେ ମୋ' ସହିତ ଏକମତ ହେଲେ । ବାହାରକୁ ଯାଇ ଗୋଟିଏ ଘୋଡ଼ାଗାଡ଼ିରେ ବସିଲୁଁ । ମୁଁ ସେଠାରେ ପହଞ୍ଚି ଶାସ୍ତ୍ରୀଜୀଙ୍କୁ ଜଣେ ଦୁ'ଜଣ ଲୋକଙ୍କ ସହିତ କଥାବାର୍ତ୍ତା କରୁଥିବାର ଦେଖିଲି । ସେ ଲୋକମାନଙ୍କୁ ମୁଁ ଚିହ୍ନି ନ ଥିଲି । ଶାସ୍ତ୍ରୀଜୀ ମା'ଜୀ ଓ ଗାଁର ହାଲଚାଲ ପଚାରିଲେ । ତା'ପରେ ମୋ' ସ୍ୱାସ୍ଥ୍ୟର ଅବସ୍ଥା ବିଷୟ ପଚାରି କହିଲେ—"ମୁଁ ଡାକ୍ତରବାବୁଙ୍କୁ କହି ପଠାଇଛି, ସେ ଆଜି ରାତିରେ କୌଣସି ସମୟରେ ଆସିବେ । ତାଙ୍କୁ ଦେଖାଇବା ଲାଗି ତୁମକୁ ଡକାଇଥିଲି । ତା'ପରେ ତାଙ୍କର ପରାମର୍ଶ ଅନୁସାରେ ତୁମେ ଔଷଧ ବ୍ୟବସ୍ଥା କରିବ । ଆଜି ରାତିରେ ତୁମକୁ ଏଠାରେ ରହିବାକୁ ପଡ଼ିବ ।"

ମୋତେ ସେଠାରେ ରହିବାକୁ ପଡ଼ିବ ବୋଲି ଶୁଣି ବସିଥିବା ଭଦ୍ରବ୍ୟକ୍ତିମାନେ ଶୀଘ୍ର କଥାବାର୍ତ୍ତା ସାରି ଚାଲିଗଲେ । ଶାସ୍ତ୍ରୀଜୀ କବାଟ ବନ୍ଦ କରିଦେଇ ଖଣ୍ଡିଏ ଗୋପନୀୟ କାଗଜ ବାହାର କଲେ । ସେହି କାଗଜଟିକୁ ମିର୍ଜାପୁରର ଜଣେ ଭଦ୍ରବ୍ୟକ୍ତିଙ୍କୁ ଦେଇଦେବାକୁ ନିର୍ଦ୍ଦେଶ ଦେଇ କହିଲେ—"ସେ ଏ କାଗଜଟିକୁ ଛପେଇ ଯେତେ ପାରିବେ ସେତେ, ଜନସାଧାରଣଙ୍କ ମଧ୍ୟରେ ବାଣ୍ଟି ଦେବେ । ମୁଁ ଏଇଥିପାଇଁ ତୁମକୁ ଡକାଇଥିଲି । ପରଦିନ ମୁଁ ଗିରଫ ହୋଇଯିବି । ତା' ପରଦିନ ତୁମେ ମିର୍ଜାପୁର ଚାଲିଯିବ । ଏ କାମଟି ଅତି ଜରୁରୀ । ତେଣୁ ଅତ୍ୟନ୍ତ ସାବଧାନତାର ସହିତ ଏହି କାଗଜ ଖଣ୍ଡିକ ତାଙ୍କ ପାଖରେ ପହଞ୍ଚାଇ ଦେବ ।" ତା'ପରେ ମୁଁ ପଚାରିଲି—"ଆପଣ ମା'ଜୀଙ୍କ ସହିତ ସାକ୍ଷାତ୍ କରିବେ ନାହିଁ ?"

"କାଲି ସନ୍ଧ୍ୟାବେଳକୁ ଆସିବାକୁ ଚେଷ୍ଟା କରିବି । ଯଦି ଆସିପାରେ ତ ଭଲ, ନଇଲେ କିଛି ଚିନ୍ତା କରିବ ନାହିଁ । ପହିରଦିନ ମୁଁ 'ଘଣ୍ଟା ଘର' ସାମନାରେ ଭାଷଣ ଦେଇ ସେହିଠାରେ ଗିରଫ ହୋଇଯିବି ।"

ମୁଁ କାଗଜଟିକୁ ସାଇତି ରଖିଦେଲି । ପରଦିନ ରାତିରେ ଶାସ୍ତ୍ରୀଜୀ 'ସାଉଥ୍ ମଲକା' ଆସିଲେ । ପୂର୍ବରୁ ତାଙ୍କର ସମସ୍ତ ପ୍ରକାର ବନ୍ଦୋବସ୍ତ ହୋଇ ସାରିଥିଲା । ତାଙ୍କର 'ଘଣ୍ଟା ଘର' ନିକଟରେ ଭାଷଣ ଦେବାର ଥିଲା । ତେଣୁ ସେ ଯେପରି ପୋଲିସ-ମାନଙ୍କ ବିନା ବାଧାରେ ସେଠାରେ ପହଞ୍ଚି ପାରିବେ ସେଥିଲାଗି ଗୋଟିଏ ଉପାୟ ସ୍ଥିର କରିଥିଲେ । ତାଙ୍କ ଭାଷଣ ଉଦ୍ଦେଶ୍ୟରେ ଯେଉଁ କାଗଜ ବଣ୍ଟା ଯାଇଥିଲା, ସେଥିରେ

ସ୍ଥାନର ନାମ 'ମହମ୍ମଦଅଲ୍ଲି ପାର୍କ' ବୋଲି ଲେଖା ଯାଇଥିଲା; କିନ୍ତୁ କାଗଜ ବାଣ୍ଟିବା ଲୋକଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା ଯେ, ସେ କାଗଜ ବାଣ୍ଟିବାବେଳେ ଲୋକମାନଙ୍କୁ ଚୁପ୍‌ଚାପ୍ ମହମ୍ମଦଅଲ୍ଲି ପାର୍କ ପରିବର୍ତ୍ତେ 'ଘଣ୍ଟାଘର' ବୋଲି କହି ଦେବେ । ଶାସ୍ତ୍ରୀଜୀଙ୍କର ଏ ଚାଲିକା ସଫଳ ହେଲା । ପୁଲିସ ଅଧିକାରୀମାନଙ୍କୁ ଅସଲ କଥାର ଆଭାସ ମିଳିଲା ନାହିଁ । ଶାସ୍ତ୍ରୀଜୀ ଯେପରି ସହଜରେ 'ମହମ୍ମଦଅଲ୍ଲି ପାର୍କ'ରେ ପହଞ୍ଚି ଭାଷଣ ଦେଇ ନ ପାରିବେ, ସେଥିଲାଗି ସେମାନେ ପାର୍କର ଚାରିପଟେ ପୁଲିସ ଫଉଜ ଜଗାଇଥିଲେ । ସମଗ୍ର ସହରରେ ଉତ୍ତେଜନା ଖେଳିଯାଇଥିଲା । ତେଣୁ ଲାଠି ଓ ଗୁଳି ଚାଳନାର ଆଶଙ୍କା ମଧ୍ୟ କରାଯାଉଥିଲା ।

## ଗୁଳ ମୋ' ଉପରେ ବାବୁ—

ଏଣେ ଶାସ୍ତ୍ରୀଜୀ 'ଘଣ୍ଟା ଘର' ଯିବାଲାଗି ପ୍ରସ୍ତୁତ ହେଉଥିଲେ । ତେଣେ ମୁଁ ଅନ୍ୟ ଏକ କୋଠରୀରେ ବସି କାନ୍ଦୁଥିଲି । ମୋ' ଆଖିରେ ଲୁହ ଦେଖି ସୁମନ ଯାଇ ଶାସ୍ତ୍ରୀଜୀଙ୍କୁ କହିଲା—"ବାବୁଜୀ ! ଆପଣ ମା' ଉପରେ ବିରକ୍ତ ହେଲେ କି ?"

"କାହିଁକି ?"

"ସେ ଆର ଘରେ ବସି କାନ୍ଦୁଛି ।"

ଶାସ୍ତ୍ରୀଜୀ ସେ କୋଠରୀକୁ ଆସି ମୋତେ କାନ୍ଦୁଥିବାର ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେ ଅନୁମାନ କରିଥିଲେ, ବୋଧହୁଏ ସେ ଜେଲ୍ ଯାଉଥିବାରୁ ମୁଁ କାନ୍ଦୁଥିଲି । ସେ ମୋର ଏ ପ୍ରକାର ମୂର୍ଖତା ଓ ଦୁର୍ବଳତା ଲାଗି ଆଶ୍ଚର୍ଯ୍ୟ ହେବା ସଙ୍ଗେ ସଙ୍ଗେ, କାନ୍ଦିବାର କାରଣ ଜାଣିବାକୁ ଚାହିଁଲେ । ତାଙ୍କ ଜେଲ ଯିବାର ଏହା ତ ପ୍ରଥମ ଅବସର ନ ଥିଲା । ମୁଁ ତାଙ୍କ କଥାକୁ ଟାଳି ଦେବାକୁ ଯାଇ କହିଲି, "ନା, କିଛି ନୁହେଁ ।" ସେ ଦ୍ୱିତୀୟଥର ପଚାରନ୍ତେ ମୁଁ ବାଧହୋଇ କହିଲି—"ମୋ ପାଖରେ ମୋଟରେ ଛ'ଟି ପଇସା ଅଛି । ଆପଣଙ୍କୁ ଜଣାଇ ଅଧିକ ଚିନ୍ତାରେ ପକାଇବାକୁ ଚାହୁଁ ନ ଥିଲି; କିନ୍ତୁ କାଲି ତ ମୋତେ ମିର୍ଜାପୁର ଯିବାଲାଗି ନିର୍ଦ୍ଦେଶ ଦେଇଛନ୍ତି; ମୁଁ ଯିବି କିପରି ? ସେହି କଥା ଭାବି କାନ୍ଦୁଥିଲି ।"

ଶାସ୍ତ୍ରୀଜୀ ଆଦୌ ଏ କଥା ଭାବି ନ ଥିଲେ । ସେ ମୋ' କଥା ଶୁଣି ଟିକିଏ ଚିନ୍ତାରେ ପଡ଼ିଗଲେ । ତା'ପରେ ସେ କିଛି ବନ୍ଦୋବସ୍ତ କରିବାକୁ ମନସ୍ଥ କରି ମୋତେ ମୁହଁ ହାତ ଧୋଇବାକୁ କହି ଅନ୍ୟ କୋଠରୀକୁ ଚାଲିଗଲେ ।

ଦ୍ୱିପ୍ରହର ପରେ ଯେତେବେଳେ 'ଘଣ୍ଟାଘର' ନିକଟକୁ ଯିବାର ସମୟ ହେଲା, ମୁଁ ତାଙ୍କ ସହିତ ବାହାରିଲି । ତହୁଁ ସେ କହିଲେ—"ତୁମେ କୁଆଡ଼େ ଯିବ, ଘର ଚାଲି ଚାଲ ?"

"ତା'ହେଲେ ତ ମୋର ସଙ୍ଗରେ ରହିବା ଆହୁରି ବେଶି ଜରୁରି ; ଗୁଳି ପ୍ରଥମେ ମୋ' ଉପରେ ବାଜିବା ଉଚିତ୍ । ମୁଁ ମାନିବି ନାହିଁ, ମୁଁ ନିଶ୍ଚୟ ଯିବି !!'

ଶାସ୍ତ୍ରୀଜୀ ଅନେକ ବୁଝାଇବାକୁ ଚେଷ୍ଟା କଲେ; ମାତ୍ର ମୁଁ ଆଦୌ କିଛି ଶୁଣିବାକୁ ପ୍ରସ୍ତୁତ ନ ଥିଲି । ମୋତେ ବାହାରିବାର ଦେଖି ମା'ଜୀ ବାହାରି ପଡ଼ିଲେ । ଆମ ଯିବାକଥା ଶୁଣି ଗୌତମଜୀଙ୍କ ସ୍ତ୍ରୀ ଲୁଗା ବଦଳେଇବାରେ ଲାଗିଲେ ଓ ଶେଷରେ ଶାସ୍ତ୍ରୀଜୀ, ମା'ଜୀ, ଗୌତମଜୀଙ୍କ ସ୍ତ୍ରୀ ଓ ମୁଁ ସମସ୍ତେ ଗୋଟିଏ ଘୋଡ଼ାଗାଡ଼ିରେ ବସି 'ଘଣ୍ଟାଘର' ଆଡ଼କୁ ଚାଲିଲୁ । ବାଟରେ ଗୋଟିଏ ସ୍ଥାନରେ ଗାଡ଼ି ଅଟକାଇ ଶାସ୍ତ୍ରୀଜୀ ଜଣେ ଭଦ୍ରବ୍ୟକ୍ତିଙ୍କ ସହିତ କିଛି କଥାବାର୍ତ୍ତା ସାରି ପୁଣି ଆସି ବସିଲେ ।

ତେଣେ 'ମହମ୍ମଦ ଅଲ୍ଲି ପାର୍କ' ପରିବର୍ତ୍ତେ 'ଘଣ୍ଟାଘର' ନିକଟରେ ଖୁବ୍ ଲୋକ ଭିଡ଼ ହେବାର ଦେଖି, ପୋଲିସମାନଙ୍କର ସନ୍ଦେହ ହେଲା । ତେଣୁ ତରବରିଆରେ କେତେକ ପୋଲିସଙ୍କୁ ସେଠାକୁ ( ଘଣ୍ଟାଘର ) ପଠାଇଲେ । ଅବଶ୍ୟ ସେମାନଙ୍କ ସଂଖ୍ୟା ଯଥେଷ୍ଟ ନ ଥିଲା । ଆମ ଗାଡ଼ି ଯେଉଁଠାରେ ପହଞ୍ଚିବାର କଥା ସେଇଠାରେ ଅବାଧରେ ପହଞ୍ଚି ଗଲା । ଶାସ୍ତ୍ରୀଜୀ ଗାଡ଼ି ଉପରେ ଛିଡ଼ା ହୋଇଗଲେ । ସେ ଛିଡ଼ା ହେବା ମାତ୍ରେ "ଇନ୍‌କିଲାବ୍ ଜିନ୍ଦାବାଦ"ର ଧ୍ୱନି ହେବାକୁ ଲାଗିଲା । ତା'ପରେ ଶାସ୍ତ୍ରୀଜୀ "ଭାଇ ଓ ଭଉଣୀମାନେ" ଏତିକି କହିଛନ୍ତି କି ନାହିଁ, ଜଣେ ପୁଲିସ ଅଫିସର ଗାଡ଼ି ପାଖକୁ ଆସି ତାଙ୍କୁ ଗିରଫ ପରଓ୍ୱାନା ଦେଖାଇଲା । ଶାସ୍ତ୍ରୀଜୀ ତାଙ୍କୁ "ଧନ୍ୟବାଦ" ବୋଲି କହି ତାଙ୍କ ଥଳିରେ ଥିବା କାଗଜଗୁଡ଼ିକ ବାହାର କରି ତାଙ୍କ ଚାରିଆଡ଼ର ଜନତାଙ୍କ ମଧ୍ୟକୁ ଫିଙ୍ଗିଦେଲେ । ତା'ପରେ ସେ ଗାଡ଼ିରୁ ଓହ୍ଲାଇ, ପୁଲିସ ଅଫିସରଙ୍କ ସଙ୍ଗେ ଚାଲିଗଲେ । ମା'ଜୀ ରାଗରେ ପୋଲିସବାଲା ଓ ଇଂରେଜ ସରକାରଙ୍କ ବିରୁଦ୍ଧରେ ବହୁତ ସମୟ ପର୍ଯ୍ୟନ୍ତ ବକିବାରେ ଲାଗିଲେ ।

**ବିଶ୍ୱାସ ଘାତକ ଟି.ଟି—**

ରାତିରେ ଜଣେ ଭଦ୍ରବ୍ୟକ୍ତି ଆସି ପଚିଶଟି ଟଙ୍କା ଦେଇଗଲେ । ପରଦିନ ମୁଁ ପିଲାମାନଙ୍କୁ ଧରି ମିର୍ଜାପୁର ଚାଲିଗଲି । ମା'ଜୀ ରାମନଗର ଚାଲିଗଲେ । ଏହ୍ଲାବାଦରେ ପଢ଼ୁଥିବା ଆମର ଜଣେ ପୁତୁରା ଆମ ସଙ୍ଗରେ ଗଲେ । ପଚିଶଟି ଟଙ୍କା ମଧ୍ୟରୁ ଦଶଟି ଟଙ୍କା ସେଇଠାରେ ଦେଣ ନେଣରେ ଖର୍ଚ୍ଚ ହୋଇଗଲା । ଆମେ ଟିକିଏ ଡେରିରେ ଷ୍ଟେସନରେ ପହଞ୍ଚିଥିବାରୁ ଦଶଟି ଟଙ୍କା ଟିକେଟ କରିଦେବା ଲାଗି ଜଣେ ଟି. ଟି. ବାବୁଙ୍କୁ ଦେଲି । ଗାଡ଼ିରେ ଖୁବ୍ ଭିଡ଼ ଥିବାରୁ ବସିବା ଲାଗି ବହୁତ ବୁଲାବୁଲି କରିବାପରେ

ଶେଷରେ ବହୁ କଷ୍ଟରେ ଗୋଟିଏ ଝରକା ବାଟେ ଭିତରକୁ ପଶିବାର ସୁବିଧା ମିଳିଲା । ଦୁଇ ତିନୋଟି ଷ୍ଟେସନ ପାରହୋଇ ଯାଇଥିଲେ ସୁଦ୍ଧା ଟି.ଟି. ବାବୁ ଟିକେଟ ଦେଲେ ନାହିଁ । ତା'ପରେ ଆଗ ଷ୍ଟେସନରେ ଗାଡ଼ି ଛିଡ଼ା ହେବା ମାତ୍ରେ, ମୁଁ ମୋ' ପୁରୁଷକୁ ଟିକେଟ୍ ଆଣିବାକୁ ପଠାଇଲି । ମୋ' କଥା ଶୁଣି ପୁରୁଷ ଗଲା; ମାତ୍ର ଟିକେଟ୍ ନଆଣି ଖାଲି ହାତରେ ଫେରିଆସିଲା । ସେ ଫେରିଆସି ଯାହା କହିଲା, ତା' ଶୁଣି ମୋତେ କାନ୍ଦ ମାଡ଼ିଲା । ଟି.ଟି. ବାବୁ ଜଣକ ବଡ଼ ବିଶ୍ୱାସଘାତକତା କଲେ । ସେ ମୋ' ପୁରୁଷକୁ କହିଲେ ଯେ, ମିର୍ଜାପୁରରେ ହିଁ ସମସ୍ତଙ୍କ ଟିକେଟ୍ କରି ଦେବେ ଏବଂ ପ୍ରଥମେ ଗାଡ଼ି ଛାଡ଼ିବା ଷ୍ଟେସନରୁ ହିଁ ଟିକେଟ୍‌ର ଭଡ଼ା ନିଆଯିବ । ଲୋକେ ଜାଣିବେ ଯେ, ଶାସ୍ତ୍ରୀଜୀଙ୍କ ସ୍ତ୍ରୀ ବିନା ଟିକେଟରେ ଗାଡ଼ିରେ ଯାତ୍ରା କରୁଥିବାବେଳେ ଧରାହେଲେ । ଏ ବଦନାମ ମୋର ହେବ ନାହିଁ, ଶାସ୍ତ୍ରୀଜୀଙ୍କ ସୁନାମରେ କଳଙ୍କ ରହିବ । ମୁଁ ଏହି କଥା ଭାବି ଭାବି ଦୁଃଖିତା ହେଲି । କାରଣ ତାହା ମୋ' ପକ୍ଷରେ ଥିଲା, ମରଣଠାରୁ ଅଧିକ ଦୁଃଖଦାୟକ ।

ଗାଡ଼ି ଛାଡ଼ିବା ମାତ୍ରେ ଆଖପାଖ ସିଟ୍‌ରେ ବସିଥିବା ଲୋକମାନେ ପଚରାପଚରି କଲେ । ଟି.ଟି. ର ବଦମାସି ଜାଣିବା ସଙ୍ଗେ ସଙ୍ଗେ ଯେତେବେଳେ ସେମାନେ ଜାଣିଲେ ଯେ, ହଇରାଣ ହୋଇଥିବା ଯାତ୍ରୀମାନେ ଶାସ୍ତ୍ରୀଜୀଙ୍କ ପରିବାରର ଲୋକ, ସେମାନେ ଖୁବ୍ ଉତ୍ତ୍ୟକ୍ତ ହୋଇପଡ଼ି ଟି.ଟି. ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବା ଲାଗି ନିଷ୍ପତ୍ତି ଗ୍ରହଣ କରି ଆମ୍ଭମାନଙ୍କୁ କୌଣସି ପ୍ରକାର ଚିନ୍ତା ନ କରିବା ଲାଗି ଆଶ୍ୱାସନା ଦେଲେ । ପରେ ଅନ୍ୟ ଯାତ୍ରୀମାନଙ୍କ ନିଷ୍ପତ୍ତି ଅନୁସାରେ, କୌଣସି ପ୍ରକାର ଝଗଡ଼ା ନ କରି, ଅନ୍ୟ ଉପାୟ ବାହାର କଲେ । ତିନିଜଣ ଭଦ୍ରବ୍ୟକ୍ତି ସେମାନଙ୍କ ଟିକେଟ୍ ଆମକୁ ଦେଇ, ବିନ୍ଧ୍ୟାଚଳ ଷ୍ଟେସନରେ ଓହ୍ଲାଇ ପଡ଼ିଲେ । ସେଠାରୁ ସେମାନେ ରିକ୍‌ସା ଯୋଗେ ମିର୍ଜାପୁର ଯାଇଥିବେ । ବିନ୍ଧ୍ୟାଚଳ ଷ୍ଟେସନରେ ସେମାନେ ଜଣେ ଭଦ୍ରବ୍ୟକ୍ତିଙ୍କ ସାହାଯ୍ୟରେ ପ୍ଲାଟଫର୍ମ ଟିକେଟ୍ ମଗାଇ ନେଇଥିଲେ । ତେଣୁ ସେମାନଙ୍କୁ ଉକ୍ତ ଷ୍ଟେସନରୁ ବାହାରକୁ ଯିବାଲାଗି କୌଣସି ଅସୁବିଧା ହୋଇ ନ ଥିଲା । ଆମେ ମିର୍ଜାପୁର ଷ୍ଟେସନରେ ଓହ୍ଲାଇବା ମାତ୍ରେ, ଉକ୍ତ ଟି.ଟି. ଆଉ କେତେଜଣ ଟି.ଟି. ଙ୍କୁ ସଙ୍ଗରେ ଆଣି ଆମକୁ ଟିକେଟ୍ ମାଗିଲେ । ମୁଁ ଟିକେଟ୍ ଦେଖାଇ ଦେବାରୁ ସେମାନେ ଆବାକାବା ହୋଇଗଲେ । "ଆପଣଙ୍କ ପାଖରେ ଥିବା ଟିକେଟ୍ କେଉଁଠୁ ଆସିଲା ?" ମୁଁ ସେମାନଙ୍କ କଥାରେ କିଛି ଉତ୍ତର ନ ଦେଇ ପିଲାମାନଙ୍କୁ ନେଇ ଚାଲିଗଲି । ଟି.ଟି. ମାନେ ଆମ ଆଡ଼କୁ କିଂକର୍ତ୍ତବ୍ୟବିମୂଢ଼ ହୋଇ ଚାହିଁ ରହିଲେ । ସେମାନେ ଆମ ସମ୍ବନ୍ଧରେ କିଛି ହେଲେ ଜାଣିପାରି ନ ଥିଲେ ।

———

# ସତର

**ଭଗବାନ ଭରସା—**

ଶାସ୍ତ୍ରୀଜୀଙ୍କୁ 'ନୈନି' ଜେଲକୁ କିମ୍ବା ଅନ୍ୟ କୌଣସି ଜେଲକୁ ନିଆଯାଇଥିଲା, ଏହାର ଠିକ୍ ଖବର ଜଣା ନ ଥିଲା; କାରଣ ମାସ ମାସ ବିତି ଯାଇଥିଲେ ହେଁ, ତାଙ୍କଠାରୁ କୌଣସି ଚିଠିପତ୍ର ମିଳିଲା ନାହିଁ । ମୋତେ ଖୁବ୍ ଡର ଲାଗିଲା ଏବଂ ମନରେ ନାନାପ୍ରକାର ଆଶଙ୍କା ଜାତ ହେବା ସଙ୍ଗେ ସଙ୍ଗେ ଅନେକ ପ୍ରକାର ଅଶୁଭ ଚିନ୍ତା ମନ ମଧ୍ୟରେ ସ୍ଥାନ ପାଇଲା । ଯେତେ ଚେଷ୍ଟା କଲେ ଆଖିରୁ ଲୁହଧାର ବନ୍ଦ ହେଲା ନାହିଁ । ମୁଁ ଅବଶ୍ୟ ମୋର ଅବୁଝା ମନକୁ ଅନେକ ପ୍ରକାର ସାନ୍ତ୍ୱନା ଦେଉଥିଲି ଏବଂ ଘର ଓ ବାହାରର ଲୋକମାନେ କେତେ ପ୍ରକାର ବୁଝାଉଥିଲେ; କିନ୍ତୁ ତା'ର ପ୍ରଭାବ ଅଳ୍ପ ସମୟପାଇଁ ମନ ଉପରେ ପଡ଼େ ଏବଂ ତା' ପରେ ପରେ ମନର ପୂର୍ବ ଅବସ୍ଥା ଫେରିଆସେ । ରାତିରେ ଶୋଇବାବେଳେ ଅନେକ ସମୟ ଧରି ଆକାଶର ତାରାଗୁଡ଼ିକୁ ଚାହିଁ ଚାହିଁ ଭାବେ, ସେ ମୋରି ପରି ଖୋଲା ଆକାଶତଳେ କେଉଁଠି ଶୋଇଥିବେ ! ଆକାଶକୁ ଏହିପରି ଭାବରେ ନିରୀକ୍ଷଣ କରିବାରେ ମୋତେ ଅବଶଃ ଆନନ୍ଦ ମିଳେ; ଅବଶ୍ୟ ତାହା ମଧ୍ୟ ଖୁବ୍ ଅଳ୍ପ ସମୟ ଲାଗି । ପୁଣି ସେହି ଚିନ୍ତା, ସେହି ବ୍ୟଥାରେ ମୋର ହୃଦୟ ମନ୍ଥି ହୁଏ । ଆଖିରୁ ଲୁହଧାର ଅବାରିତ ଗତିରେ ବହେ ! ଏଇମିତି କାନ୍ଦି କାନ୍ଦି ଦିନେ ଦିନେ ସକାଳ ହୋଇଯାଏ । ଧୀରେ ଧୀରେ ମୋ' ଦେହ ଖରାପ ଆଡ଼କୁ ଗତି କଲା । ଜ୍ୱର ଓ କାଶ ଆରମ୍ଭ ହେଲା ଏବଂ କାଶ ହେବା ସଙ୍ଗେ ସଙ୍ଗେ ମୁହଁରୁ ରକ୍ତ ପଡ଼ିଲା ।

ପ୍ରାୟ ଛ'ସାତମାସ ପରେ 'ନୈନି' ଜେଲରୁ ଶାସ୍ତ୍ରୀଜୀଙ୍କ ଚିଠି ଆସିଲା । ସେ ଭଲରେ ଥିବାର ସମ୍ବାଦ ପାଇ ମୋତେ ଜଣାଗଲା, ସତେ ଯେପରି, ମୁଁ ଗୋଟିଏ ନୂଆ ଜୀବନ ପାଇଗଲି ! ମୁଁ ସଙ୍ଗେ ସଙ୍ଗେ ସମସ୍ତଙ୍କ ମଙ୍ଗଳ ସମାଚାର ଲେଖି ତାଙ୍କ ପାଖକୁ ପତ୍ର ଦେଇଦେଲି । ଶାସ୍ତ୍ରୀଜୀଙ୍କ ଚିଠିରେ ଲେଖାଥିଲା ଯେ, ଚିଠିପତ୍ର ଲେଖିବା

ଲାଗି ଯେତିକି ସୁବିଧା ମିଳିବା କଥା ସେପରି ସୁବିଧା ମିଳୁନାହିଁ । ତେଣୁ ସେ ଶୀଘ୍ର ଶୀଘ୍ର ପତ୍ର ଲେଖିପାରିବେ ନାହିଁ । କାରଣ ମାସକୁ କେବଳ ଖଣ୍ଡିଏ ମାତ୍ର ପତ୍ର ଲେଖିବାର ସୁବିଧା ମିଳୁଥିଲା ।

ପ୍ରାୟ ଏକବର୍ଷ ବିତିଯିବା ପରେ ସରଜୁପ୍ରସାଦଜୀଙ୍କୁ ମୁକ୍ତକରି ଦିଆଗଲା । ଶାସ୍ତ୍ରୀଜୀଙ୍କର ସମାଚାର ସହିତ ସେ ମିର୍ଜାପୁର ଆସିଲେ । ସେଠାରୁ ଫେରି ଏଲାହାବାଦରେ ପହଞ୍ଚିବା ମାତ୍ରେ, ପୁଣି ତାଙ୍କୁ ଗିରଫ କରି 'ନୈନି' ଜେଲକୁ ପଠାଇ ଦିଆଗଲା । ସରଜୁପ୍ରସାଦଜୀ ମୋତେ ଯେପରି ଭାବରେ ଦେଖିଥିଲେ, ତା'ର ଖବର ଶାସ୍ତ୍ରୀଜୀଙ୍କୁ ଦେଲେ, ପୁଣି ଯେତେବେଳେ ଶାସ୍ତ୍ରୀଜୀଙ୍କ ପତ୍ର ଆସିଲା, ସେଥିରେ ସେ ମୋର ସ୍ୱାସ୍ଥ୍ୟ ସମ୍ବନ୍ଧରେ ଠିକ୍ ଖବର ଶୀଘ୍ର ଜଣାଇବାକୁ ଲେଖିଥିଲେ । ମୁଁ ଖୁବ୍ ଦୁର୍ବଳ ହୋଇ ଯାଇଥିଲି ବୋଲି ସେ ସରଜୁପ୍ରସାଦଙ୍କଠାରୁ ଶୁଣିଥିଲେ । ମୁଁ ଉତ୍ତର ଶୀଘ୍ର ଦେଲି ସତ; କିନ୍ତୁ ମୋ' ସ୍ୱାସ୍ଥ୍ୟ ସମ୍ବନ୍ଧରେ ଠିକ୍ ହାଲଚାଲ ତାଙ୍କୁ କିଛି ଜଣାଇଲି ନାହିଁ । ମୁଁ ଜାଣି ଶୁଣି ଏପରି କରିଥିଲି । କାରଣ ମୋର ରୋଗ ସମ୍ବନ୍ଧରେ ଲେଖି, ତାଙ୍କୁ ଅଧିକ ଚିନ୍ତାରେ ପକାଇବାକୁ ମୁଁ ଚାହୁଁ ନ ଥିଲି, ବରଂ ସେଥିରେ ତାଙ୍କର ଦେହ ଖରାପ ହେବାର ସମ୍ଭାବନା ଥିଲା । ମୁଁ ମୋ' ଚିଠିରେ ଲେଖିଥିଲି ଯେ, ସରଜୁପ୍ରସାଦଜୀଙ୍କ କହିବା ମିଛ ନୁହେଁ; କିନ୍ତୁ ବର୍ତ୍ତମାନ ଦେହ ଭଲ ଅଛି । ଆଗରୁ ଜ୍ୱର ହୋଇଥିଲା; ତେଣୁ ମୁଁ ଖୁବ୍ ଦୁର୍ବଳ ହୋଇଯାଇଥିଲି ।

କିଛିଦିନ ପରେ ସାତଦିନରେ ଥରେ ଚିଠି ଲେଖିବାକୁ ଅନୁମତି ମିଳିଗଲା । ଶାସ୍ତ୍ରୀଜୀ ପ୍ରତି ସପ୍ତାହରେ ଚିଠି ଲେଖିଲେ । ଗୋଟିଏ ସପ୍ତାହରେ ମୋତେ ଲେଖିଲେ, ଅନ୍ୟ ସପ୍ତାହରେ ମା'ଜୀଙ୍କୁ ଏବଂ ତା' ପର ସପ୍ତାହରେ ମାମୁଁ ଘରକୁ; ଏହିପରି କ୍ରମାନ୍ୱୟରେ ସେ ସମସ୍ତଙ୍କୁ ପତ୍ର ଲେଖୁଥିଲେ । ଆସନ୍ତା ସପ୍ତାହ ସେ କାହାକୁ ପତ୍ର ଲେଖିବେ, ସେ ଖବର ମୋ' ଚିଠିରେ ଲେଖିଦେବା ସଙ୍ଗେ ସଙ୍ଗେ ମୋତେ କେବେ ପର ପର ଦୁଇଟି ସପ୍ତାହରେ ପତ୍ର ଲେଖିବେ, ସେ ସମ୍ବନ୍ଧରେ ସୂଚନା ଦେଉଥିଲେ; କିନ୍ତୁ ପ୍ରତି ଚିଠିରେ ମୋ' ସ୍ୱାସ୍ଥ୍ୟ ସମ୍ବନ୍ଧରେ ସେ ପଚାରୁଥିଲେ । ମୁଁ ପ୍ରତି ଚିଠିରେ ମୋର ସ୍ୱାସ୍ଥ୍ୟ ସନ୍ତୋଷଜନକ ବୋଲି ଲେଖି ଦେଉଥିଲି; କିନ୍ତୁ ପ୍ରକୃତରେ ଅବସ୍ଥା ତାହା ନ ଥିଲା; ବରଂ ପୂର୍ବ ଅପେକ୍ଷା ମୋ' ଦେହ ଅଧିକ ଖରାପ ହୋଇଯାଇଥିଲା । ଏହା ମଧ୍ୟରେ ହରି ଓ କୁସୁମ ଦୁହିଁଙ୍କୁ ଟାଇଫଏଡ୍ ହୋଇଗଲା । ଗୋଟିଏ ବିପଦ ସାଙ୍ଗକୁ ଆଉ ଗୋଟିଏ ବିପଦ ଆସି ଉପସ୍ଥିତ ହେଲା । ଭଗବାନଙ୍କ ଉପରେ ଭରସା ରଖି, ଯାହା କିଛି ସମ୍ଭବ ହେଉଥିଲା ସେହି ଅନୁସାରେ ଔଷଧ ବ୍ୟବହାର କରାଇଲି ।

ଦିନେ ଅନାୟାସରେ ପଚିଶ ଟଙ୍କାର ଗୋଟିଏ ମନିଅର୍ଡର ଆସି ପହଞ୍ଚିଲା । ସେ ଟଙ୍କାତକ ପଣ୍ଡିତ ନିଷ୍କାମେଶ୍ୱର ପ୍ରସାଦଜୀ ପଠାଇ ଥିଲେ । 'ବୁଢ଼ୀଗଲାବେଳେ ଲୁଟାଖିଅଲୁ

ଭରସା' ପରି ସେ ଟଙ୍କାତକ ପାଇ ମୁଁ ଆଶ୍ୱସ୍ତ ହେଲି । ମାତ୍ର ବେଳ ଖରାପ ପଡ଼ିଥିଲେ, ସମସ୍ତ ପ୍ରକାର ସାହାଯ୍ୟ ବ୍ୟର୍ଥ ହୋଇଯାଏ ।

ବର୍ତ୍ତମାନ ଲୋକସଭାର ହରିଜନ ସଭ୍ୟ ଶ୍ରୀରାମସ୍ୱରୂପ ସେତେବେଳେ ମିର୍ଜାପୁରରେ ଆମ ଘରେ ରହି ପଢୁଥିଲେ । ତାଙ୍କ ବାପା ତାଙ୍କୁ ଆଗକୁ ପଢ଼ାଇବାକୁ ରାଜି ନ ହେବାରୁ, ମୋର ଡେପୁଟୀ ଭାଇ (ସ୍କୁଲ ଇନ୍ସପେକ୍ଟରଙ୍କ ଡେପୁଟୀ ହୋଇଥିବାରୁ ତାଙ୍କୁ ଆମେ ଡେପୁଟୀ ଭାଇ ବୋଲି ଡାକୁଥିଲୁ) ତାଙ୍କୁ ଆଣି ନିଜ ପାଖରେ ରଖି ନିଜ ପିଲାଙ୍କପରି ଯତ୍ନରେ ପାଠ ପଢ଼ାଉଥିଲେ । ସେତେବେଳେ ରାମସ୍ୱରୂପ ଆଇ. ଏ. ପଢୁଥିଲେ ଏବଂ ବାର୍ଷିକ ପରୀକ୍ଷାପାଇଁ ପ୍ରସ୍ତୁତ ହେଉଥିଲେ । ଦିନେ ସେ ସ୍କୁଲରୁ ଫେରିବା ବାଟରେ ଗିରଫ ହୋଇଗଲେ । କେତେକ ଭଙ୍ଗାରୁଜା କାମରେ ଅଭିଯୁକ୍ତ କରି ସରକାର ତାଙ୍କ ଉପରେ ମୋକଦ୍ଦମା ଚଳାଇ, ତାଙ୍କୁ ପଚାଶଟଙ୍କା ଜୋରିମାନା କରିଦେଲେ । ମୋ' ପାଖରେ ଥିବା ସେହି ପଚିଶ ଟଙ୍କା ମଧ୍ୟରୁ ପଚାଶଟଙ୍କା ଦେବାକୁ ସେ ଜୋରିମାନା ପଇଠ କଲେ । ଅନ୍ୟଥା ସେ ପରୀକ୍ଷା ଦେଇପାରି ନ ଥାନ୍ତେ ଏବଂ ତାଙ୍କର ଗୋଟିଏ ବର୍ଷ ବ୍ୟର୍ଥରେ ଯାଇଥା'ନ୍ତା ! ଡେପୁଟୀ ଭାଇ ସେତେବେଳେ ଟଙ୍କା ଯୋଗାଡ଼ କରିଦେଇ ପାରିଲେ ନାହିଁ । ତେଣୁ ତାଙ୍କ ପରୀକ୍ଷା ଦେବାର ଗୁରୁତ୍ୱ ଦୃଷ୍ଟିରୁ ମୋତେ ହିଁ ସେ ଟଙ୍କା ଦେବାକୁ ପଡ଼ିଲା ।

ହରି ଓ କୁସୁମର ସ୍ୱାସ୍ଥ୍ୟ ଭଲ ହୋଇଗଲା; ମାତ୍ର ମୋ' ସ୍ୱାସ୍ଥ୍ୟ ଦିନକୁ ଦିନ ଅଧିକ ଖରାପ ହେଲା ସିନା, ସୁଧୁରିଲା ନାହିଁ । ପ୍ରଥମ ଅପେକ୍ଷା ମୁହଁରୁ ଅଧିକ ରକ୍ତ ପଡ଼ିବାକୁ ଲାଗିଲା । ପ୍ରତ୍ୟେକଥର ମୁଁ ଚିଠି ଲେଖି ରାମସ୍ୱରୂପକୁ ଦେଉଥିଲି । ରାମସ୍ୱରୂପ ତାକୁ ଲଫାପାରେ ବନ୍ଦ କରି ଡାକ ବାକ୍ସରେ ପକାଇଦିଅନ୍ତି । ମୋ' ସ୍ୱାସ୍ଥ୍ୟର ଏପରି ହାଲ୍ ଦେଖି ଦିନେ ସାନଭାଉଜ ରାମସ୍ୱରୂପଠାରୁ ଚିଠିଟି ନେଇ, କୁସୁମଦ୍ୱାରା ଲେଖାଇ ଦେଲେ—"ବାପା, ମା'ଙ୍କ ଦେହ ଅନେକ ଦିନରୁ ଖରାପ ଥିବା ସତ୍ତ୍ୱେ ସେ ଲେଖୁ ନାହାନ୍ତି, ତାଙ୍କ ମୁହଁରୁ ରକ୍ତ ପଡ଼ୁଛି ।"

ପର ସପ୍ତାହରେ ଯେତେବେଳେ ଶାସ୍ତ୍ରୀଜୀଙ୍କଠାରୁ ପତ୍ର ପାଇଲି, ସେତେବେଳେ ସବୁକଥା ଜାଣିଲି । ଶୀଘ୍ର ଏଲାହାବାଦ ଯାଇ ଡାକ୍ତରଙ୍କୁ ଦେଖାଇବା ଲାଗି ଶାସ୍ତ୍ରୀଜୀ ଲେଖିଥିଲେ । ମୋତେ ଟଙ୍କା ଖୁବ୍ ଶୀଘ୍ର ମିଳିବାର ଯୋଗାଡ଼ ସେ କରି ଦେଇଥିଲେ । ଜନି ଝିଅର ବିବାହ ଉଦ୍ଦେଶ୍ୟରେ ଏଲାହାବାଦର ରାୟ ଅମରନାଥଜୀଙ୍କୁ ଜେଲ୍‌ରୁ ଖଲାସ କରି ଦିଆଯାଇଥିଲା । ତାଙ୍କଠାରୁ ମୋ' ପାଖକୁ ଅଢ଼େଇଶହ ଟଙ୍କା ଆସିଥିଲା ।

ଶାସ୍ତ୍ରୀଜୀ ଏତିକରେ ଆଶ୍ୱସ୍ତ ହେଲେ ନାହିଁ, ସେ ଶ୍ରୀମତୀ ପୂର୍ଣ୍ଣିମା ବାନାର୍ଜୀଙ୍କୁ ମୋ' ବିଷୟରେ ପତ୍ର ଲେଖି ମୋତେ ମିର୍ଜାପୁରରୁ ଏଲାହାବାଦ ନେଇ ଡାକ୍ତରଙ୍କୁ

ଦେଖାଇବା ଲାଗି ଅନୁରୋଧ କରିଥିଲେ । ଶାସ୍ତ୍ରୀଜୀଙ୍କ କହିବା ଅନୁସାରେ ପୂର୍ଣ୍ଣିମାଜୀ ମୋ' ପୁରୁଷଙ୍କୁ ମିର୍ଜାପୁର ପଠାଇ ମୋତେ ଡକାଇଲେ । ମୁଁ ପିଲାମାନଙ୍କ ସହିତ ମିର୍ଜାପୁରରୁ ଏଲ୍ହାବାଦ ଆସିଲି । ମୁଠିଗଞ୍ଜ ମହଲାରେ ଗୋଟିଏ ଘର ନିଆଯାଇ ମୋର ଚିକିତ୍ସାର ବନ୍ଦୋବସ୍ତ କରାଗଲା । ଡାକ୍ତରମାନେ ମୋତେ ଟି. ବି. ହୋଇଛି ବୋଲି ମତ ଦେଲେ ।

ଡାକ୍ତର ଅବସ୍ଥୀଜୀ ବଡ଼ ତତ୍ପରତାର ସହିତ ମୋର ଚିକିତ୍ସା କରୁଥିଲେ । ଶାସ୍ତ୍ରୀଜୀଙ୍କ ପ୍ରତି ତାଙ୍କ ମନରେ ଗଭୀର ଶ୍ରଦ୍ଧା ଥିଲା; ତେଣୁ ସେ ମୋତେ ଶୀଘ୍ର ଆରୋଗ୍ୟ କରିଦେବାକୁ ଚାହୁଁଥିଲେ । ମୁଁ ଥରେ ତାଙ୍କୁ ଫିସ୍ ଯାଚିବାରୁ ସେ ନେବାକୁ ନାସ୍ତିକରି କହିଲେ, "ଯେ ଦେଶପାଇଁ ଏତେ କିଛି କରିପାରୁଛି, ମୁଁ ତାଙ୍କପାଇଁ ଏତିକି କରିପାରିବି ନାହିଁ !" ତାଙ୍କର ସେହି କଥା ଆଜି ସୁଦ୍ଧା ମୁଁ ଭୁଲିପାରି ନାହିଁ ।

ମୋର ଚିକିତ୍ସା ଚାଲିଲା । ପୂର୍ଣ୍ଣିମାଜୀ ପ୍ରତିଦିନ ଜର୍ଜ ଟାଉନ୍‌ରୁ ଆସି ମୋତେ ହାଲ୍‌ଚାଲ୍ ପଚାରି ଯାହା କିଛି କହିବାର କଥା କହନ୍ତି । ସେ ମୋତେ ନିଜର ସାନ ଭଉଣୀଟି ପରି ସ୍ନେହ କରୁଥିଲେ । ବୋଧହୁଏ ଆଉ ଜୀବନରେ ସେପରି ସ୍ନେହ ମମତା ମିଳିବା ସମ୍ଭବ ନୁହେଁ ! ସେ ଆଜି ଆମ୍ଭମାନଙ୍କ ମଧ୍ୟରେ ନାହାନ୍ତି; କିନ୍ତୁ ସେ ଯେତେ ଲୋକଙ୍କ ସମ୍ପର୍କରେ ଆସିଛନ୍ତି, ସେମାନେ କେହି ତାଙ୍କୁ ଭୁଲିପାରିବେ ନାହିଁ । ଦେଶପାଇଁ ସେ ସର୍ବସ୍ୱ ଅର୍ପଣ କରି ଦେଇଥିଲେ । ବାସ୍ତବିକ୍ ସେ ଥିଲେ ଜଣେ ଅନୁକରଣୀୟ ଓ ସୁଯୋଗ୍ୟା ମହିଳା ।

ମୋର ଯେଉଁ ରୋଗ ହୋଇଥିଲା, ସେଥିରେ ଠିକ୍ ସମୟରେ ଖାଇବା, ଠିକ୍ ସମୟରେ ଔଷଧ ବ୍ୟବହାର କରିବା ଏବଂ ଠିକ୍ ସମୟରେ ଜ୍ୱର ଦେଖିବା ଆଦି ଅତ୍ୟନ୍ତ ଆବଶ୍ୟକ ଥିଲା । ଯାହାକି ଘଡ଼ି ବିନା ଆଦୌ ସମ୍ଭବ ହୋଇପାରୁ ନ ଥିଲା; କିନ୍ତୁ ମୋ' ପାଖରେ ଘଡ଼ି ନ ଥିଲା । ଦିନେ ପୂର୍ଣ୍ଣିମାଜୀ ଗୋଟିଏ ରିଷ୍ଟୱାଚ୍ ଆଣି ମୋ' ମୁଣ୍ଡ ପାଖରେ ରଖି କହିଲେ, "ଏବେ ଆପଣଙ୍କୁ ସବୁ କିଛି ଘଡ଼ି ଦେଖି ସମୟ ଅନୁସାରେ କରିବାକୁ ପଡ଼ିବ । ଏ ଘଡ଼ିଟି ହେଉଛି ଶ୍ରୀ ବିଜୟାନନ୍ଦ ପାଠକଙ୍କର । ସେ ଗିରଫ ହୋଇଗଲେ; କାଲେ ଜେଲ୍‌ରେ ଘଡ଼ିଟି ହଜିଯିବ, ସେଥିଲାଗି ଯିବାବେଳେ ମୋତେ ରଖିବା ଲାଗି ଦେଇଗଲେ । ସେ ଖଲାସ ହୋଇ ଆସିଲେ ମୁଁ ତାଙ୍କୁ ଫେରାଇଦେବି । ସେ ପର୍ଯ୍ୟନ୍ତ ଆପଣ ନିଜ ପାଖରେ ରଖନ୍ତୁ । ବର୍ତ୍ତମାନ ଅବସ୍ଥାରେ ଆପଣଙ୍କ ପାଇଁ ଘଡ଼ିଟିଏ ନିହାତି ଦରକାର ।" ଘଡ଼ିଟି ମିଳିଯିବାରୁ ମୁଁ ସମୟ ଅନୁସାରେ ସବୁ କିଛି କରିବାକୁ ଲାଗିଲି ।

---

# ଅଠର

**ଶାସ୍ତ୍ରୀଜୀଙ୍କ ଚିନ୍ତା—**

ଦୁର୍ଭାଗ୍ୟବଶତଃ ପାଠକଜୀଙ୍କ ଘଣ୍ଟାଟି ଚୋରି ହୋଇଗଲା । ଘରର ମାଲିକ ଘରସଫେଇ ଲାଗି ଯେଉଁ କୁଲିମାନଙ୍କୁ ଲଗାଇଥିଲେ, ସେହିମାନଙ୍କ ମଧ୍ୟରୁ କେହି ଜିନିଷ ଏପାଖ ସେପାଖ କରିବା ସମୟରେ ଅପହରଣ କରିଥିଲା । ମୁଁ ପ୍ରଥମରୁ ଶାସ୍ତ୍ରୀଜୀଙ୍କୁ ଘଣ୍ଟା ସମ୍ବନ୍ଧରେ ଲେଖିଥିଲି, ଘଣ୍ଟାଟି ଚୋରିଯିବା ପରେ ମୁଁ ପୁଣି ତାଙ୍କୁ ଲେଖି ତାଙ୍କ ପରାମର୍ଶ ମାଗିଲି । କାରଣ, ପାଠକଜୀଙ୍କ ଘଣ୍ଟାଟିକୁ ତ ଫେରାଇବାକୁ ହିଁ ପଡ଼ିବ ! ଅନ୍ୟଥା ପୂର୍ଣ୍ଣିମାଜୀଙ୍କର ସମ୍ମାନ ଉପରେ ଆଞ୍ଚ ଆସିବ । ମିର୍ଜାପୁରର ଡେପୁଟୀ ଭାଇଙ୍କଠାରୁ ଅଢ଼େଇଶହ ଟଙ୍କାର ବନ୍ଦୋବସ୍ତ କରି ଘଣ୍ଟା ବଦଳରେ ପୂର୍ଣ୍ଣିମାଜୀଙ୍କୁ ଟଙ୍କା ଦେବା ଲାଗି ଶାସ୍ତ୍ରୀଜୀ ଲେଖିଲେ । ତାଙ୍କ ଧାରଣା ଅବଶ୍ୟ ଠିକ୍ ଥିଲା । ମାତ୍ର ଡେପୁଟୀ ଭାଇଙ୍କର ଘରର ଅବସ୍ଥା ବିଷୟ ବିଚାର କଲେ, ଅଢ଼େଇ ଶହ ଟଙ୍କା ଶୀଘ୍ର ଯୋଗାଡ଼ କରିଦେବା ତାଙ୍କ ପକ୍ଷରେ ଅତ୍ୟନ୍ତ କଠିନ ବ୍ୟାପାର ଥିଲା । ମୁଁ ତାଙ୍କ ଘରର ଅବସ୍ଥା ସମ୍ବନ୍ଧରେ ଭଲ ଭାବରେ ଜାଣିଥିଲି; କିନ୍ତୁ ଘଣ୍ଟା ବାବଦ ଟଙ୍କା ଦେବା ଖୁବ୍ ଜରୁରୀ ଥିଲା । କାରଣ, ସେଥିରେ ଶାସ୍ତ୍ରୀଜୀଙ୍କ ସମ୍ମାନର ପ୍ରଶ୍ନ ଜଡ଼ିତ ଥିଲା । ତେଣୁ ଉପାୟ ଚିନ୍ତା କଲି । ମୁଁ ମୋ' ପୁତୁରାକୁ ଡକାଇ ଘରେ ଥିବା ଗହଣାଗୁଡ଼ିକ ବନ୍ଧକ ରଖି ଅଢ଼େଇ ଶହ ଟଙ୍କା ଆଣିବାକୁ କହିଲି । କାରଣ, ଏତଦ୍‌ବ୍ୟତୀତ ଆଉ କିଛି ଉପାୟ ନ ଥିଲା । ପୁତୁରା ଟଙ୍କା ଆଣିଲାରୁ ମୁଁ ସେ ଟଙ୍କାତକ ଗୋଟିଏ ଲଫାପାରେ ରଖି ପୂର୍ଣ୍ଣିମାଜୀଙ୍କ ପାଖକୁ ପଠାଇଦେଲି । ଘଣ୍ଟା ଚୋରି ହୋଇ ଯାଇଥିବା ସମୟରେ ମୋତେ ଦୁଃଖ କରୁଥିବାର ଦେଖି ପୂର୍ଣ୍ଣିମାଜୀ ମୋତେ ବାରମ୍ବାର ବୁଝାଇ କୌଣସି ଚିନ୍ତା ନ କରିବାକୁ କହୁଥିଲେ । ତା' ସଙ୍ଗେ ସଙ୍ଗେ କହୁଥିଲେ ଯେ, ସେ କୌଣସିମତେ ପାଠକଜୀଙ୍କୁ ବୁଝାଇ ଦେବେ; କିନ୍ତୁ ସେଦିନ ମୋ' ପୁତୁରା ତାଙ୍କୁ ଟଙ୍କା ଥିବା ଲଫାପାଟି ଧରାଇ ଦେବାକ୍ଷଣି ସେ ଖୋଲି ଦେଖୁ ଦେଖୁ ତାଙ୍କ ହାତରୁ ଲଫାପାଟି ଖସି ପଡ଼ିଲା । ସେ କିଛି ବିଚାର ନ କରି, ଲଫାପାଟିକୁ

ପୁଣି ପୁତ୍ରସ୍ ହାତରେ ଦେଇ ଫେରସିବାକୁ କହିଲେ । ସନ୍ଧ୍ୟାବେଳକୁ ସେ ମୋତେ ଦେଖିବାକୁ ଆସି ମୋ' ଉପରେ ଖୁବ୍ ବିରକ୍ତ ହେଲେ ।

ମୋ' ସ୍ୱାସ୍ଥ୍ୟ ଭଲ ହୋଇ ଆସିଲା; ମାତ୍ର ଯେତେ ଶୀଘ୍ର ଓ ଯେଉଁ ପରିମାଣରେ ସ୍ୱାସ୍ଥ୍ୟର ଉନ୍ନତି ହେବାର କଥା, ସେହି ପରିମାଣରେ ଉନ୍ନତି କରୁ ନ ଥିଲି । ଶାସ୍ତ୍ରୀଜୀ ପ୍ରତ୍ୟେକ ଚିଠିରେ ମୋର ଅବସ୍ଥା ସମ୍ବନ୍ଧରେ ବିଶେଷ କରି ଜ୍ୱର ହେଉଛି କି ନା, ଯଦି ହେଉଥାଏ ତା'ହେଲେ କେତେ ସମୟ ହେଉଛି, କାଶ ହେଉଛି କି ନା, ଏ ସବୁ ବିଷୟରେ ପଚାରୁଥିଲେ । ମାସ ଶେଷରେ ମୋର ଓଜନ କେତେ ହେଲା, ପୂର୍ବ ମାସରେ ମୋର ଓଜନ କେତେ ଥିଲା; ଏ ଦୁଇଟିର ତୁଳନା କରି ସେ ମୋ' ସ୍ୱାସ୍ଥ୍ୟର ଉନ୍ନତି ଓ ଅବନତି ସମ୍ବନ୍ଧରେ ଗୋଟିଏ ଅନୁମାନ କରୁଥିଲେ । ସେତିକରେ ତାଙ୍କ ମନବୋଧ ହେଉ ନ ଥିଲା । ସେ ମଝିରେ ମଝିରେ ପୂର୍ଣ୍ଣିମାଜୀଙ୍କୁ ପତ୍ର ଲେଖି ମୋ' ଖବର ବୁଝୁଥିଲେ । କାରଣ ତାଙ୍କର ଧାରଣା ଥିଲା ଯେ, ମୋ' ସ୍ୱାସ୍ଥ୍ୟ ଭଲ ନ ଥିଲେ ମଧ୍ୟ ମୁଁ ତାଙ୍କୁ ଭଲ ଥିବା ଖବର ପଠାଇ ଦେଇପାରେ ! ମୋର ଅସୁସ୍ଥତା ସମ୍ବନ୍ଧରେ ସେ ଯେପରି ଖବରରେ ଚିନ୍ତିତ ହୋଇପଡ଼ିଲେ, ସେଥିରେ ମୋର ବ୍ୟସ୍ତତା ଆହୁରି ବଢ଼ିଗଲା । ମୁଁ ତାଙ୍କୁ ସବୁବେଳେ ସମସ୍ତ ପ୍ରକାର ଚିନ୍ତାରୁ ମୁକ୍ତ କରିବାପାଇଁ ଚାହୁଁ ଥିଲି, ମାତ୍ର ଫଳ ହେଉଥିଲା ଓଲଟା । ଜ୍ୱର ଓ କାଶ ସମ୍ପୂର୍ଣ୍ଣ ଭଲ ହୋଇଯାଇଥିଲା । ମାତ୍ର ପ୍ରଶ୍ନ ଥିଲା ଓଜନ ବଢ଼ିବା । ଦେହର ଓଜନ ନ ବଢ଼ିଲେ ରୋଗ ପୂର୍ଣ୍ଣମାତ୍ରାରେ ଭଲ ହେଲା ବୋଲି ବୁଝାଯାଇ ନ ପାରେ । ନିଜେ ଡାକ୍ତରବାବୁ ଓଜନ କରାଉଥିବାରୁ ସେଥିରେ ମୋର କିଛି ହାତ ନ ଥାଏ; କିନ୍ତୁ ମୁଁ କୌଣସିମତେ ମୋ' ରୋଗ ଚିନ୍ତାରୁ ଶାସ୍ତ୍ରୀଜୀଙ୍କୁ ମୁକ୍ତ କରିବାକୁ ଚାହୁଁ ଥିଲି । ତେଣୁ ମୁଁ ଓଜନ ବଢ଼ାଇବାର ଉପାୟ ସବୁବେଳେ ଚିନ୍ତା କରୁଥିଲି । ସୌଭାଗ୍ୟବଶତଃ ଗୋଟିଏ ଉପାୟ ମୋତେ ଦେଖାଗଲା ।

ପରବର୍ତ୍ତୀ ମାସରେ ମୁଁ ଯେଉଁଦିନ ଡାକ୍ତରବାବୁଙ୍କ ପାଖକୁ ଓଜନ ହେବାକୁ ଗଲି, ସେ ଦିନ ଲୁଗା ତଳେ ଗୋଟିଏ ଚନ୍ଦ୍ରହାର ପିନ୍ଧିକରି ଗଲି । ଓଜନ ବଢ଼ିଗଲା । ଏହା ଦେଖି ଡାକ୍ତର ଖୁସି ହେଲେ । ପରଦିନ ମୁଁ ଶାସ୍ତ୍ରୀଜୀଙ୍କୁ ମୋର ଓଜନ ଲେଖି ପଠାଇ ଦେଲି । ମୁଁ ମୋର ଅଭିନବ ଉପାୟରେ ଖୁସି ହେଲି; କିନ୍ତୁ ଏ ଉପାୟ ମୋତେ ଧରି ପକାଇ ଦେଲା । ଗୋଟିଏ ମାସ ମୁଁ ଶୀଘ୍ର ଲୁଗା ପିନ୍ଧି ଡାକ୍ତରଙ୍କ ପାଖକୁ ଚାଲିଗଲି; କିନ୍ତୁ ଭୁଲବଶତଃ ଚନ୍ଦ୍ରହାର ପିନ୍ଧି ନ ଥିଲି । ମୋର ଓଜନ କମିଗଲା । ଏହା ଦେଖି ଡାକ୍ତର ମହା ଚିନ୍ତାରେ ପଡ଼ିଲେ । ଓଜନ ବଢ଼ିବା ପରେ, ବିନା କାରଣରେ ପୁଣି କମିଯିବା ଆଶ୍ଚର୍ଯ୍ୟର ବିଷୟ ! ତାଙ୍କ ଚିନ୍ତା ଦୂର କରିବା ପାଇଁ ମୁଁ ପ୍ରକୃତ କଥା

ତାଙ୍କୁ ନ କହି, ପୂର୍ଣ୍ଣିମାଜୀଙ୍କୁ ସତକଥା କହିଦେଲି । ପୂର୍ଣ୍ଣିମାଜୀ ସବୁକଥା ଡାକ୍ତରବାବୁ ଓ ଶାସ୍ତ୍ରୀଜୀଙ୍କୁ ଜଣାଇଦେଲେ ।

ମୋର ଧାରଣା, ପ୍ରକୃତ ସମୟ ନ ଆସିବା ପର୍ଯ୍ୟନ୍ତ କୌଣସି କଥା ହୋଇପାରେ ନାହିଁ । ଯାହାକୁ ଯେତେଦିନ ପର୍ଯ୍ୟନ୍ତ ଯାହା ଭୋଗ କରିବାକୁ ଥାଏ, ତାହା ତାକୁ ଭୋଗିବାକୁ ହିଁ ପଡ଼େ । ଦିନକୁ ଦିନ ମୋ' ସ୍ୱାସ୍ଥ୍ୟର ଉନ୍ନତ ହେବାକୁ ଲଗିଲା । ଏହା ମଧ୍ୟରେ ଶାସ୍ତ୍ରୀଜୀଙ୍କ ପକ୍ଷରୁ ଯେଉଁ ସୂଚନା ମିଳିଲା, ତାହାର ବର୍ଣ୍ଣନା ମୁଁ ବର୍ତ୍ତମାନ ସ୍ପଷ୍ଟ କରିପାରୁ ନାହିଁ । ପ୍ରାୟ ଦୁଇବର୍ଷ ପରେ ତାଙ୍କୁ ଦେଖିବାକୁ ସୌଭାଗ୍ୟ ମିଳିଲା । ଏତେଦିନ ପରେ, ସରକାର ଦେଖା କରିବା ଲାଗି ଅନୁମତି ଦେଇଥିଲେ । ମୁଁ ଶୀଘ୍ର ଦରଖାସ୍ତ କରିଦେଲି; ତାହା ମଞ୍ଜୁର ହୋଇଗଲା । ନିର୍ଦ୍ଦିଷ୍ଟ ତାରିଖରେ ମୁଁ ପିଲାମାନଙ୍କୁ ଧରି ନୈନୀ ଜେଲ୍‌ରେ ପହଞ୍ଚିଲି । ଜେଲର ସାହେବ ଦୟା କରି ମୋ' ପାଇଁ ଜେଲ୍ ଫାଟକ ବାହାରେ ଥିବା ଗଛମୂଳେ ଗୋଟିଏ ଖଟିଆ ପକାଇ ଦେଇଥିଲେ । ତାଙ୍କୁ ବୋଧହୁଏ ମୋ' ବେମାର କଥା ଜଣାଥିଲା । ଅଳ୍ପ ସମୟ ପରେ ଶାସ୍ତ୍ରୀଜୀ ମୁଣ୍ଡରେ ଗୋଟିଏ ତଉଲିଆ ପକାଇ ବାହାରକୁ ବାହାରିଲେ । ସେ ଏତେ ଦୁର୍ବଳ ହୋଇଯାଇଥିଲେ ଯେ, ମୁଁ ପ୍ରଥମେ ତାଙ୍କୁ ଚିହ୍ନି ପାରିଲି ନାହିଁ । ଯେତେବେଳେ କୁସୁମ କହିଲା, "ମା' ବାବୁଜୀ ଆସୁଛନ୍ତି" ସେତେବେଳେ ତାଙ୍କୁ ମୁଁ ଚିହ୍ନିପାରି ଉଠି ଛିଡ଼ାହେଲି । ତାଙ୍କୁ ଦେଖି ମୁଁ ହାତଯୋଡ଼ି ନମସ୍କାର କଲି ଏବଂ ଅନାୟାସରେ ମୋ' ଆଖିରୁ ଲୁହ ବହିବାକୁ ଲଗିଲା ।

**ନନ୍ହେ ମିଆଁଙ୍କ ମା'—**

ପ୍ରଥମ ମାସରେ ଥରେ ମାତ୍ର ସାକ୍ଷାତ୍ କରିବାର ଅନୁମତି ମିଳିଲା; କିନ୍ତୁ ପରେ ପରେ ପ୍ରତି ସପ୍ତାହରେ ଦେଖା କରିବାର ସୁଯୋଗ ଦିଆଗଲା । ମୁଁ ପ୍ରତି ସପ୍ତାହରେ ସାକ୍ଷାତ୍ କରିବାପାଇଁ ଗଲି । ନୈନୀ ଯିବା ଆସିବାରେ ଟଙ୍କାଏ ଦେଢ଼ଟଙ୍କା ଖର୍ଚ୍ଚ ହେଉଥିଲା; ତେଣୁ ପେଟରୁ କାଟି ମୁଁ ସେ ଖର୍ଚ୍ଚ ତୁଲାଉଥିଲି । କେବେ କେବେ ଏପରି ପରିସ୍ଥିତି ଆସି ଉପସ୍ଥିତ ହେଉଥିଲା ଯେ, ଦୁଇଦିନ ଧରି ପିଲାମାନଙ୍କୁ କେବଳ ଶୁଖିଲା ରୁଟି ଖାଇ ପେଟ ଭର୍ତ୍ତି କରିବାକୁ ପଡୁଥିଲା । ଆମ ପଡ଼ୋଶୀ 'ନନ୍ହେ ମିଆଁ ସାହେବ'ଙ୍କ ଝିଅ ବରାବର ଆମ ଘରକୁ ଖେଳିବାକୁ ଆସୁଥିଲା । ମୋତେ ସକାଳେ ସଞ୍ଜବେଳେ ଦୁଇଓଳି ଶୁଖିଲା ରୁଟି ତିଆରି କରୁଥିବାର ଦେଖି ଆଶ୍ଚର୍ଯ୍ୟ ହୋଇ ସେ ଥରେ ପଚାରିଲା, "ବଡ଼ମା", ଆପଣଙ୍କୁ ଶୁଖିଲା ରୁଟି ଖୁବ୍ ଭଲଲାଗେ କି ? ମୁଁ ଯେତେବେଳେ ଦେଖେ ଛୁ ସେତେବେଳେ ଆପଣ ଶୁଖିଲା ରୁଟି ତିଆରି କରୁଛନ୍ତି !" 'ହଁ'କହିବା ବ୍ୟତୀତ ମୋ'

ନିକଟରେ ଆଉ କ'ଣ ଉତ୍ତର ଦେବାର ଥିଲା !' କିନ୍ତୁ ସେ ଘଟଣା ସେତିକିରେ ଶେଷ ହେଲା ନାହିଁ । ସେ ଯାଇ ତାଙ୍କ ଘରେ କହିଲା ଯେ, ବଡମା'ଙ୍କ ଘରେ ଦୁଇଓଳି ଶୁଖିଲା ରୁଟି ଖିଆ ଯାଉଛି । ସେମାନଙ୍କୁ ତାହା ଖୁବ୍ ଭଲ ଲାଗେ ।

ସନ୍ଧ୍ୟାବେଳକୁ 'ନଣ୍ଟେ ମିଆଁ ସାହେବ'ଙ୍କ ମା' ଆମ ଘରକୁ ଆସିଲେ । ସେ ଅସଲ କଥା ବୁଝି ପାରିଥିଲେ । ଘରେ ଖାଦ୍ୟ ଶସ୍ୟ ଶେଷ ହୋଇଯିବା ସଙ୍ଗେ ସଙ୍ଗେ, କାଠ ଓ କୋଇଲା ମଧ୍ୟ ଶେଷ ହୋଇ ଯାଇଥିଲା । ତାହା ବୁଢ଼ୀ ଆଖିରେ ଅଛପା ରହିଲା ନାହିଁ । ସେ ବହୁତ ବେଳଯାଏ ଗପସପ କଲେ । ଶାସ୍ତ୍ରୀଜୀଙ୍କ ତ୍ୟାଗ ସମ୍ବନ୍ଧରେ ସେ ଖୁବ୍ ପ୍ରଶଂସା କରି ମୋତେ ସମସ୍ତ ପ୍ରକାର ଅସୁବିଧା ସତ୍ତ୍ୱେ ଧୈର୍ଯ୍ୟ ଧରିବାକୁ ବୁଝାଇଲେ । ଯିବାବେଳେ ସେ କହିଲେ, ସେ ମୋତେ ଅତି ଆପଣାର ପରି ଭାବୁଥିବାରୁ ମୁଁ ତାଙ୍କୁ ଯେପରି ପର ବୋଲି ନ ଭାବେ । ପରଦିନ ନଣ୍ଟେ ମିଆଁ ଆମ ଘରକୁ ଗାଡ଼ିରେ ଗାଡ଼ିଏ କାଠ ପଠାଇଥିଲେ ।

ତାଙ୍କ ମା' କହି ପଠାଇଲେ ଯେ, ବର୍ତ୍ତମାନ ତାଙ୍କର ସୁବ୍ରେଟି ଝିଅ ପରିବର୍ତ୍ତେ ପାଞ୍ଚୋଟି ଝିଅ ହୋଇ ଯାଇଛନ୍ତି । ଆଜି ସୁଦ୍ଧା ନଣ୍ଟେ ମିଆଁ ଏଲ୍ଲାବାଦରେ ଜୀବିତ ଅଛନ୍ତି । ତାଙ୍କ ମା' ପ୍ରକୃତରେ ମୋର ମା' ସଦୃଶ ଥିଲେ । ତାଙ୍କ ନିଜ ଝିଅ ଓ ମୋ' ମଧ୍ୟରେ କୌଣସି ପାର୍ଥକ୍ୟ ଥିବାର, ମୁଁ ଅନୁଭବ କରୁ ନ ଥିଲି । ଦୁଃଖ ଓ ଦୁର୍ଦ୍ଦିନରେ ତାଙ୍କଠାରୁ ଓ ତାଙ୍କ ପରିବାରଠାରୁ ଯେଉଁ ସହାନୁଭୂତି ମିଳିଥିଲା, ତାହା ଭାଷାରେ ବର୍ଣ୍ଣନା କରିହେବ ନାହିଁ ।



# ଊଣେଇଶ

## ପନ୍ତଜୀଙ୍କ ଡାକରା—

ଶାସ୍ତ୍ରୀଜୀ ଜେଲରୁ ଖଲାସ ହୋଇ ଆସିଲେ । ଦେଶ ସ୍ୱାଧୀନ ହେଲା । ଶହ ଶହ ବର୍ଷର ପରାଧୀନତା ରୂପକ ବନ୍ଧନର ଅବସାନ ଘଟିଲା । ଗାନ୍ଧିଜୀଙ୍କର ତପସ୍ୟା ପୂର୍ଣ୍ଣ ହେଲା ଏବଂ ଦେଶବାସୀ ଆନନ୍ଦିତ ହେଲେ । ସେତେବେଳେ ଦେଶବାସୀଙ୍କ ମନରେ ଯେଉଁ ଆନନ୍ଦର ଉତ୍ସାହ ଖେଳିଗଲା, ତାହା ଭାଷାରେ ବର୍ଣ୍ଣନା କରିବା କଠିନ । କେହି ସ୍ୱପ୍ନରେ ସୁଦ୍ଧା ଆଶା କରି ପାରୁ ନ ଥିଲେ ଯେ, ଶହ ଶହ ବର୍ଷର ଇଂରେଜ ଶାସନ, ବିନା-ହାଣକାଟରେ ଏପରି ଭାବରେ 'ଫୁର୍' ହୋଇ ଉଡ଼ିଯିବ ! ହଁ, ଦେଶ ଭାଗ ଭାଗ ହୋଇଯିବା ଫଳରେ, ଅବଶ୍ୟ କେତେକ ଜଞ୍ଜାଳ ଆସି ଉପସ୍ଥିତ ହୋଇଥିଲା । ଏପଟରୁ ସେପଟକୁ ଓ ସେପଟରୁ ଏପଟକୁ ଯିବା ଆସିବା କରିବାଦ୍ୱାରା ଲୋକମାନଙ୍କୁ ବଡ଼ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲା; ମାତ୍ର ଉପାୟ ଆଉ କ'ଣ ଥିଲା ? ତାହା ହିଁ ଥିଲା ଈଶ୍ୱରଙ୍କର ଇଚ୍ଛା ! ଯାହା ଭବିତବ୍ୟ, ତାହା ନିଶ୍ଚୟ ହେବ; ଶତ ଚେଷ୍ଟା କଲେ ମଧ୍ୟ ତାକୁ ଟାଳି ହୁଏ ନାହିଁ ।

ସ୍ୱାଧୀନତାର ବିଧିବଦ୍ଧ ଘୋଷଣା ସନ ୧୯୪୭ରେ ହେବାପରେ ଯାଇ, ଦେଶର ବିଧାନ ପ୍ରଣୟନ କରାହେଲା । ତା'ପରେ ଠିକ୍ ଭାବରେ ଦେଶର ବିଭିନ୍ନ ରାଜ୍ୟରେ ସରକାର ଗଠିତ ହୋଇଥିଲା; କିନ୍ତୁ ତତ୍‌ପୂର୍ବରୁ କେତେଦିନ ପର୍ଯ୍ୟନ୍ତ ମଧ୍ୟବର୍ତ୍ତୀକାଳୀନ ସରକାର ପ୍ରତିଷ୍ଠିତ ହୋଇଥିଲା । ଶାସ୍ତ୍ରୀଜୀ ଜେଲ୍‌ରୁ ଖଲାସ ହୋଇ ଆସିବାର ଅଳ୍ପ କେତେ ଦିନ ପରେ, ଦିନେ ସକାଳେ କ୍ଷୌର ହେଉଥିବାବେଳେ କହିଲେ—"ପନ୍ତଜୀ ( ସ୍ୱର୍ଗୀୟ ଗୋବିନ୍ଦବଲ୍ଲଭ ପନ୍ତ ) ଲକ୍ଷ୍ନୌ ଡାକିଛନ୍ତି ।"

"କାହିଁକି" ପଚାରିଲି ମୁଁ ।"

"ଏଣିକି ସେଇଠି ରହିବାକୁ ପଡ଼ିବ ।"

"ତାହେଲେ ତ ବଡ଼ ଅସୁବିଧାରେ ପଡ଼ିବାକୁ ହେବ ! ଏଇଠି ତ ବଡ଼ କଷ୍ଟରେ ଘର ଖର୍ଚ୍ଚ ଚଳୁଛି; ସେଠାରେ ପୁଣି କେମିତି ଚଳି ପାରିବା ? ଆପଣ ମନା କରି ଦିଅନ୍ତୁ । ଏଇଠି ଏଲ୍ଲାବାଦରେ ରହନ୍ତୁ । ସେଠାରେ ବଡ଼ ଅସୁବିଧା ହେବ ।"

"କିନ୍ତୁ ସେଠାରେ ପଇସା ମିଳିବ ବେଶି ।"

ମୁଁ ବଡ଼ ଆଗ୍ରହର ସହିତ ତାଙ୍କ ଆଡ଼କୁ ଚାହିଁ ପଚାରିଲି "କେତେ ?"

"ଏଇ ସାତ ଶହ, ସାଢ଼େ ସାତଶହ ଟଙ୍କା ।"

"ତା'ହେଲେ ଠିକ୍ ଅଛି; ଯିବା...... ।"

ଶାସ୍ତ୍ରୀଜୀ ଖୈାର ହେଉଁ ହେଉଁ ହଠାତ୍ ତାଙ୍କ ହାତ ବନ୍ଦ ହୋଇଗଲା । ସେ ମୁହଁ ଟେକି ମୋ' ଆଡ଼କୁ ବଡ଼ ଆଶ୍ଚର୍ଯ୍ୟର ସହିତ ଚାହିଁଲେ । ତାଙ୍କର ଆଶ୍ଚର୍ଯ୍ୟ ହେବାର କାରଣ ହେଉଛି—ମୋ' ଦୃଷ୍ଟିରେ ପଇସାର ମହତ୍ତ୍ୱ ଏତେ ବେଶି କେବେଠାରୁ ହେଲା ? ତା'ପରେ ସେ କହିଲେ—"ବର୍ତ୍ତମାନ ତ ତୁମେ ଯିବାଲାଗି ମନା କରୁଥିଲ ? ଏବଂ..." ତାଙ୍କର କହିବାର ଉଦ୍ଦେଶ୍ୟ ବୁଝିପାରି ମୁଁ କଥା ମଝିରେ କହିଲି—"ମୁଁ ମୋ' ପାଇଁ କହୁନାହିଁ, କେବଳ ପିଲମାନଙ୍କ ପାଇଁ କହିବାକୁ ଯାଉଛି । ସେମାନେ ଆଜି ସୁଦ୍ଧା ସୁଖ ଶାନ୍ତି କ'ଣ ତା ନାମ ବି ଜାଣି ନାହାନ୍ତି । କେବଳ ଦୁଃଖ ହିଁ ଦୁଃଖ ସେମାନେ ଅନୁଭବ କରିଛନ୍ତି । ଏବେ ସେମାନଙ୍କୁ ଟିକିଏ ଆରାମ ମିଳିବ । ଏଇ ମୋହବଶରୁ ମୁଁ ଆପଣଙ୍କୁ ଯିବାଲାଗି କହିଲି । ନିଜର ସୁଖ ସୁବିଧାଲାଗି ମୋର ଚଳିଲେହେଲେ ଚିନ୍ତା ନାହିଁ । ଆପଣ ଯେଉଁଠି, ସେହିଠାରେ ମୋର ସବୁକିଛି ରହିଛି ।" ତା' ପରେ ଶାସ୍ତ୍ରୀଜୀ ଆଉ କିଛି କହିଲେ ନାହିଁ ।

**ସମସ୍ୟା ଓ ସଂଘର୍ଷ—**

ସ୍ୱର୍ଗୀୟ ଗୋବିନ୍ଦବଲ୍ଲଭ ପନ୍ଥ ଶାସ୍ତ୍ରୀଜୀଙ୍କୁ ନିଜର ପାର୍ଲିଆ—ମେଣ୍ଟାରୀ ସେକ୍ରେଟାରୀ ରୂପେ ନିଯୁକ୍ତ କରିଥିଲେ । ସେସମୟରେ ସେ (ପନ୍ଥଜୀ) ଉତ୍ତର ପ୍ରଦେଶର ମୁଖ୍ୟମନ୍ତ୍ରୀ ଥିଲେ । ସପରିବାର ଆମ୍ଭେମାନେ ଏଲାହାବାଦରୁ ଲକ୍ଷ୍ନୌ ଆସିଗଲୁ । ସନ ୧୯୨୮ ଠାରୁ ସନ ୧୯୪୬ ପର୍ଯ୍ୟନ୍ତ ସଂଘର୍ଷମୟ ଜୀବନର ଯେଉଁ ଆଭିମୁଖ୍ୟ ଥିଲା, ତାହା ଆଜିର ଆଭିମୁଖ୍ୟଠାରୁ ଢେର ଭିନ୍ନ । ଛୋଟ ବଡ଼ ଅନେକ ପ୍ରକାର ବିପଦ ଓ ଅନେକ ସମସ୍ୟା ଆସି ଉପସ୍ଥିତ ହୋଇଥିଲା । ସବୁ ପ୍ରକାର ଅସୁବିଧା ବିରୁଦ୍ଧରେ ସଂଗ୍ରାମ କରି ବିଜୟ ହାସଲ କରିବା ସଙ୍ଗେ ସଙ୍ଗେ ପ୍ରଗତି ପଥରେ ଆଗେଇ ଚାଲିବା ଶାସ୍ତ୍ରୀଜୀଙ୍କର କର୍ତ୍ତବ୍ୟ ହୋଇ ପଡ଼ିଲା । ସେ ସବୁ କ୍ଷେତ୍ରରେ ବିଜୟ ହାସଲ କରି ଅଗ୍ରଗତି କରୁଥିଲେ । ତାଙ୍କ ପ୍ରଗତି ପଥରେ ଯେ କୌଣସି ପ୍ରକାର ଅସୁବିଧା ଆସି ଉପସ୍ଥିତ ହେଲେ ମଧ୍ୟ ତାଙ୍କ ସତ୍ୟନିଷ୍ଠା ଓ କର୍ତ୍ତବ୍ୟପରାୟଣତା ଆଗରେ ତିଷ୍ଠିପାରୁ ନ ଥିଲା ଏବଂ ତାଙ୍କର ଚରଣ-ରଜର ସଂସ୍ପର୍ଶରୁ ମୋ' ଭଳି ସାମାନ୍ୟ ସ୍ତ୍ରୀ ମଧ୍ୟ କଠିନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ତାଙ୍କର ଉଜ୍ଜ୍ୱଳ କୀର୍ତ୍ତିକୁ ଅମୂଲ୍ୟ ସମ୍ପତ୍ତିରୂପେ ଆଜି ସୁଦ୍ଧା ରକ୍ଷା କରିପାରିଛି ।

ଅତୀତର ସେହି ୧୮।୨୦ ବର୍ଷ ମଧ୍ୟରେ ଗରମ କପଡ଼ା ବୋଲି ମୋ' ପାଖରେ ଦୁଇଖଣ୍ଡି ଗରମ ବ୍ଲାଉଜ୍ ଥିଲା । ଖଣ୍ଡିଏ ମୋ ମା' ମୋତେ ଦେଇଥିଲେ; ଅନ୍ୟ ଖଣ୍ଡିକ ମୋତେ ସ୍ୱାମନଗରରେ ମିଳିଥିଲା । ଶାସ୍ତ୍ରୀଜୀଙ୍କ ପାଖରେ ଖଣ୍ଡିଏ ମାତ୍ର କୋଟ୍ ଥିଲା । ଶାସ୍ତ୍ରୀଜୀଙ୍କ ଚିରା କମିଜ୍‌କୁ କାଟି ମୁଁ ଗରମ ଓ ବର୍ଷା ସମୟରେ ପିନ୍ଧିବା ଭଳି ବ୍ଲାଉଜ୍ ତିଆରି କରୁଥିଲି ଏବଂ ତାଙ୍କର ଚିରା ଧୋତିଗୁଡ଼ିକୁ ଯୋଡ଼ି ସିଲାଇ କରି ମୁଁ ନିଜ ପିନ୍ଧିବା ଲାଗି ଲୁଗା ପ୍ରସ୍ତୁତ କରୁଥିଲି । ଏତେ ଗରିବ ହୋଇଥିଲେ ହେଁ ସେତେବେଳେ ଯେଉଁ ଶାନ୍ତି ଓ ସୁଖ ମୁଁ ପାଉଥିଲି ସେ ସୁଖ ଆଜି ଭାଗ୍ୟରେ ନାହିଁ !!!

ମଧ୍ୟବର୍ତ୍ତୀକାଳୀନ ସରକାରର କାର୍ଯ୍ୟକାଳ ପୂରିଯିବା ପରେ ଶାସ୍ତ୍ରୀଜୀ ଉତ୍ତର ପ୍ରଦେଶରେ ପଟେରାଇବଶନ ମନ୍ତ୍ରୀରୂପେ ନିଯୁକ୍ତ ପାଇଲେ । ସେ ସମୟରେ ଜିନିଷପତ୍ର ଉପରେ କଣ୍ଟ୍ରୋଲ ଚାଲୁ ରହିଥିଲା । ରେଶନ୍‌କାର୍ଡ଼ ଅନୁସାରେ ଦୋକାନରୁ ଖାଦ୍ୟ ଶସ୍ୟ ଓ ଚିନି ଆଦି ଜିନିଷ ମିଳୁଥିଲା । କଣ୍ଟ୍ରୋଲ ଦୋକାନ ବ୍ୟତୀତ ଅନ୍ୟ କେଉଁଠାରୁ ଆଣିଲେ ଅଧିକ ପଇସା ଦେବାକୁ ପଡୁଥିଲା । ଆମ ଘରେ ଖାଦ୍ୟ ଶସ୍ୟରେ କୌଣସି ଅସୁବିଧା ପଡ଼ୁ ନଥିଲା; ମାତ୍ର ପିଲାମାନଙ୍କଲାଗି ସବୁବେଳେ ଚିନିପାଇଁ ଅସୁବିଧା ଭୋଗ କରିବାକୁ ପଡ଼ୁଥିଲା । ମାସ ଶେଷରେ କେତେଦିନ ପିଲାମାନଙ୍କ ଦୁଧରେ ପକାଇବା ଲାଗି ଘରେ ଚିନି ବଳକା ହେଉ ନ ଥିଲା; କିନ୍ତୁ ସେଥିଲାଗି ଉପାୟ କିଛି ନ ଥିଲା । ଅନୁଚିତ ଉପାୟରେ ଅଧିକ ପଇସା ଦେଇ କିମ୍ବା କୌଣସି ଅବୈଧ ଉପାୟ ଅବଲମ୍ବନ କରି, ଅନ୍ୟ କାହାରିକୁ କହି ମୁଁ ଚିନି ଆଣିପାରୁ ନ ଥିଲି । ଦୁଇଟିଯାକ ଉପାୟ ଥିଲା ଅନ୍ୟାୟ ଓ ଶାସ୍ତ୍ରୀଜୀଙ୍କ ଆଦର୍ଶର ବିରୁଦ୍ଧମାର୍ଗ । ପିଲାମାନେ ରାତିରେ ଦୁଧ ପିଇବାବେଳେ ଚିନି ବ୍ୟତୀତ ପିଇବାକୁ ରାଜି ହୁଅନ୍ତି ନାହିଁ; କିନ୍ତୁ ମୁଁ ସେମାନଙ୍କୁ କୌଣସି ପ୍ରକାରେ ବୁଝାଇ ସୁଝାଇ ବିନା ଚିନିରେ ଦୁଧ ପିଇବାକୁ ବାଧ୍ୟ କରୁଥିଲି । ସେମାନେ ଶେଷକୁ ମାନିଯାଇ ଦୁଧ ପିଇ ଶୋଇ ପଡ଼ୁଥିଲେ ।

## ଶାସ୍ତ୍ରୀଜୀଙ୍କ ଲାଗି ସ୍ୱପ୍ନ

ଆଠ ନ' ବର୍ଷର ଗୋଟିଏ ଗାଉଁଲି କୃଷକର ଝିଅ ଦିନେ ହଠାତ୍ ଘରୁ ଅନ୍ତର୍ଦ୍ଧାନ ହୋଇଗଲା । ଝିଅଟିର ନାଁ' ଗାଁ' ଏବେ ମୋର ମନେ ପଡ଼ୁନାହିଁ । ଝିଅଟିର ମା' ନ ଥିଲା ଏବଂ ବାପା କୌଣସି କାମରେ ବାହାରକୁ ଯିବା ପୂର୍ବରୁ, ନିଜ ଖୁଡ଼ୁତା-ପୁଅ ଭାଇଙ୍କ ଜିମାରେ ଝିଅଟିକୁ ଛାଡ଼ି ଯାଇଥିଲା । ଫେରିବା ପରେ ସେ ଜାଣିଲା ଯେ ତା' ଝିଅ କୁଆଡ଼େ ଚାଲି ଯାଇଛି । ପ୍ରଥମେ ସେ ନିଜେ ଖୋଜିବାକୁ ଚେଷ୍ଟା କରି କୌଣସି ସନ୍ଧାନ ପାଇପାରିଲା ନାହିଁ । କୌଣସିମତେ ଏ ଖବର ଶାସ୍ତ୍ରୀଜୀଙ୍କ କାନକୁ ଆସିଲା । କାହା ଜରିଆରେ ଏ ଖବର ତାଙ୍କ ପାଖକୁ ଆସିଲା ମୁଁ ଜାଣେ ନାହିଁ ।

ତା'ପରେ ସି. ଆଇ. ଡ଼ି. ଙ୍କ ସାହାଯ୍ୟରେ ଝିଅଟିକୁ ଉଦ୍ଧାର କରାଗଲା । ସେ ଝିଅଟିକୁ ମୁଁ କିଛିଦିନ ମୋ' ପାଖରେ ରଖିଥିଲି । ସେହି ଛୋଟ ଝିଅଟି ଯେଉଁ ଘଟଣା ମୋ' ଆଗରେ ବର୍ଣ୍ଣନା କରିଥିଲା ତାହା ଥିଲା ଅତ୍ୟନ୍ତ କୌତୂହଳପୂର୍ଣ୍ଣ !

ଝିଅଟିର କକା ତାକୁ ଏପରି ଗୋଟିଏ ଲୋକ ହାତରେ ସମର୍ପି ଦେଇ ଥିଲା ଯେ ସେ ଲୋକଟିର କେତୋଟି ବଡ଼ ବଡ଼ ପୁଅ ଓ ଝିଅ ଥିଲେ ଏବଂ ସେମାନଙ୍କର ମଧ୍ୟ ପିଲାଛୁଆ ହୋଇଥିଲା । ସେ ଝିଅଟିର କହିବା ଅନୁସାରେ ସେ ଲୋକଟି ତାକୁ ବିଧିପୂର୍ବକ ବିବାହ କରି ତା' ସୀମନ୍ତରେ ସିନ୍ଦୂର ପିନ୍ଧାଇ ଦେଇଥିଲା ଏବଂ ନିୟମାନୁସାରେ ତା' ହାତରେ ସିନ୍ଦୂର ଫରୁଆ ଧରାଇ ତାକୁ ପତ୍ନୀରୂପେ ଗ୍ରହଣ କରିଥିଲା । କାଳେ କୌଣସି ପ୍ରକାର ସନ୍ଦେହ ଜାତ ହେବ, ସେଥିଲାଗି ସେ ଲୋକଟି ଝିଅଟିର ହାତରେ ଚିତା କୁଟେଇ ନିଜ ନାମ ଲେଖାଇ ଦେଇଥିଲା । ସେ ଝିଅଟି କହୁଥିଲା ଘରେ ତା'ର ତଥାକଥିତ ସ୍ୱାମୀ ବ୍ୟତୀତ ସମସ୍ତେ ତାକୁ ବଡ଼ବୋହୂ ବୋଲି ଡାକୁଥିଲେ । ସେଠାରେ ତାକୁ ମିଠାଇ ପ୍ରଭୃତି ଭଲ ଭଲ ଜିନିଷ ଖାଇବାକୁ ମିଳୁଥିଲା; ତଥାପି ତାକୁ ସେସବୁ ଭଲ ଲାଗୁ ନ ଥିଲା । ସବୁବେଳେ ତା'ର ମନ ଘରକୁ ଯିବାଲାଗି ଉଚ୍ଛନ୍ନ ହେଉଥିଲା ।

ଏତେ ସୁଖଶାନ୍ତିରେ ଥିବାବେଳେ ସେ କାହିଁକି ଘରକଥା ଭାବୁଥିଲା ବୋଲି ମୁଁ ପଚାରିଲେ, ସେ ପ୍ରକୃତ କାରଣ କିଛି କହି ନ ପାରି କେବଳ ଏତିକି କହିଲା—"ମୋତେ ଆମ ଘର ଖୁବ୍ ଭଲ ଲାଗୁଥିଲା । ସେ ଲୋକର ଘରେ ରହିବାକୁ ମୋର ଆଦୌ ଇଚ୍ଛା ନ ଥିଲା ।" ପରେ ସେ ଝିଅଟିକୁ ତା' ବାପାଙ୍କ ଜିମାରେ ଛାଡ଼ି ଦିଆଗଲା ।

ସନ ୧୯୩୪।୩୫ର ଘଟଣା । ମୋ' ସାନ ନଣନ୍ଦଙ୍କ ପୁଅର ସ୍ୱାସ୍ଥ୍ୟ ବହୁତ ଦିନରୁ ଖରାପ ରହୁଥିଲା । ଯେତେ ପ୍ରକାର ଔଷଧ ଦିଆଗଲେ ମଧ୍ୟ ସେ ରୋଗ ଭଲହେଉ ନ ଥିଲା । ସେ ସମୟରେ ଦିଲ୍ଲୀରେ ଜଣେ ପ୍ରସିଦ୍ଧ ବୈଦ୍ୟ ରହୁଥିଲେ । ଥରେ ତାଙ୍କୁ ଦେଖାଇବା ଲାଗି ସମସ୍ତେ ମତ ଦେଲେ । ସାନ ନଣନ୍ଦ ଏକୁଟିଆ କିପରି ଦିଲ୍ଲୀ ଯାଇଥାନ୍ତେ; ତେଣୁ ମୁଁ ତାଙ୍କ ସଙ୍ଗରେ ଯାଇଥିଲି । ବୈଦ୍ୟଙ୍କୁ ଦେଖାଇ ଔଷଧ ବ୍ୟବସ୍ଥା କରାଗଲା । ଦିଲ୍ଲୀରେ ଯେଉଁ ସାହିରେ ଆମେ ରହୁଥିଲୁ, ବର୍ତ୍ତମାନ ସେ ସ୍ଥାନ ସମ୍ବନ୍ଧରେ ମୁଁ ଧାରଣା କରିପାରୁ ନାହିଁ; କିନ୍ତୁ ସେ ଅଞ୍ଚଳଟି ଥିଲା ଗୋଟିଏ ଭଲ ସ୍ଥାନ । ପାଖ ପଡ଼ିଶାର ଲୋକମାନେ ଖୁବ୍ ଭଲ ଥିଲେ । ତେଣୁ ଖୁବ୍ ଶୀଘ୍ର ସ୍ତ୍ରୀଲୋକମାନଙ୍କ ସହିତ ଆମର ପରିଚୟ ହୋଇଯିବା ସଙ୍ଗେ ସଙ୍ଗେ ଆତ୍ମୀୟତା ବଢ଼ିଗଲା ।

# ଟିକୋଡ଼ିଏ

**କିଛି ଅସମ୍ଭବ ନୁହେଁ—**

ବନ୍ଧୁ ଦିନରୁ ମୋର ଦିଲ୍ଲୀରେ ଆସେମ୍ବ୍ଲି ଦେଖିବାର ଇଚ୍ଛା ଥିଲା; କାରଣ ଶୁଣିଥିଲି ଯେ ସେଠାରେ ଯେଉଁ ଲୋକମାନେ ବସନ୍ତି, ସେମାନେ ଦେଶର ଶାସନ କରନ୍ତି ଏବଂ ସେହିମାନେ ଯେଉଁ ଆଇନ ପ୍ରଣୟନ କରନ୍ତି, ତାହା ଦେଶରେ ପ୍ରଚଳନ କରାଯାଏ । ତେଣୁ ସେହି ଲୋକମାନଙ୍କୁ ବହୁଦିନରୁ ଦେଖିବାର ବଡ଼ ଅଭିଳାଷ ଥିଲା । ସେମାନଙ୍କ ସମ୍ବନ୍ଧରେ ମୋ' ମନରେ ନାନାପ୍ରକାର କଳ୍ପନା-ଜଳ୍ପନା ମଧ୍ୟ ଥିଲା । ଦିନେ ସାହିପଡ଼ିଶାର ସ୍ତ୍ରୀଲୋକମାନଙ୍କ ସହିତ ବିଚାର କରି, ଆସେମ୍ବ୍ଲି ଦେଖିଯିବାର କାର୍ଯ୍ୟକ୍ରମ ସ୍ଥିର ହେଲା । ଆମ୍ଭେମାନେ ନିର୍ଦ୍ଦିଷ୍ଟ ଦିନରେ ଆସେମ୍ବ୍ଲି ଗଲୁ । ମୁଁ ସେଠାରେ ପହଞ୍ଚି ଅନେକ ସମୟ ପର୍ଯ୍ୟନ୍ତ ନୀରବରେ ବସି, ସଭା ଭବନର ଚାରିଆଡ଼କୁ ଚାହିଁଲି । କିଛି ସମୟ ପରେ ମୋ' ପାଖରେ ବସିଥିବା ଜଣେ ପଡ଼ୋଶିଣୀଙ୍କୁ ପଚାରିଲି—"ଏଠାକୁ ଯେଉଁମାନେ ଆସନ୍ତି, ସେମାନେ କି'ଣ ଖୁବ୍ ଧନୀ ବ୍ୟକ୍ତି, ନା ଯେ କୌଣସି ଲୋକ ସଭ୍ୟ ଭାବରେ ଏଠାକୁ ଆସିପାରେ ?"

ସେ ଟିକିଏ ହସିଦେଇ ମୋ' ଆଡ଼କୁ ଚାହିଁ କହିଲେ—"ଆପଣ ଗାନ୍ଧୀଜୀଙ୍କ ସମ୍ବନ୍ଧରେ ସ୍ୱପ୍ନ ଦେଖୁଛନ୍ତି କି ? ଭଉଣୀ, ତାଙ୍କ ପକ୍ଷରେ ଏହା ଖୁବ୍ କଷ୍ଟସାଧ୍ୟ ବ୍ୟାପାର ! ଏଠାକୁ ବଡ଼ ବଡ଼ ଲୋକମାନେ......"

ତାଙ୍କ କଥା ଶେଷ ନ ହେଉଣୁ ସାମନା ଚେୟାରରେ ବସିଥିବା ଜଣେ ପ୍ରୌଢ଼ା ଭଦ୍ରମହିଳା ଆମ ଆଡ଼କୁ ମୁହଁ ବୁଲାଇ କହିଲେ, "କିଏ ସେ କଥା କହୁନା ! ମଣିଷ ପକ୍ଷରେ କିଛି ଅସମ୍ଭବ ନୁହେଁ । ବଡ଼ ଛୋଟ ମଧ୍ୟରେ କିଛି ପାର୍ଥକ୍ୟ ନାହିଁ । ସେ କିଏ ଯଦି ଭାବୁଛି, ତାହା କିଛି ଅସମ୍ଭବ କଥା ନୁହେଁ ।

ଆଜି ମୋର ଇଚ୍ଛା ହେଉଛି, ଯଦି ସେ ଭଦ୍ରମହିଳାଙ୍କ ଦର୍ଶନ ପା'ନ୍ତି ତା'ହେଲେ ନିଶ୍ଚିତ ଭାବରେ ତାଙ୍କ ପାଦଛୁଇଁ ଜୀବନକୁ ଧନ୍ୟ ମନେ କରନ୍ତି ।

ଶାସ୍ତ୍ରୀଜୀ ଜେଲ୍‌ରୁ ଖଲାସ ହେବାପରେ ପଣ୍ଡିତଜୀ ( ପଣ୍ଡିତ ଜବାହରଲାଲ ନେହେରୁ ) ଙ୍କର ସମସ୍ତ ପ୍ରକାର ଚିଠିପତ୍ରର ଆଦାନପ୍ରଦାନ ଭାର ଗ୍ରହଣ କରୁଥିଲେ । ଆବଶ୍ୟକ ସ୍ଥଳେ ପଣ୍ଡିତଜୀ କିଛି ପଚାରିଲେ, ସେ ସମୁଚିତ ପରାମର୍ଶ ଦେଉଥିଲେ । ଶାସ୍ତ୍ରୀଜୀଙ୍କ ଉପରେ ପଣ୍ଡିତଜୀଙ୍କର ଅଗାଧ ବିଶ୍ୱାସ ରହିଥିଲା । ପଣ୍ଡିତଜୀଙ୍କ ନିକଟକୁ ନାନାପ୍ରକାର ଚିଠି ବହୁ ସଂଖ୍ୟାରେ ଆସୁଥିଲା । ଦିନେ ତାଙ୍କ ନିକଟକୁ ଜଣୈକ ଭଦ୍ରବ୍ୟକ୍ତିଙ୍କର ଖଣ୍ଡିଏ ପତ୍ର ଆସିଲା । ସେଥିରେ ସେ ଯାହା ଲେଖିଥିଲେ, ତାହାର ସାରାଂଶ ହେଉଛି—ନିଜ ସ୍ତ୍ରୀଙ୍କ ଉପରେ ସେ ଲୋକଟିର ସନ୍ଦେହଜାତ ହୋଇଥିବାରୁ ତାଙ୍କ ପାରିବାରିକ ଜୀବନ ଅଶାନ୍ତିମୟ ହୋଇପଡ଼ିଛି । ସେ ନିଜର ସନ୍ଦେହ ଦୂର କରିବାର ଉପାୟ ସମ୍ବନ୍ଧରେ, ପଣ୍ଡିତଜୀଙ୍କର ପରାମର୍ଶ ମାଗିଥିଲେ । ପଣ୍ଡିତଜୀ ପତ୍ରଟିକୁ ଶାସ୍ତ୍ରୀଜୀଙ୍କୁ ଦେଖାଇଲେ । ଶାସ୍ତ୍ରୀଜୀ ସେ ପତ୍ରର ଉତ୍ତର କିଛି ନ ଦେବାକୁ ସ୍ଥିରକରି କହିଲେ, "ଏହାର କ'ଣ ଉତ୍ତର ଦିଆଯିବ ?"

"ନା, ଉତ୍ତର ଦେବାକୁ ହେବ ! ତୁମେ ଏହି ପତ୍ରଟିକୁ ଘରକୁ ନେଇଯାଅ ! ନିଜ ସ୍ତ୍ରୀଙ୍କୁ ପଚାରିବ । ମୁଁ ଭାବୁଛି ସେ କିଛି ମତାମତ ଦେଇ ପାରିବେ । ମୁଁ ତ ଏ ସବୁ ବିଷୟରେ କିଛି ଚିନ୍ତାକରି ପାରୁନାହିଁ, କମଲା ଥିଲେ ଅବା ଯାହା କିଛି ହୁଅନ୍ତା !"

ଶାସ୍ତ୍ରୀଜୀ ଚିଠିଟିକୁ ଘରକୁ ନେଇ ଆସିଲେ । ଖାଇ ସାରିବା ପରେ ଘର ଭିତରେ ଟିକିଏ ଟହଲୁଥିବାବେଳେ ସେହି ଚିଠିଟି ବିଷୟରେ ଆଲୋଚନା କରି ପଣ୍ଡିତଜୀଙ୍କ କଥା ମୋତେ କହିଲେ । ମୁଁ ସବୁ ଶୁଣିଲି । ତା'ପରେ, ଶାସ୍ତ୍ରୀଜୀ ମୋର ମତାମତ ମାଗିଲେ । ମୁଁ ଅତି ସହଜ ଭାବରେ ଉତ୍ତର ଦେଲି—"ମୋ' ସମ୍ବନ୍ଧରେ ଆପଣ ଯାହା ଭାବୁଛନ୍ତି, ତାହା ହିଁ ସେ ଭଦ୍ରବ୍ୟକ୍ତିଙ୍କୁ ଲେଖିଦିଅନ୍ତୁ । ମୁଁ ଭାବୁଛି ସେ ମହାଶୟଙ୍କ ସମସ୍ୟାର ସମାଧାନ ହୋଇଯିବ ।"

ଶାସ୍ତ୍ରୀଜୀ ମଧ୍ୟ ଠିକ୍ ସେହିପରି ଭାବରେ ଲେଖି ଚିଠିର ଉତ୍ତର ପଠାଇ ଦେଇଥିଲେ ।

———

# ଏକୋଇଶ

**ଦୁଃଖ ଓ କଷ୍ଟରେ ସାହାଯ୍ୟ—**

ସନ ୧୯୫୦ ସାଲରେ ନଡ଼ିଖିଆ କୁସୁମର ବିବାହ ଲକ୍ଷ୍ନୌରେ ଅନୁଷ୍ଠିତ ହେଲା । ମୋର ଦ୍ୱିତୀୟ ଓ ତୃତୀୟ ପୁତ୍ର ମଧ୍ୟ ଲକ୍ଷ୍ନୌରେ ଜନ୍ମ ଗ୍ରହଣ କରିଥିଲେ । ଦୁଇବରଷ ପରେ ସନ ୧୯୫୨ରେ ଶାସ୍ତ୍ରୀଜୀ ରେଲୱେ ମନ୍ତ୍ରୀ ହୋଇଯିବାରୁ, ଆମ୍ଭେମାନେ ଲକ୍ଷ୍ନୌରୁ ଦିଲ୍ଲୀ ଆସିଗଲୁ । ସମୟର ରୂପ ପରିବର୍ତ୍ତିତ ହୋଇ ଯାଇଥିଲା । ଶାସ୍ତ୍ରୀଜୀଙ୍କ ସୁନାମ ବଢ଼ିବା ସଙ୍ଗେ ସଙ୍ଗେ ତାଙ୍କର କାର୍ଯ୍ୟକ୍ଷେତ୍ର ବ୍ୟାପକ ହୋଇ ଯାଇଥିଲା ।

ଶାସ୍ତ୍ରୀଜୀ ରେଲୱେ ମନ୍ତ୍ରୀ ହୋଇଥିବାରୁ, ତାଙ୍କର ଯିବା ଆସିବା ଲାଗି ସ୍ୱତନ୍ତ୍ର ବଗି କିମ୍ବା ଶୀତତାପ ନିୟନ୍ତ୍ରିତ ବଗିର ବନ୍ଦୋବସ୍ତ କରିବା ଆବଶ୍ୟକ ହୋଇଥିଲା; କିନ୍ତୁ ଗ୍ରୀଷ୍ମମାସ ବିତିଯାଇଥିଲେ ମଧ୍ୟ ସେ ନିଜ ପାଇଁ କୌଣସି ସ୍ୱତନ୍ତ୍ର ବଗିର ବନ୍ଦୋବସ୍ତ କରି ନ ଥିଲେ କିମ୍ବା କେବେ ହେଲେ ଶୀତତାପ ନିୟନ୍ତ୍ରିତ ବଗି ବ୍ୟବହାର କରି ନ ଥିଲେ । ତାଙ୍କର କେଉଁଠାକୁ ଯିବାକୁ ହେଲେ, ଗୋଟିଏ ପ୍ରଥମଶ୍ରେଣୀ ବଗିକୁ ଅନ୍ୟ ଗାଡ଼ିରେ ଯୋଡ଼ି ଦିଆଯାଉଥିଲା । କେବଳ ବିଶେଷତ୍ୱ ଏତିକି ଥିଲା ଯେ, ସବୁଦିନେ ଗୋଟିଏ ନିର୍ଦ୍ଦିଷ୍ଟ ବଗି ତାଙ୍କପାଇଁ ଯୋଗାଇ ଦିଆଯାଉଥିଲା । ଅଧିକାଂଶ ଥର ମୁଁ ଯିବା ଆସିବା କରୁଥିଲି । ସବୁ ପ୍ରଥମଶ୍ରେଣୀ ବଗିରେ 'ଇଂଲିଶ ଟାଇପ୍ କମୋଡ଼' ଲଗାଯାଇଥିଲା । ମୋର ବିଶ୍ୱାସ ହେଉ କିମ୍ବା ଅଭ୍ୟାସ ହେଉ, ମୁଁ ପିଲାଦିନରୁ ପୂଜାପାଠ କରେ ଏବଂ ସଫା ସୁତୁରା ପ୍ରତି ଅଧିକ ଦୃଷ୍ଟି ଦିଏ । ଫଳ ସ୍ୱରୂପ, ରେଳଯାତ୍ରା ସମୟରେ, ପ୍ରତିଦିନ ନିତ୍ୟକର୍ମ ସାରିବା ପରେ ମୁଁ ଗାଧୁଆ ପାଧୁଆ କରିବାରେ ବିଶେଷ ଅସୁବିଧା ଭୋଗ କରୁଥିଲି । ମୁଁ 'ବାଥ୍ ରୁମ୍' ଭିତରେ ଗାଧୋଇ ପାରେନାହିଁ; କାରଣ ସେଠାରେ ଟପ୍ ଟପ୍ ହୋଇ ପାଣି ପଡ଼େ । ଏପରି ଅବସ୍ଥାରେ ବଗି ଭିତରେ ଗାଧୋଇବାର ବ୍ୟବସ୍ଥା କରାଗଲା । ଅବଶ୍ୟ ମୁଁ ଏହା କରିବାକୁ ଚାହୁଁ ନ ଥିଲି; କାରଣ ଏହା ଫଳରେ ତଳେ ଥିବା ଜିନିଷପତ୍ରଗୁଡ଼ିକୁ ଉଠାଇ ସିଟ୍ ଉପରେ ରଖିବାଲାଗି ଶାସ୍ତ୍ରୀଜୀଙ୍କୁ ଅସୁବିଧା ହେଉଥିଲା । ଦ୍ୱିତୀୟରେ ପାଣି ଯୋଗୁଁ ଜାଗାଟି ଚପ୍ ଚପ୍ ହୋଇଯାଉଥିଲା । ଶାସ୍ତ୍ରୀଜୀ

ଏହା ପସନ୍ଦ କରୁ ନ ଥିଲେ; କିନ୍ତୁ ଶାସ୍ତ୍ରୀଜୀ ନିଜର ଅସୁବିଧା ସତ୍ତ୍ୱେ ମୋର ଅସୁବିଧା ପ୍ରତି ବିଶେଷ ଦୃଷ୍ଟି ଦେଉଥିଲେ । ମୋର ଭଜନ ପୂଜନରେ କୌଣସି ପ୍ରକାର ଅସୁବିଧା ଯେପରି ନ ହୁଏ, ସେଥିଲାଗି ସେ ବିଶେଷ ତତ୍ପର ରହୁଥିଲେ । ମୁଁ ବାରମ୍ବାର ମନା କଲେ ସୁଦ୍ଧା, ସେ ସେଥିପ୍ରତି କର୍ଣ୍ଣପାତ ନ କରି, ସମୟାନୁସାରେ ମୋର ଗାଧୁଆ ପାଧୁଆର ବନ୍ଦୋବସ୍ତ କରି ଦେଉଥିଲେ ।

**କୁଲର୍ ବାହାର କର—**

କିଛିଦିନ ପରେ ମୋର ଏ ପ୍ରକାର ସମସ୍ୟାର ସମାଧାନ ହୋଇ ଯାଇଥିଲା । ଶାସ୍ତ୍ରୀଜୀ ଇଂଲିଶ ଟାଇପ୍‌ର 'କମୋଡ୍' ସ୍ଥାନରେ ଭାରତୀୟ ଧରଣର 'କମୋଡ୍' ବ୍ୟବସ୍ଥା କରାଇ ଗାଧୋଇବା ଲାଗି ଗୋଟିଏ କଳ ଲଗାଇ ଦେଇଥିଲେ । କେବଳ ସେଇଥିଲାଗି ଶାସ୍ତ୍ରୀଜୀ କେଉଁଠାକୁ ଯିବାବେଳେ, ସେହି ନିର୍ଦ୍ଦିଷ୍ଟ ପ୍ରଥମଶ୍ରେଣୀ ବଗିଟିକୁ ଯୋଗାଇ ଦିଆ ଯାଉଥିଲା ।

ଥରେ ଗରମ ଦିନରେ ମୁଁ ତାଙ୍କ ସଙ୍ଗରେ ବମ୍ବେ ଯାଉଥିଲି । ଗାଡ଼ି ଚାଲିବାରୁ ସେ କହିଲେ—"ବାହାରେ ତ ଖୁବ୍ ଗରମ ହେଉଛି, ବଗି ଭିତରେ ଏତେ ଥଣ୍ଡା କିପରି ?" ଶାସ୍ତ୍ରୀଜୀଙ୍କ ପି. ଏ. କୈଳାଶବାବୁ କହିଲେ—"ଆଜ୍ଞା, ଏଥିରେ କୁଲର୍ ଲଗାଯାଇଛି ।" ଶାସ୍ତ୍ରୀଜୀ ତାଙ୍କ ଆଡ଼କୁ ଆଶ୍ଚର୍ଯ୍ୟ ହୋଇ ଚାହିଁ କହିଲେ—"କୁଲର୍ ଏଥିରେ ଲାଗିଛି ?"

"ଆଜ୍ଞା, ହଁ ।"

"ମୋତେ ନ ପଚାରି ? କୌଣସି କାମ କରିବା ପୂର୍ବରୁ ଆପଣମାନେ ମୋତେ ପଚାରୁ ନାହାନ୍ତି କାହିଁକି ? ଅନ୍ୟମାନେ ଯେଉଁ ଗାଡ଼ିରେ ବସିଛନ୍ତି, ସେମାନଙ୍କୁ ଗରମ ଲାଗୁନାହିଁ ? ନୀତି ଅନୁସାରେ ମୋର ଦ୍ୱିତୀୟଶ୍ରେଣୀ ବଗିରେ ଯିବାର କଥା । ଯଦି ତାହା ସମ୍ଭବ ନ ହେଉଛି, ଯେତିକି କରିବାର କଥା ସେତିକି କରିବା ଉଚିତ । ବେଳେ ବେଳେ ଆପଣମାନେ ବଡ଼ ଭୁଲ କରୁଛନ୍ତି ! ଏହାପରେ ଗାଡ଼ି ଯେଉଁଠି ଅଟକିବ, ସେଠାରେ 'କୁଲର୍' ବାହାର କରାଇ ଦିଅନ୍ତୁ ।"

ମଥୁରା ଷ୍ଟେସନରେ ଗାଡ଼ି ଅଟକିଲା । ସେଠାରେ 'କୁଲର୍' ବାହାର କରି ନିଆଯିବା ପରେ, ଗାଡ଼ି ସେଠାରୁ ଛାଡ଼ିଲା । ଆଜି ମଧ୍ୟ କୁଲର୍ ସ୍ଥାନରେ ଯେଉଁ କାଠ ଲଗାଯାଇଛି, ତାହା ଶାସ୍ତ୍ରୀଙ୍କର ଅନୁପମ ଭାବନାକୁ ବ୍ୟକ୍ତ କରିବାରେ ସମର୍ଥ ହେଉଛି ।

**ପଇସା ଅଭାବ—**

ଜୀବନର ପ୍ରାଥମିକ ଅବସ୍ଥାରେ ଯେତେବେଳେ ଜୀବନସଂଗ୍ରାମରେ ବ୍ୟସ୍ତ ରହି ଅଗ୍ରଗତି କରିବାକୁ ପଡୁଥିଲା; ସେତେବେଳେ ସଞ୍ଚୟ କରିବା ସମ୍ବନ୍ଧରେ କୌଣସି ପ୍ରଶ୍ନ

ଉଠୁନ ଥିଲି; କିନ୍ତୁ ଶାସ୍ତ୍ରୀଜୀ ସରକାରରେ ଯୋଗଦେବାପରେ, ମୋର କିଛି ଧନ ସଞ୍ଚୟ କରିବାର ଇଚ୍ଛା ହୋଇଥିଲା । ମୋର ଧାରଣା ଥିଲା, ଯଦି କିଛି ଧନ ସଞ୍ଚୟ କରାଯାଇ ପାରନ୍ତା; ତା'ହେଲେ ଭବିଷ୍ୟତରେ ପିଲାପିଲିଙ୍କର ପଢ଼ାପଢ଼ି ତଥା ବିବାହ ନିମିତ୍ତ ଆଦରେ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ନ୍ତା ନାହିଁ; କିନ୍ତୁ ବହୁ ଚେଷ୍ଟା କଲେ ସୁଦ୍ଧା ମୁଁ କେବେହେଲେ ମୋର ଇଚ୍ଛା ପୂରଣ କରିପାରୁ ନ ଥିଲି । ଶାସ୍ତ୍ରୀଜୀ ପ୍ରାୟ କୌଣସି ବ୍ୟକ୍ତିର ଅସୁବିଧାରେ ତଥା କାହାରି କାହାରି ଆର୍ଥିକ ସଙ୍କଟ ସମୟରେ, ତାଙ୍କର ଅର୍ଥାଭାବ ଦୂର କରିବାଲାଗି ସାହାଯ୍ୟ କରୁଥିଲେ । ଏହାବ୍ୟତୀତ ଗରିବ ବିଦ୍ୟାର୍ଥୀମାନଙ୍କୁ ସାହାଯ୍ୟ ଦେବାଲାଗି ସେ ବିଶେଷ ତତ୍ପର ଥିଲେ । ତାଙ୍କ ଦୃଷ୍ଟିକୁ ଆସିବାକ୍ଷଣି, ସେ ନିଜ ଶକ୍ତି ଅନୁସାରେ, ତାଙ୍କଦ୍ୱାରା ଯାହା କିଛି ସମ୍ଭବ ହୋଇପାରେ, ସମସ୍ତ ପ୍ରକାର ସୁବିଧା କରୁଥିଲେ । ଏହାର ଫଳସ୍ୱରୂପ, ମୁଁ ଏଣୁ ତେଣୁ କରି ଯାହା ଯେତେବେଳେ ସଞ୍ଚୟ କରି ରଖୁଥିଲି, ତାହା ଏହି ସବୁ କାମରେ ଖର୍ଚ୍ଚ ହୋଇଯାଉଥିଲା । ମୁଁ ଶାସ୍ତ୍ରୀଜୀଙ୍କୁ ପରିଷ୍କାର କହି ଦେଇଥିଲି ଯେ, ପଇସାପଇ ବ୍ୟତୀତ ମୁଁ ତାଙ୍କ ପାଖରେ ଅନ୍ୟ କିଛି ଗୋପନ ରଖୁନାହିଁ । ତଥାପି ସେ କାହାରିକୁ ଦେବା ଉଦ୍ଦେଶ୍ୟରେ ଯେତେବେଳେ ପଇସା ମାଗୁଥିଲେ, ମୁଁ ଦୁଇତିନିଥର 'ନାହିଁ ନାହିଁ' କରି ପୁଣି ଦେଇ ଦେଉଥିଲି ।

ମୋ ପାଖରେ ଶାସ୍ତ୍ରୀଜୀଙ୍କର ପଇସା ମାଗିବାର ଗୋଟିଏ ଅଦ୍ଭୁତ ଉପାୟ ଥିଲା । ସେ ମାଗିବା ପୂର୍ବରୁ, ମୁଁ ତାହା ବେଶ୍ ଜାଣି ପାରୁଥିଲି । ସେ ଯେଉଁଦିନ ଗୋଟିଏ ହାତରେ ମୁଣ୍ଡ କୁଣ୍ଡାଇ କୁଣ୍ଡାଇ ଘର ଭିତରକୁ ଆସନ୍ତି, ମୁଁ ଜାଣିପାରେ ଯେ, ତାଙ୍କର ପଇସା ମାଗିବାର ଅଛି । ତେଣୁ ତାଙ୍କୁ ସେ ପ୍ରକାର ଆସୁଥିବାର ଦେଖିଲେ ମୋ' ପାଖରେ ଥିବା କୁସୁମ ବା ସୁମନକୁ ମୁଁ କହେ, "ଦେଖ, ତୋ ବାପା ବର୍ତ୍ତମାନ ପଇସା ମାଗିବେ ।"

ମୋ ଅନୁମାନ ସତ୍ୟ ହୁଏ । ଶାସ୍ତ୍ରୀଜୀ ପ୍ରଥମେ ସେହି ଲୋକର ଦୁଃଖ ଦୁର୍ଦ୍ଦଶା ବିଷୟରେ ପୂର୍ଣ୍ଣ ବିବରଣୀ ମୋ' ଆଗରେ ବଖାଣି, ତା'ପରେ ମୋତେ ପଇସା ମାଗନ୍ତି । ମୁଁ ଦେବାକୁ ନାହିଁ କଲେ ସେ ଟିକିଏ ହସିଦେଇ କହନ୍ତି—"ଦେଖ, ଦେଖ, କେଉଁ ଶାନ୍ତି ଭିତରେ ରହିଥିବ । ତୁମର ପଇସାରେ ଯଦି କାହାର ଦୁଃଖ ଦୂର ହୋଇପାରିବ, ତା' ହେଲେ ସ୍ୱା' ଠାରୁ ବଳି ଆଉ ବଡ଼ କଥା କ'ଣ ଅଛି !" ଶେଷକୁ ମୋତେ ବାଧ୍ୟହୋଇ ପଇସା ବାହାର କରିବାକୁ ପଡ଼େ ।

———

# ବାଇଶି

**ବିଧିର ବିଧାନ—**

ସନ ୧୯୫୫ ରେ ମୋର ଦ୍ୱିତୀୟ ଝିଅ ସୁମନର ବିବାହ ହୋଇଗଲା । ବିବାହ କାର୍ଯ୍ୟ ଯେକୌଣସି ପ୍ରକାରେ ବଢ଼ିଗଲା; ମାତ୍ର ସେଥିରେ ଆମର ଅନେକ ଟଙ୍କା କରଜ ହୋଇଗଲା । ଏହିସବୁ କରଜ ଶୁଝିବା ଲାଗି ମୋଟରଟିକୁ ବିକ୍ରି କରିବାକୁ ପଡ଼ିଲା । ତା' ବ୍ୟତୀତ ଅନ୍ୟ କିଛି ଉପାୟ ନ ଥିଲା । ମୋଟରଟିକୁ ବିକ୍ରି କରି ଯାହାର ଯାହା ଥିଲା, ଦେଇ ଦିଆଗଲା ।

ପ୍ରକୃତ ଦୃଷ୍ଟିରୁ ବିଚାର କରିବାକୁ ଗଲେ, ଯେଉଁ ମନ୍ତ୍ରୀଙ୍କ ଅଧୀନରେ ଯେଉଁ ବିଭାଗ ଥାଏ, ସେ ବିଭାଗର ପ୍ରତ୍ୟେକ ହାନିଲାଭ ପାଇଁ ତାଙ୍କୁ ହିଁ ବୋଝ ମୁଣ୍ଡାଇବାକୁ ପଡ଼େ । ସେହି ଦୃଷ୍ଟିରୁ ରେଲୱେ ବିଭାଗର ଭଲ ମନ୍ଦ ଲାଗି ଶାସ୍ତ୍ରୀଜୀଙ୍କୁ ଦାୟୀ କରାଯାଇପାରେ; ମାତ୍ର ପ୍ରକୃତରେ ଘଟଣା ଥିଲା ଅନ୍ୟ ପ୍ରକାର । ଶାସ୍ତ୍ରୀଜୀ ରେଲୱେ ବିଭାଗଟିକୁ ସଜାଡ଼ିଦେବା ଉଦ୍ଦେଶ୍ୟରେ ଆପ୍ରାଣ ଚେଷ୍ଟା କରିଥିଲେ; ମାତ୍ର ସେ ଯେପରି ଚାହୁଁଥିଲେ; ତାଙ୍କ ଇଚ୍ଛାନୁସାରେ କାର୍ଯ୍ୟ ହୋଇପାରିଲା ନାହିଁ । ଫଳରେ ସେ ଉକ୍ତ ବିଭାଗରୁ ତ୍ୟାଗପତ୍ର ଦେଇ ଅପସରି ଯିବାକୁ ଉଚିତ ମନେକଲେ । ସେ ତ୍ୟାଗପତ୍ର ଦେଇଦେଲେ । ମନ୍ତ୍ରୀତ୍ୱ ଛାଡ଼ିବାପରେ ପନ୍ଦରଦିନ ମଧ୍ୟରେ ସରକାରୀ ଘର ଛାଡ଼ିଦେବାର ନିୟମ ଥିଲା । ନିର୍ଦ୍ଦିଷ୍ଟ ଦିନ ମଧ୍ୟରେ ସରକାରୀ ଘର ଛାଡ଼ି ଦିଆଗଲା ଓ ଆମ୍ଭେମାନେ ଏମ୍. ପି. କ୍ୱାର୍ଟରକୁ ଚାଲିଆସିଲୁ । ତା'ପରେ ୧୯୫୭ ସାଧାରଣ ନିର୍ବାଚନ ଆସିଗଲା । ସେତେବେଳେ ଖୁବ୍ ପାଟିତୁଣ୍ଡ ହେଲା । ଶାସ୍ତ୍ରୀଜୀ ନିଜର ପୂର୍ବ ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହେଲେ । ପ୍ରଥମଥର ପରି ସାଧାରଣ ଜନତା ତାଙ୍କ ପ୍ରତି ସ୍ନେହ ଓ ସୌହାର୍ଦ୍ଦ୍ୟ ପ୍ରଦର୍ଶନ କରିଥିବାରୁ ସେ ବିଜୟୀ ହେଲେ । ପଣ୍ଡିତଜୀଙ୍କ ନେତୃତ୍ୱରେ ପୁଣି ସରକାର ଗଠିତ ହେଲା ।

୧୯୫୯ ସାଲ ଅକ୍ଟୋବର ଦୁଇ ତାରିଖରେ ଶାସ୍ତ୍ରୀଜୀ ଦିଲ୍ଲୀରୁ ଏଲାହାବାଦ ଯାଉଥିଲେ । ସଙ୍ଗରେ ମୁଁ ଥିଲି । ସେ ସମୟରେ ସେ ବାଣିଜ୍ୟବିଭାଗର ମନ୍ତ୍ରୀ ଥିଲେ ।

ସକାଳୁ ଉଠିବା ପରେ ସେ ହାତ ଉପରକୁ ଟିକିଏ ଯନ୍ତ୍ରଣା ହେଉଥିବାର କହିଲେ । "ମୁକ୍ତି ଗଙ୍ଗ"ରେ ପହଞ୍ଚିବା ପରେ, ମୁଁ ଡାକ୍ତରଙ୍କୁ ଡାକିବାକୁ କହିଲି । ପ୍ରଧାନମନ୍ତ୍ରୀ ହେବା ପର୍ଯ୍ୟନ୍ତ, ଯେତେବେଳେ ଶାସ୍ତ୍ରୀଜୀ ଏଲାହାବାଦ ଆସୁଥିଲେ, ସେତେବେଳେ ସେ ଆମର ସେହି ପୁରୁଣା ଘରେ ରହୁଥିଲେ । ସେଥିରେ ଆମର ଜଣେ ଆତ୍ମୀୟ ରହୁଥିଲେ । ଆମେ ଆସିବା ମାତ୍ରେ, ସେ ଘର ଖାଲି କରି ଦେଉଥିଲେ । ଯେଉଁ ସମୟରେ ମୁଁ ଡାକ୍ତରଙ୍କୁ ଡାକିବାକୁ କହୁଥିଲି, ସେତିକିବେଳେ ଶାସ୍ତ୍ରୀଜୀ ଗାଧୁଆ ଘରୁ ବାହାରି ଆସିଥିଲେ । ମୋ' କଥା ଶୁଣି ସେ କହିଲେ—"ତୁମେ ବି ଛୋଟ ଛୋଟ ଘଟଣାରେ ଡାକ୍ତରଙ୍କୁ ଡାକିବାରେ ଲାଗିଲଣି ! ଯନ୍ତ୍ରଣା ଟିକିଏ ହେଉଛି, ସବୁ ଠିକ୍ ହୋଇଯିବ । ଏଥିପାଇଁ ଏତେ ବ୍ୟସ୍ତ କାହିଁକି ? ଏବେ ଥାଉ, କିଛି ଦରକାର ନାହିଁ ।"

ତାଙ୍କର ଯେଉଁ ମିଟିଂକୁ ଯିବାର ଥିଲା, ସେ ବାହାରି ଚାଲିଗଲେ । ଫେରି ଆସିବା ପରେ ଯନ୍ତ୍ରଣା କମ୍ ନ ହେବାରୁ ଡାକ୍ତରଙ୍କୁ ଡାକିବାକୁ ପଡ଼ିଲା । କାରଣ, ଆଉ ଗୋଟିଏ ମିଟିଂରେ ଯୋଗ ଦେବାଲାଗି ତାଙ୍କର ମିର୍ଜାପୁର ଯିବାର ଥିଲା । ମୁଁ ଡାକ୍ତରଙ୍କୁ ନ ଦେଖାଇ ତାଙ୍କ ମିର୍ଜାପୁର ଯିବାର ସପକ୍ଷରେ ନ ଥିଲି । ଡାକ୍ତର ଆସି ପରୀକ୍ଷା କରି ତାଙ୍କୁ ମିର୍ଜାପୁର ନ ଯିବାଲାଗି ପରାମର୍ଶ ଦେଲେ । ତେଣୁ ତାଙ୍କ ଯିବା ବନ୍ଦ ହେଲା । ତାଙ୍କ ନ ଯିବାର ସମ୍ବାଦ ମିର୍ଜାପୁରକୁ ପଠାଇ ଦିଆଗଲା ।

## ହୃଦ୍ ରୋଗରେ ଆକ୍ରାନ୍ତ—

ପ୍ରାୟ ରାତିଅଧ ବେଳକୁ ଶାସ୍ତ୍ରୀଜୀ ମୋତେ ଉଠାଇ ପଙ୍ଖା ଚଳାଇବାକୁ କହିଲେ । ସେତେବେଳେ ତାଙ୍କୁ ଭୀଷଣ ଗରମ ବୋଧ ହେଉଥିଲା । ମୁଁ ବତି ଜଳାଇ ଦେଖିଲି ଯେ, ପଙ୍ଖା ଚାଲୁଛି । ମୋ' ଦୃଷ୍ଟି ତାଙ୍କ ଆଡ଼କୁ ଯିବା ମାତ୍ରେ, ମୁଁ ତାଙ୍କୁ ଦେଖି ଡରିଗଲି । ଏତେ ପବନରେ ସେ ଝାଳରେ ବୁଡ଼ବୁଡ଼ୁ ହୋଇ ଯାଉଥିଲେ । ତାଙ୍କର ଯନ୍ତ୍ରଣା ଅଧିକ ହେଉଛି ବୋଲି କହିବା ସଙ୍ଗେ ସଙ୍ଗେ ଆଉ ଗୋଟିଏ ପଙ୍ଖା ଚଳାଇବାକୁ କହିଲେ । ମୁଁ ସଙ୍ଗେ ସଙ୍ଗେ ରାୟ ଅମରନାଥଜୀଙ୍କୁ ଫୋନ୍ କଲି । ସେ ସଙ୍ଗେ ସଙ୍ଗେ ଆସି ପହଞ୍ଚିଲେ । ଶୀଘ୍ର ଡାକ୍ତର ଡକା ହୋଇ ଆସିଲେ । ଇଞ୍ଜେକ୍ସନ୍ ପ୍ରଭୃତି ଦିଆଗଲା । ତା'ପରେ ଲକ୍ଷ୍ନୌ ଓ ଦିଲ୍ଲୀର କୌଣସି ବିଶେଷଜ୍ଞ ଡାକ୍ତରଙ୍କୁ ଫୋନ୍ କରି ଯଥାଶୀଘ୍ର ସମ୍ଭବ, ଆସିବାକୁ କୁହାଗଲା । ଫୋନ୍‌ରେ ଯାହା କଥାବାର୍ତ୍ତା ଚାଲିଥିଲା, ସେଥିରୁ ମୁଁ କେବଳ ଏତିକି ଆଭାସ ପାଇଥିଲି ଯେ, "ଶାସ୍ତ୍ରୀଜୀଙ୍କୁ ଏକ ସାଂଘାତିକ ରୋଗ ଆକ୍ରମଣ କରିଛି ।"

ଶାସ୍ତ୍ରୀଜୀଙ୍କୁ ଡାକ୍ତରଖାନା ନିଆଗଲା । ସେଠାରେ ମୁଁ ଜାଣିଲି ଯେ, ସେ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇଥିଲେ । ମୁଁ କୁସୁମ ଓ ସୁମନଙ୍କୁ ଫୋନ୍ କରି

ଡକାଇନେଲି । ସେତେବେଳେ ମୋର ଯାହା ଅବସ୍ଥା ହୋଇଥିଲା, ତାହା ଆଉ କହିବି କ'ଣ, କେବଳ ଭଗବାନ ଜାଣନ୍ତି । ମୋ' ପକ୍ଷରେ ଏହା ଏପରି ପୀଡ଼ାଦାୟକ ହୋଇଥିଲା ଯେ, ଯାହା କାହାରି ଆଗରେ ପ୍ରକାଶ କରିବା ସମ୍ଭବ ନୁହେଁ । ମୋତେ ଲୋକ ଶୋଷ ଲାଗୁ ନ ଥିଲା । ସତେ ଯେପରି ଜୀବନରେ ଏହାର ଗୁରୁତ୍ୱ ବିଶେଷ କିଛି ନାହିଁ ! କୁସୁମ ଓ ସୁମନ ଆସିଥିବା ପରେ ଶାସ୍ତ୍ରୀଜୀ କୁସୁମକୁ କହିଲେ, "ତୋ' ମା'କୁ ତୁ ଦେଖିଲୁଣି ? ସେ କିଛି ଖାଉଛି ନା ନାହିଁ ? ତା' ଖିଆପିଆର ଟିକିଏ ଯତ୍ନ ନିଅ । ଖିଆପିଆ ବିନା ତା'ର ବିଚିତ୍ର ଦଶା ହେଲାଣି ।' ମୋର ନବରାତ୍ରି ବ୍ରତ ଥିଲା । ତେଣୁ ଫଳାହାର କରିବା ବ୍ୟତୀତ ମୁଁ ଅନ୍ୟ କିଛି ଖାଉ ନ ଥିଲି । ଏ ବିଷୟ ଜଣା ପଡ଼ିବା ପରେ ସିଂହ ସାହେବ ଶୀଘ୍ର ତାଙ୍କ ଘରୁ ଫଳାହାର ପ୍ରସ୍ତୁତ କରି ପଠାଇଲେ । ମୁଁ ଠାକୁରଙ୍କ ପାଖରେ ଭୋଗ ଲଗାଇ ପ୍ରସାଦ ଗ୍ରହଣ କଲି ।

ନବରାତ୍ରି ବ୍ରତ ଶେଷ ହେବା ପର୍ଯ୍ୟନ୍ତ ପ୍ରତିଦିନ ସିଂହସାହେବଙ୍କ ଘରୁ ଫଳାହାର ଆସୁଥିଲା । ଶାସ୍ତ୍ରୀଜୀ ଧୀରେ ଧୀରେ ସୁସ୍ଥ ହେବାକୁ ଲାଗିଲେ । ତଥାପି ତାଙ୍କୁ ପୂର୍ଣ୍ଣଭାବରେ ସୁସ୍ଥ ହେବାକୁ ଦୁଇମାସ ସମୟ ଲାଗିଲା । ତାଙ୍କର ସାଙ୍ଘାତିକ ରୋଗ ବିଷୟରେ ଆଲୋଚନା ପଡ଼ିଲେ ମୁଁ କହେ—"ସେ ମୋ' ସାଙ୍ଗ ଛାଡ଼ି ଯାଉଥା'ନ୍ତେ କୁଆଡ଼େ ? ମୁଁ ତାଙ୍କ ହାତ ଓ ମୋ' ହାତରେ କଣ୍ଠା ଆଣ୍ଠି ଦେଇ ନ ଥା'ନ୍ତି !"

"କିନ୍ତୁ ବିଧିର ବିଧାନ ବିଚିତ୍ର ! ପରିଶେଷରେ ଈଶ୍ୱର ସାଙ୍ଗ ଛଡ଼ାଇ ଦେଲେ । ହେଉ, ତାଙ୍କର ଯାହା ଇଚ୍ଛା !"

**ଭଜନ ଲେଖିବାର ପ୍ରେରଣା—**

ସେ ସମୟରେ ଭଜନ ରଚନା କରିବା ଲାଗି ମୋ' ମନରେ ପ୍ରେରଣା ଜାତ ହୋଇଥିଲା । ସେହି ଦୁଇମାସ ମଧ୍ୟରେ ମୁଁ ଅନେକଗୁଡ଼ିଏ ଭଜନ ରଚନା କରିଥିଲି । ସେ ଭଜନଗୁଡ଼ିକ ମଧ୍ୟରେ ଶାସ୍ତ୍ରୀଜୀ ଗୋଟିଏ ଦୁଇଟି ଭଜନକୁ ଖୁବ୍ ପସନ୍ଦ କରୁଥିଲେ ।

( ୧ )

"ପ୍ରଭୁ ଶରଣୌଁ ମେଁ ହମ୍‌କେ ତୋହେ ଲେନା ପଡ଼ୀ,
ଏ କୋନ ବନ୍ଦନା ଚଲୀନା ।
ତାରେ ଅନେକୌଁ ନର୍‌ନାର୍ ସବକ କିଇଲ ତୁ ଉଦ୍ଧାର,
ଅବ୍ ହମାରେ ଉଦ୍ଧାର ତୋହକେ କରନା ପଡ଼ୀ ।
ଏ କୋନ…

ସୁନ୍‌କେ ଦୁଖିୟୋଁ କ ଗୋହାର, ଗୁରତ ଆଇଲ କରତାର,
ଅବ୍ ହମାସ୍ ଖବରିୟା ତୋହକେ ଲେନା ପଡ଼ୀ
ଏ କୋନ...
ତୂ ତ ବହୁତ ଦୟାବାନ୍, କହଇଲେ ଦାନୀ ମହାନ୍,
ତୋହେ ଭକ୍ତି କ ଦାନ ହମ୍‌କେ ଦେନା ପଡ଼ୀ ।
ଏ କୋନ...
ଜୋ ତେରେ ନିକଟ ପ୍ରଭୁ ଆୟା ଉସେ ଅପ୍‌ନା ତୂ ବନାୟା,
ଅବ ଲଲିତାକୋ ଅପ୍‌ନା ବନାନା ପଡ଼ୀ,
ଏ କୋନ ବାହାନା ଚଲ୍‌ନା ।"

( ୬ )

"ସମ ଭେଜ ହେଁ ପରଓ୍ୱାନା ଜାନା ହୋଇହେ ସଜନୀ ।
ଗ୍ରେତ୍ କେ ହୃଠ୍ ଓ୍ୱ ଲବାର କରେ ସତ୍ୟକା ପ୍ରଗ୍ରର ।
ନହୀଁ ଲଗିହେଁ ଠେକାନା ।
ଜାନା ହୋଇ ହେ ସଜନୀ ॥
ଜରେ ନେମ ଓ ଧରମ ଜପୋ ସୀତାପଥ ସମ
ଜେକେ ଲଗିହେ ଠେକାନା ଜାନା ହୋଇହେ ସଜନୀ ।
ଆଈ ଜଇହେ ଜମରାଜ ଲେକେ ଡ଼ୋଲିୟା କହାର ।
ଲାଗି ଏ କୋନ ବାହାନା,
ଜାନା ହୋଇହେ ସଜନୀ ॥
ସାଥୀ ରୋଇ ହେଁ ଝାର ଝାର' କୋଈ ସୁନୀ ନ ଗୋହାର ।
ରହିହେଁ ହଥବା ପସାର,
ଜାନା ହୋଇହେ ସଜନୀ ॥
ମିଲ୍‌କେ ସଖିୟା ସହେଲୀ ସବ୍ କର ହେଁ ତୋର ସିଙ୍ଗାର ।
ଦେହୁ ହେଁ ଡୋଲିୟା ବୈଠାୟା ଜାନା ହୋଇହେ ସଜନୀ ।
ଲଲିତା ବୋଲେ ଲଲକାର ସବ୍ କରଲୋ ବିଚାର ।
ଏକ ଦିନ ସବ୍ ସୀକ ଯୂହୀ ଗଠ ହୋଇହେ ସଜନୀ ।
ଜାନା ହୋଇହେ ସଜନୀ ।"

( ୧—ହେ ପ୍ରଭୁ, ମୋତେ ଶରଣ ଦେବାକୁ ହିଁ ପଡ଼ିବ । କୌଣସି ପ୍ରକାର ଛଳନା କଲେ ଚଳିବ ନାହିଁ । ଅନେକ ନରନାରୀଙ୍କୁ ତୁମେ ଉଦ୍ଧାର କରିଛ; ତେଣୁ

ମୋତେ ମଧ୍ୟ ଉଦ୍ଧାର କରିବାକୁ ପଡ଼ିବ । ପାଳନକଙ୍କର ଗୁହାରି ଶୁଣି, ତୁମେ ଅତି ଶୀଘ୍ର ସେମାନଙ୍କୁ ଉଦ୍ଧାର କର । ବର୍ତ୍ତମାନ ମୋ' ଖବର ତୁମକୁ ବୁଝିବାକୁ ହିଁ ପଡ଼ିବ । ତୁମେ ଦୟାର ଅବତାର, ମହାନ୍‌ଦାତା, ତୁମ ଚରଣରେ ଶରଣ ଭକ୍ତ କରି ଆସୁଛି । ତା'ର ପ୍ରତିଦାନରେ ତୁମକୁ କିଛି ଦେବାକୁ ହିଁ ପଡ଼ିବ । ହେ ପ୍ରଭୁ, ଯେ ତୁମ ନିକଟକୁ ଆସିଛି, ତୁମେ ତାକୁ ଆପଣାର କରିନେଇଛ । ଏବେ ଲଳିତାକୁ ଆପଣାର କରିବାକୁ ହିଁ ପଡ଼ିବ । କୌଣସି ପ୍ରକାର ଛଳନା କଲେ ଚଳିବ ନାହିଁ । )

( ୬—ଈଶ୍ୱରଙ୍କ ଦରବାରରୁ ପରଓ୍ୱାନା ଆସିଛି, ରେ ସଖି ! ଯିବାକୁ ହିଁ ପଡ଼ିବ । ମିଥ୍ୟା ଓ ମୂଢ଼ତାକୁ ତ୍ୟାଗକରି ସତ୍ୟର ପ୍ରଚାର କର; ନଇଲେ ତୁମେ କୌଣସି କୂଳରେ ଲାଗି ପାରିବ ନାହିଁ । ଧର୍ମନୀତିର ପାଳନପୂର୍ବକ, ଯାହାଙ୍କ ଭଜନ କଲେ ତୁମେ ଉଦ୍ଧାର ପାଇପାରିବ, ସେହି ସୀତାପତି ରାମଙ୍କ ନାମ ଭଜନ କର । ଯମରାଜ ସବାରି ଓ ଗାଉଡ଼ି ଧରି ନେବାକୁ ଆସିଲେଣି । କୌଣସି ପ୍ରକାର ଛଳନା କଲେ ଚଳିବ ନାହିଁ । ଯିବାକୁ ହିଁ ପଡ଼ିବ ।

ସାଙ୍ଗ ସାଥୀମାନେ ଝୁରି ଝୁରି କାନ୍ଦିବେ; କିନ୍ତୁ କେହି ତାଙ୍କ ଗୁହାରି ଶୁଣିବେ ନାହିଁ । ସମସ୍ତେ ନିରୂପାୟ ହୋଇ ରହିଯିବେ । ସାଙ୍ଗସାଥୀ ମିଶି ତୁମକୁ ବେଶଭୂଷା କରି ସବାରିରେ ବସାଇ ଦେବେ । ତେଣୁ ଯିବାକୁ ହିଁ ପଡ଼ିବ । ଲଳିତା ବାରମ୍ବାର ଚେତାଇ ଦେଇ କହୁଛି, ଏବେ ସମସ୍ତେ ବିଚାର କର । ଦିନେନା ଦିନେ, ସମସ୍ତଙ୍କର ଏହି ଗତି ହେବ । ସମସ୍ତଙ୍କୁ ଯିବାକୁ ହିଁ ପଡ଼ିବ ! )

———

# ତେଇଶି

## ପଣ୍ଡିତଜୀଙ୍କ ଆଦେଶ—

ଡିସେମ୍ବର ମାସରେ ଆମ୍ଭେମାନେ ଦିଲ୍ଲୀ ଆସିଗଲୁ । ଶାସ୍ତ୍ରୀଜୀ ନିରୋଗ ହୋଇଯାଇ କାର୍ଯ୍ୟଭାର ଗ୍ରହଣ କଲେ । ଏହା ମଧ୍ୟରେ ଘରୋଇମନ୍ତ୍ରୀ ଗୋବିନ୍ଦବଲ୍ଲଭ ପନ୍ଥ ରୋଗରେ ପଡ଼ିଲେ । ତାଙ୍କ ରୋଗ ବଢ଼ି ଚାଲିଲା । ଦିନକୁଦିନ ତାଙ୍କ ଦଶା ଅତି ଚିନ୍ତାଜନକ ହୋଇପଡ଼ିଲା । ଦିନେ ଶାସ୍ତ୍ରୀଜୀଙ୍କ ସହିତ ମୁଁ ତାଙ୍କୁ ଦେଖିବାକୁ ଯାଇଥିଲି । ଆମ ପହଞ୍ଚିବାର କିଛି ସମୟ ପରେ ପଣ୍ଡିତଜୀ ଆସି ସେଠାରେ ପହଞ୍ଚିଲେ । ପନ୍ଥଜୀଙ୍କୁ ଦେଖିସାରି, ପଣ୍ଡିତଜୀ ବାହାରକୁ ଆସିଲେ ଏବଂ ଶାସ୍ତ୍ରୀଜୀଙ୍କ କାନ୍ଧରେ ହାତ ରଖି 'ଲନ୍'ରେ ବୁଲୁ ବୁଲୁ କେତେକ କଥାବାର୍ତ୍ତା ହେଲେ । ତାଙ୍କ ଆଲୋଚନାର ଢଙ୍ଗରୁ ଜଣା ପଡ଼ୁଥିଲା ଯେ, ସେ କୌଣସି ଏକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଆଲୋଚନା କରୁଥିଲେ ।

ସେଠାରୁ ଫେରିବାପରେ ମୁଁ ଶାସ୍ତ୍ରୀଜୀଙ୍କୁ ପଚାରିଲି —"ପଣ୍ଡିତଜୀ ଆପଣଙ୍କୁ କ'ଣ କହୁଥିଲେ କି ?"

"ପଣ୍ଡିତଜୀ ମୋତେ ଘରୋଇବିଭାଗର ଦାୟିତ୍ୱ ଅର୍ପଣ କରିବାକୁ ଚାହୁଁଛନ୍ତି । ସେ ମୋତେ ପଚାରିଲେ, ମୋତେ ସାହାଯ୍ୟ କରିବ କି ? ମୁଁ ଉତ୍ତର ଦେଲି, ଯାହା ଆପଣଙ୍କର ଆଜ୍ଞା ।"

"ତା'ପରେ ସେ କ'ଣ କହିଲେ ?"

"ସେ କହିଲେ ପନ୍ଥଜୀ ଆରୋଗ୍ୟ ହେବାପର୍ଯ୍ୟନ୍ତ ମୁଁ ସେ ଦାୟିତ୍ୱ ତୁଲାଏଁ ।" ମୋ' ମନର ଉଲ୍ଲାସ ବ୍ୟକ୍ତ ହୋଇଯିବା ଆଶଙ୍କାରେ ମୁଁ ନୀରବ ରହିଲି ।

ପରଦିନ ପଣ୍ଡିତଜୀ ଇଂଲଣ୍ଡ ଚାଲିଗଲେ । ତାଙ୍କ ଯିବାର ବିଶେଷ ଆବଶ୍ୟକତା ଥିଲା । ତାଙ୍କ ଯିବାପରେ ପନ୍ଥଜୀଙ୍କର ସ୍ୱର୍ଗବାସ ହୋଇଗଲା । ଯାହାଙ୍କ ଅଭାବର ପୂର୍ତ୍ତି

ହୋଇପାରିବ ନାହିଁ; ଦେଶର ସେହିପରି ଅଭୂତକର୍ମା ଲୋକମାନଙ୍କ ମଧ୍ୟରେ ସେ ଥିଲେ ଅନ୍ୟତମ ନେତା ।

ଶାସ୍ତ୍ରୀଜୀ ଭାରତର ସରେଇ ବିଭାଗ ମନ୍ତ୍ରୀ ହେଲେ । ତାଙ୍କ ଉପରେ ଆସି ଆହୁରି ଗୁରୁଦାୟିତ୍ୱ ପଡ଼ିଲା । ତାଙ୍କର ବହୁପ୍ରକାର କାମ କରିବାର ଥିଲା । ଛୋଟ ବଡ଼ ଅନେକ ସମସ୍ୟା ତାଙ୍କ ସମ୍ମୁଖରେ ଆସି ଉପସ୍ଥିତ ହେଲା । ସମସ୍ୟାଗୁଡ଼ିକର କୌଣସି ପ୍ରକାରେ ସମାଧାନ କରିବା ତାଙ୍କର ଦାୟିତ୍ୱ ହୋଇପଡ଼ିଲା । କେତେକ କଷ୍ଟସାଧ୍ୟ ସମସ୍ୟାର ସମାଧାନ କରିବା, ଅତି ଜରୁରୀ ହୋଇପଡ଼ିଲା ଏବଂ କେତେକ ଅସମ୍ଭବ ସମସ୍ୟାକୁ ସମ୍ଭବରେ ପରିଣତ କରିବା ଦାୟିତ୍ୱ ଆସି ତାଙ୍କ ନିକଟରେ ଉପସ୍ଥିତ ହେଲା । କୌଣସି ଏକ ଘରକୁ ସଜାଡ଼ିବାକୁ ହେଲେ, ପ୍ରଥମେ ତା'ର ଆଭ୍ୟନ୍ତରୀଣ ଦୁର୍ବଳତାକୁ ଦୂର କରି, ତାକୁ ସୁଦୃଢ଼ କରିବା ଆବଶ୍ୟକ ହୋଇପଡ଼େ । ବିଶେଷକରି ଭାରତ ପରି ଏକ ବିଶାଳ ରାଷ୍ଟ୍ର ପକ୍ଷରେ, ଆଭ୍ୟନ୍ତରୀଣ ଦୃଢ଼ତା ବ୍ୟତିରେକେ ଦେଶର ବିକାଶ ସମ୍ଭବ ନୁହେଁ । ଶାସ୍ତ୍ରୀଜୀଙ୍କୁ ଏହିସବୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା । କାର୍ଯ୍ୟ ଉପଲକ୍ଷେ ତାଙ୍କୁ ବିଭିନ୍ନ ରାଜ୍ୟକୁ ଯିବାକୁ ପଡୁଥିଲା । ଆଜି ଏଠାରେ ତ କାଲି ଅନ୍ୟ କେଉଁଠି ଏବଂ ପହରଦିନ ଅନ୍ୟ କୌଣସି ସ୍ଥାନକୁ ଯିବାକୁ ପଡୁଥିଲା । ତେଣୁ ମୋର ଚିନ୍ତା ଅଧିକ ବଢ଼ିଗଲା; କାରଣ, ତାହା ମୋ' ପକ୍ଷରେ ଆଦୌ ଅସ୍ୱାଭାବିକ ନ ଥିଲା । ମୁଁ ମୋର ପୂଜାପାଠ ଅଧିକ ବଢ଼ାଇଦେଲି । ତା' ସଙ୍ଗେ ସଙ୍ଗେ ମୁଁ ଆଉ ଗୋଟିଏ ନିୟମ ପାଳନ କଲି । ଯେଉଁଦିନ ସେ ଦିଲ୍ଲୀ ଛାଡ଼ି ଅନ୍ୟ କୌଣସି ସ୍ଥାନକୁ ଯାଉଥିଲେ, ସେଠାରେ ପହଞ୍ଚି ସେ ତାଙ୍କ ଖବର ନ ପଠାଇବା ପର୍ଯ୍ୟନ୍ତ ମୁଁ ଅନ୍ନଜଳ ଗ୍ରହଣ କରୁ ନ ଥିଲି । ଏହିପରି ଭାବରେ ସେ ଫେରି ଆସିବା ପରେ ସିଧା ଘରକୁ ଫେରୁଥିଲେ । ଅନ୍ୟଥା ତାଙ୍କ ଦର୍ଶନ ବ୍ୟତିରେକେ ମୁଁ କୌଣସି ଜିନିଷ ଭୁଣ୍ଡରେ ଦେଉ ନ ଥିଲି । ଘରକୁ ପ୍ରଥମେ ଆସି, ତା'ପରେ ସେ ଅନ୍ୟ କୌଣସି ସ୍ଥାନକୁ ଯାଉଥିଲେ ।

ଥରେ ସେ କେଉଁଠାରୁ ଉଡ଼ାଜାହାଜରେ ଆସି ପହଞ୍ଚିଲେ । ସମୟ ଅଳ୍ପ ଥିବାରୁ, ସେ ଘରକୁ ନ ଆସି ଉଡ଼ାଜାହାଜ ପଡ଼ିଆରୁ ଯାଇ ଗୋଟିଏ ମିଟିଂରେ ଯୋଗଦେଲେ । କାରଣ, ସେଠାରେ ଯୋଗଦେବା ତାଙ୍କ ପକ୍ଷରେ ଅତ୍ୟନ୍ତ ଜରୁରୀ ଥିଲା । ତଥାପି ସେ ଉଡ଼ାଜାହାଜ ପଡ଼ିଆରୁ ଘରକୁ ଖବର ପଠାଇ ଦେଇଥିଲେ । ପ୍ରାୟ ଦଶ ଅଢ଼େଇଟା-ବେଳେ ତାଙ୍କର ଘରକୁ ଆସିବା ସମ୍ଭବ ହେଲା । ଘରେ ପହଞ୍ଚିବା ମାତ୍ରେ ସେ କାହାକୁ ପଚାରିଲେ—"ମା' ଏପର୍ଯ୍ୟନ୍ତ କିଛି ଖିଆପିଆ କଲେଣି ନା ନାହିଁ ?"

କାଳେ କେହି କିଛି କହି ଦିଅନ୍ତେ, ମୁଁ ସଙ୍ଗେ ସଙ୍ଗେ କହିଲି—"ହଁ, ମୁଁ ଖାଇସାରିଛି ।" ତା'ପରେ ମୁଁ ତାଙ୍କ ଭୋଜନର ବ୍ୟବସ୍ଥା କରିବସିଲି; କିନ୍ତୁ ମୁଁ ମିଛ କହିଥିଲି ।

**କାମରାଜ-ଯୋଜନାର ପ୍ରସ୍ତାବ—**

ସମସ୍ତ ଗଡ଼ି ଚାଲିଲା । ତା'ପରେ କଂଗ୍ରେସପାର୍ଟିର ରାଜନୀତିରେ କେତେକ ପରିବର୍ତ୍ତନ ହେଲା । ପରସ୍ପର ବୈମନସ୍ୟ ଓ ପଦଲୋଲୁପତାର କାରଣରୁ ଯେଉଁ ମତଭେଦ ବଢ଼ି ଚାଲିଲା, ତାକୁ ସଂପୂର୍ଣ୍ଣ ରୂପେ ଦୂର କରିବା ଅତ୍ୟନ୍ତ ଆବଶ୍ୟକ ହୋଇପଡ଼ିଲା । ସେଥିଲାଗି କୌଣସି ନୂତନ ବିଚାରଧାରା ତଥା ନୂତନ ନୀତିର ପ୍ରତିପାଦନ କରିବା ଆବଶ୍ୟକ ଥିଲା । ଅନ୍ୟଥା ପାର୍ଟିର ଶକ୍ତି କ୍ଷୀଣ ହୋଇ ଯାଇଥା'ନ୍ତା ଏବଂ ସଙ୍ଗଠନ ଦୁର୍ବଳ ହୋଇ ପଡ଼ିଥାନ୍ତା । ବଡ଼ ବଡ଼ ନେତାମାନଙ୍କ ମଧ୍ୟରେ ବିଚାର ବିମର୍ଷ ହେବାକୁ ଲାଗିଲା । କଂଗ୍ରେସଲୋକଙ୍କଠାରୁ ଅନେକ ପ୍ରକାର ସମାଧାନର ପ୍ରସ୍ତାବ ଆସିଲା । ଏହି ପ୍ରକାରେ କେତେକ ସମାଧାନ ପ୍ରସ୍ତାବ ମଧ୍ୟରେ ଗୋଟିଏ ପ୍ରସ୍ତାବ କାମରାଜଙ୍କ ପକ୍ଷରୁ ଆସିଲା । ସମୁଦାୟ ପାର୍ଟିର ସଭ୍ୟମାନେ ପସନ୍ଦକରି, ପରିଶେଷରେ ପାର୍ଟିର ବୈଠକରେ ସର୍ବସମ୍ମତିକ୍ରମେ ତାକୁ ଗ୍ରହଣ କରିନେଲେ । କାମରାଜଜୀଙ୍କ ପ୍ରସ୍ତାବ ମଧ୍ୟରେ 'କାମରାଜ—ଯୋଜନା' ଥିଲା ଏକ ବହୁମୁଖୀ ଯୋଜନା । ବହୁ ମନ୍ତ୍ରୀଙ୍କୁ ଏହି ଯୋଜନା ଫଳରେ ପଦତ୍ୟାଗ କରିବାକୁ ପଡ଼ିଲା । ଶାସ୍ତ୍ରୀଜୀ ଏହି କାରଣରୁ ପଦତ୍ୟାଗ କରିଦେଲେ ।

ଶାସ୍ତ୍ରୀଜୀ ସେତେବେଳେ କେବଳ ଲୋକସଭାର ସଭ୍ୟ ହୋଇ ରହିଲେ । ପ୍ରଥମରୁ ଦିନେ ଦୁଇଦିନ ସେ ଟ୍ୟାକ୍ସିରେ ପାର୍ଲିଆମେଣ୍ଟ ଗଲେ; ମାତ୍ର ପ୍ରତିଦିନ ଯିବାଲାଗି ଏତେ ପଇସା କେଉଁଠୁ ଆସନ୍ତା ? ସେ ବାଧ୍ୟହୋଇ ଟ୍ୟାକ୍ସିରେ ଯିବା ବନ୍ଦକରି ଦେଇ, ଚାଲି ଚାଲି ଯିବା ଆସିବା କଲେ । ଏ ବିଷୟ ଭଇସ୍ତାଜୀ (ସାନକୋଇଁ) ଜାଣିବାରୁ ସେ ତାଙ୍କ ଗାଡ଼ିଟିକୁ ଶାସ୍ତ୍ରୀଜୀଙ୍କ ଜିମାରେ ଛାଡ଼ିଦେଲେ । ଶାସ୍ତ୍ରୀଜୀଙ୍କୁ ପାର୍ଟିର ସଙ୍ଗଠନ ଦାୟିତ୍ୱ ଦିଆଯାଇଥିଲା । ସମଗ୍ର ଦେଶରେ ପରିଭ୍ରମଣ କରି ପାର୍ଟିର ସଙ୍ଗଠନ ଶକ୍ତିକୁ ଦୃଢ଼ କରିବା ତାଙ୍କର ଦାୟିତ୍ୱ ହୋଇଥିଲା । କାମ ତ ଖୁବ୍ ଭଲ; କିନ୍ତୁ ମୋ' ପାଇଁ ତାହା ଅଧିକ ଚିନ୍ତାର ବିଷୟ ହୋଇପଡ଼ିଲା । ସ୍ୱା' ମଧ୍ୟରେ କେତେବର୍ଷ ଧରି ସେ ଯେଉଁ ବାତାବରଣରେ ରହିଥିଲେ, ତା'ର ସ୍ୱରୂପ ଅନ୍ୟ ପ୍ରକାର ଥିଲା । ଯିବା ଆସିବା କରିବାରେ କୌଣସି ଅସୁବିଧା ନ ଥିଲା କିମ୍ବା କୁଳି ଆଦିର ବ୍ୟବସ୍ଥା କରିବାରେ କୌଣସି ପ୍ରକାର ଜଞ୍ଜାଳ ନ ଥିଲା । ମୁଁ ସଙ୍ଗରେ ଥାଏ ବା ନ ଥାଏ, ଖାଇବା ପିଇବାରେ ସବୁପ୍ରକାର ସୁବିଧା ହେଉଥିଲା; କିନ୍ତୁ ବର୍ତ୍ତମାନ ତାଙ୍କୁ ସବୁ କିଛି ନିଜେ କରିବାକୁ ପଡ଼ୁଥିଲା । ଦିନ ନାହିଁ, ରାତି ନାହିଁ ସବୁବେଳେ ନିଜକାମ ନିଜକୁ କରିବାକୁ ହେଉଥିଲା । କାରଣ, କାମ ମଧ୍ୟ ସେହି ଧରଣର ଥିଲା । କେବେ ବିହାରରେ କାମ ତ, କେବେ ପଞ୍ଜାବ କିମ୍ବା ରାଜସ୍ଥାନରେ କାମ ପଡ଼ୁଥିଲା । ଗାଡ଼ି ହେଉ କିମ୍ବା ଉଡ଼ାଜାହାଜ ହେଉ,

ସବୁବେଳେ ଯିବା ଆସିବା ଲାଗିଥିଲା । କୁଲି କରିବା, ଜିନିଷପତ୍ର ରଖାରଖି କରିବା ଦାୟିତ୍ୱ ନିଜ ଉପରେ ପଡ଼ୁଥିଲା । ଏପରି କି ଖାଇବା ବ୍ୟବସ୍ଥା ମଧ୍ୟ ନିଜକୁ କରିବାକୁ ପଡ଼ୁଥିଲା । ସେଥିଲାଗି ମୁଁ ବଡ଼ ଅଡ଼ୁଆରେ ପଡ଼ିଲି । ଏସବୁ କାମ ସେ କପରି କରିପାରିବେ ! ପୂର୍ବପରି ଶାରୀରିକ ପରିଶ୍ରମ କରିବାର ଅଭ୍ୟାସ ସେ ଛାଡ଼ି ଦେଇଥିଲେ ଏବଂ ତାଙ୍କ ଶରୀରରେ ମଧ୍ୟ ଯଥେଷ୍ଟ ଶକ୍ତି ନ ଥିଲା । ହୃଦ୍‌ରୋଗ ଫଳରେ ସେ ଅଧିକ ଦୁର୍ବଳ ହୋଇ ଯାଇଥିଲେ । ତେଣୁ ବଡ଼ ଜଟିଳ ସମସ୍ୟା ଆସି ଉପସ୍ଥିତ ହୋଇଥିଲା । ସବୁ ପ୍ରକାର ଦାୟିତ୍ୱ ତାଙ୍କୁ ହିଁ ତୁଲାଇବାକୁ ପଡ଼ୁଥିଲା । ସେଥିରୁ ସେ ଢଳେହେଲେ ପଛଘୁଞ୍ଚା ଦେଉ ନ ଥିଲେ । ଦେଶ ଆଗରେ କୁଟୁମ୍ବ, ପରିବାର, ଏପରି କି ନିଜ ଜୀବନକୁ ମଧ୍ୟ ଆହୁତି ଦେବାକୁ ସେ ଜୀବନର ପ୍ରାରମ୍ଭରୁ ପ୍ରସ୍ତୁତ ଥିଲେ ।

**ବାକ୍‌ସ ଉଠାଇବ ନା ବିଛଣା ଉଠାଇବ—**

ସର୍ବପ୍ରଥମେ ଗୋରଖପୁର ଯିବାର କାର୍ଯ୍ୟକ୍ରମ ପ୍ରସ୍ତୁତ ହେଲା । ମୁଁ ତାଙ୍କୁ କହିଲି—"ମୋତେ ସଙ୍ଗରେ ନେଉ ନାହାନ୍ତି କାହିଁକି ? କୁଲି ତ ଆପଣଙ୍କୁ କରିବାକୁ ପଡ଼ିବ । ମୁଁ ତ ଜିନିଷପତ୍ର ଉଠାଇ ନେବା ସଙ୍ଗେ ସଙ୍ଗେ ଆପଣଙ୍କର ଅନ୍ୟାନ୍ୟ ସୁବିଧା କରିଦେଇଥାନ୍ତି !"

ଶାସ୍ତ୍ରୀଜୀ ଟିକିଏ ହସିଦେଇ କହିଲେ, "ପ୍ରସ୍ତାବ ମନ୍ଦ ନୁହେଁ । ହେଉ, ତୁମ ଇଚ୍ଛା ହେଉଛି ତ ଚାଲ ।"

ଶାସ୍ତ୍ରୀଜୀଙ୍କ ସହିତ ମୁଁ ଗୋରଖପୁର ଗଲି । ଷ୍ଟେସନରେ ପହଞ୍ଚି ଶାସ୍ତ୍ରୀଜୀ ଥଟ୍ଟାକରି କହିଲେ—"ବାକ୍‌ସ ଉଠାଇବ ନା ବିଛଣାପତ୍ର ଉଠାଇବ ?"

ଗୋରଖପୁରରେ କାର୍ଯ୍ୟକର୍ତ୍ତାମାନଙ୍କ ମଧ୍ୟରେ ଆଲୋଚନା ସଭା ବସିଲା । ପାର୍ଟିର ସଙ୍ଗଠନ ସମ୍ବନ୍ଧରେ ବିଚାର ପଡ଼ିଲା । ଶାସ୍ତ୍ରୀଜୀଙ୍କର ଯାହା ଉପଦେଶ ଦେବାର ଥିଲା, ସେ ଦେଲେ ଓ ସେହି ଅନୁସାରେ କାର୍ଯ୍ୟ କରିବାକୁ ପରାମର୍ଶ ଦେଲେ । ତା'ପରେ ଆମେ ବନାରସ ଓ ମିର୍ଜାପୁର ହୋଇ ଏଲାହାବାଦ ଆସିଲୁ । ସେଠାରେ ମଧ୍ୟ ମିଟିଂ ଓ ବୈଠକ ବସିଲା । ପରସ୍ପର ମଧ୍ୟରେ ଥିବା ମତଭେଦ ଦୂର କରିବା ଉକ୍ତ ବୈଠକର ଉଦ୍ଦେଶ୍ୟ ଥିଲା । ତାହାସବୁ ସରିବା ପରେ ପୁଣି ଆମ୍ଭେମାନେ ଦିଲ୍ଲୀକୁ ଫେରିଆସିଲୁ । ଷ୍ଟେସନରେ ପହଞ୍ଚିବା ପରେ ଜଣା ପଡ଼ିଲା, ଚଳସିଟ୍ ଖାଲି ନ ଥିବାରୁ ଦୁଇଟିଯାକ ସିଟ୍ ଉପରେ ରିଜର୍ଭ ହୋଇଛି । ଗାଡ଼ି ଆସିବା ପରେ, ଯେଉଁ ଦୁଇଜଣଙ୍କର ସିଟ୍ ତଳେ ଥିଲା, ସେ ଦୁଇଜଣଙ୍କୁ ଉପରକୁ ଯିବାକୁ ନିବେଦନ କରାଯାଇ କୁହାଗଲା; କାରଣ

ଉପରେ ବସିବା ମୋ' ପକ୍ଷରେ ବଡ଼ ଅସୁବିଧାଜନକ ଥିଲା । ବାରମ୍ବାର କହିଲେ ସୁଦ୍ଧା ସେ ଦୁଇଜଣ ଉପରକୁ ଯିବାକୁ ରାଜି ହେଲେ ନାହିଁ । ତହୁଁ ମୁଁ ଧୀରେ ଶାସ୍ତ୍ରୀଜୀଙ୍କୁ କହିଲି—"ଗୋଟିଏ କଥା କରନ୍ତୁ, ଆପଣ ଏଇଥିରେ ଚାଲିଯା'ନ୍ତୁ ମୁଁ ଥାର୍ଡ଼ କ୍ଲାସରେ ବସିଯାଉଛି । ଆପଣଙ୍କ ପକ୍ଷେ ରାତିରେ ଟିକିଏ ଆରାମ କରିବା ବିଶେଷ ଦରକାର ।"

ଶାସ୍ତ୍ରୀଜୀ ଏଥିରେ ମୁଣ୍ଡ ହଲାଇ କହିଲେ—"ଏହା କିପରି ହୋଇ ପାରିବ ! ସେଠାରେ ତୁମକୁ ଯେଉଁ ଅସୁବିଧା ହେବ, ସେଥିଲାଗି କ'ଣ କରାଯିବ ?"

ତା'ପରେ, ସେ ଏୟାର କଣ୍ଡିସନ୍ ଡବାର ଅନୁସନ୍ଧାନ କଲେ । ସେଠାରେ ସିଟ୍ ଖାଲିଥିଲା । ଯଦ୍ୟପି ଏୟାର କଣ୍ଡିସନ୍ ଡବାରେ ଯିବା ଲାଗି ପଇସା ନ ଥିଲା, ତଥାପି କୌଣସିମତେ ପଇସା ଯୋଗାଡ଼ କରି ସେ ସେଥିରେ ଟିକେଟ୍ କଲେ । ଗାଡ଼ି ଚାଲିବା ପରେ, ସେ ଟିକିଏ ହସି କହିଲେ—"ତୁମକୁ ସାଥୀରେ ଆଣିଲାରୁ ଏତିକି ଲାଭ ହେଲା । କମ୍ ଖର୍ଚ୍ଚ ହେବା ସ୍ଥାନରେ ଦ'ଗୁଣ ଖର୍ଚ୍ଚ ହୋଇଗଲା ।"

"ଏଇଥିପାଇଁ ତ ମୁଁ ଥାର୍ଡ଼ କ୍ଲାସରେ ଯିବାଲାଗି କହୁଥିଲି; କିନ୍ତୁ ଆପଣ·· ।"

"ତା' ତ ଠିକ୍; କିନ୍ତୁ ସେଠାରେ ତୁମକୁ ଯେଉଁ ଅସୁବିଧା ହୋଇଥାନ୍ତା, ତାହା ତ ମୋତେ ଦେଖିବାକୁ ପଡ଼ନ୍ତା !"

ଶାସ୍ତ୍ରୀଜୀଙ୍କ କଥାରୁ ଜଣାପଡ଼ିଲା ଯେ, ଏୟାର କଣ୍ଡିସନ ଡବାରେ ଯିବା ତାଙ୍କର ତାହା ହିଁ ଥିଲା ଦ୍ୱିତୀୟ ଅବସର । କିନ୍ତୁ ପୂର୍ବରୁ ଥରେ କୌଣସି ଜଣେ ନେତାଙ୍କ ସହିତ ତାଙ୍କୁ ଏୟାର କଣ୍ଡିସନ ଡବାରେ ଯିବାକୁ ପଡ଼ିଥିଲା । ଦିଲ୍ଲୀରେ ପହଞ୍ଚିବା ପରେ ପ୍ରାୟ ଦେଢ଼ଶହ ଟଙ୍କା ଟିକେଟ୍ ବାବଦରେ ଦେବାକୁ ପଡ଼ିଲା । ସେ ଟଙ୍କା ମୁଁ ଦୁମନଠାରୁ ଉଧାର ଆଣି ତାଙ୍କୁ ଦେଇଥିଲି ।

———

# ଚବିଶ

## ଶାସ୍ତ୍ରୀଜୀ ପ୍ରଧାନମନ୍ତ୍ରୀ ହେଲେ—

ଶାସ୍ତ୍ରୀଜୀଙ୍କୁ ଏହି କାମରେ ବେଶିଦିନ ରହିବାକୁ ପଡ଼ିଲା ନାହିଁ । ପଣ୍ଡିତଜୀ ତାଙ୍କୁ କିଛିଦିନ ପରେ ବିଭାଗବିହୀନ ମନ୍ତ୍ରୀ ଭାବରେ ମନ୍ତ୍ରିମଣ୍ଡଳରେ ଗ୍ରହଣ କରିନେଲେ; କିନ୍ତୁ ବିଧିର ବିଚିତ୍ର-ବିଧାନକୁ ଆଜି ପର୍ଯ୍ୟନ୍ତ କେହି ବୁଝି ପାରିନାହାନ୍ତି । ଆକସ୍ମିକ ଭାବରେ ପଣ୍ଡିତଜୀଙ୍କର ଦେହାନ୍ତ ହୋଇଯିବା ଫଳରେ ଦେଶ ଉପରେ ବଜ୍ରପାତ ହେଲା । ଦେଶର ନରନାରୀ ଶୋକାର୍ତ୍ତ ହୋଇପଡ଼ିଲେ । କୌଣସି ଦେଶକୁ ଏଭଳି ଲୋକପ୍ରିୟ ନେତା ମିଳିବା କଷ୍ଟକର । ପଣ୍ଡିତଜୀଙ୍କ ଅକାଳବିୟୋଗରେ ଶାସ୍ତ୍ରୀଜୀଙ୍କ ପ୍ରାଣରେ ଯେଉଁ ଆଘାତ ଲାଗିଥିଲା, ତାହା ଭାଷାରେ ବର୍ଣ୍ଣନା କରିଯାଇ ପାରିବ ନାହିଁ । ସେ ଯେତେ ଚେଷ୍ଟା କଲେ ମଧ୍ୟ ଆଖିର ଲୁହ ରୋକିପାରୁ ନ ଥିଲେ । ଜଣାପଡୁଥିଲା, ସତେ ଯେପରି ତାଙ୍କର ସର୍ବସ୍ୱ କେହି ଲୁଟିକରି ନେଇଛି ।

ପଣ୍ଡିତଜୀଙ୍କ ମୃତ୍ୟୁପରେ ନୂତନ ନେତା ନିର୍ବାଚନ କରିବା ଭଳି ଏକ ଜଟିଳ ପ୍ରଶ୍ନ ଆସି ପାର୍ଟି ସମ୍ମୁଖରେ ଉପସ୍ଥିତ ହେଲା । କେତେଆଡ଼େ କେତେ ପ୍ରକାର କଳ୍ପନାଜଳ୍ପନା ଚାଲିଲା । କେତେ ଲୋକଙ୍କ ନାମ ସେଥିଲାଗି ଶୁଣାଗଲା । ଏହି ଅବସରରେ ପରିସ୍ଥିତି ଯେପରି ସରଗରମ ହୋଇପଡ଼ିଲା, ତାହା ଅତ୍ୟନ୍ତ ସ୍ୱାଭାବିକ ଥିଲା । ପରିଶେଷରେ ପାର୍ଟିର ସଭ୍ୟମାନେ ଶାସ୍ତ୍ରୀଜୀଙ୍କୁ ସର୍ବସମ୍ମତିକ୍ରମେ ନେତା ରୂପେ ନିର୍ବାଚିତ କଲେ । ଜନପଥର ଦଶନମ୍ବର କୋଠିର ସୌନ୍ଦର୍ଯ୍ୟ ବଢ଼ିଗଲା, ଯେତେବେଳେ ତାହା ପ୍ରଧାନମନ୍ତ୍ରୀଙ୍କ ବାସଭବନରେ ପରିଣତ ହୋଇଗଲା ।

## ପ୍ରଭୁଙ୍କଠାରେ ପ୍ରାର୍ଥନା—

ମୁଁ ମୋ' ଆନନ୍ଦ ବିଷୟ ଆଉ କହିବି କ'ଣ ? ଯେପରି କାହାରି ପାଟିରେ ଲଡ଼ୁ ଭରି ଦେଇ ତା'ର ସ୍ୱାଦ ସମ୍ବନ୍ଧରେ ତାକୁ ପଚାରିଲେ ତାହା ମନରେ ଯେଉଁ

ଆନନ୍ଦ ଜାତ ହୁଏ, ତା' ଠାରୁ ଅଧିକ ଆନନ୍ଦ ମୋ ମନରେ ଜାତ ହୋଇଥିଲା । ମୋର ଭଜନ ପୂଜନ ପୂର୍ବାପେକ୍ଷା ଅଧିକ ବଢ଼ି ଯାଇଥିଲା; କାରଣ, ଶାସ୍ତ୍ରୀଜୀ କେବଳ ଆମର ନ ଥିଲେ, ସମୁଦାୟ ରାଷ୍ଟ୍ରର ଭାଗ୍ୟନିୟନ୍ତା ହୋଇଯାଇଥିଲେ । ଦେଶର ଗୌରବ ଓ ସମ୍ମାନକୁ ବିଶ୍ୱରେ ସମୁଜ୍ଜ୍ୱଳ କରିବାର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ହୋଇଥିଲା । ଦୀନଦୁଃଖୀଙ୍କର କଷ୍ଟ ଦୂର କରି ଦେଶର ଭାଇଭଉଣୀମାନଙ୍କ ପ୍ରାଣରେ ସୁଖଶାନ୍ତି ଆଣି ଦେବା ଥିଲା ତାଙ୍କର ଅଭିଳାଷ । କେବଳ ଈଶ୍ୱରଙ୍କ କୃପା ଫଳରେ, ଏସବୁ ଦାୟିତ୍ୱ ତୁଲାଇବାର ସମ୍ଭାବନା ଥିଲା; ତେଣୁ ନିଜର କର୍ତ୍ତବ୍ୟ ଓ ଦାୟିତ୍ୱ ତୁଲାଇବାରେ ଶାସ୍ତ୍ରୀଜୀଙ୍କୁ ଶକ୍ତି ଓ ସାମର୍ଥ୍ୟ ଦେବାଲାଗି ମୁଁ ପରମେଶ୍ୱରଙ୍କଠାରେ ପ୍ରାର୍ଥନା କରୁଥିଲି ।

'ଜନପଥ'ର ଦଶ ନମ୍ବର ପ୍ରାସାଦଟି ଦୁଇଭାଗରେ ବିଭକ୍ତ ହୋଇଥିଲା । ସେଥିମଧ୍ୟରୁ ବଡ଼ ଅଂଶଟିରେ ଶାସ୍ତ୍ରୀଜୀ ବାହାରର ଲୋକମାନଙ୍କ ସହିତ ଦେଖାସାକ୍ଷାତ୍ କରୁଥିଲେ ଏବଂ ବିଦେଶୀ ଆଗନ୍ତୁକମାନଙ୍କର ସ୍ୱାଗତ ସତ୍କାର କରୁଥିଲେ । ଏହି ଅଂଶଟିର ଗୋଟିଏ ପାଖରେ ତାଙ୍କର କାର୍ଯ୍ୟାଳୟ ଥିଲା । ଅନ୍ୟ ଅଂଶଟିରେ ଆମ ପରିବାର ରହୁଥିଲେ । ଦୁଇଟିଯାକ ଅଂଶ ପରସ୍ପର ଲଗାଲଗି ହୋଇ ରହିଥିଲା । କାମ ତୁଳନାରେ ଶାସ୍ତ୍ରୀଜୀ ଖୁବ୍ କମ୍ ସମୟ ପାଉଥିଲେ । ଫଳରେ ସକାଳ ସାତଟା ସାଢ଼େସାତଟା-ବେଳକୁ ସେ ଜଳପାନ ଶେଷକରି କାର୍ଯ୍ୟାଳୟରେ ଯାଇ ବସୁଥିଲେ । ସେ ସେଠାକୁ ଚାଲିଯିବା ପରେ ପିଲାମାନଙ୍କ ସହିତ ମିଳାମିଶା କରିବାଲାଗି କିମ୍ବା ଖାଇବା ପିଇବାଲାଗି ତାଙ୍କର ଅବକାଶ ରହୁ ନ ଥିଲା । ମୋ ସହିତ ଯାହା କିଛି କଥାବାର୍ତ୍ତା ହେଉଥିଲେ, ତାହା କେବଳ ଜଳପାନ ସମୟରେ ହିଁ କରୁଥିଲେ । ପ୍ରଥମତଃ ତାଙ୍କୁ ରାତିରେ ଖୁବ୍ ବିଳମ୍ବରେ ଅବକାଶ ମିଳୁଥିଲା, ଦ୍ୱିତୀୟତଃ ସେସମୟରେ ସେ ଖୁବ୍ ଥକି ଯାଉଥିବାରୁ, ସେତେବେଳେ ତାଙ୍କୁ କିଛି ପଚରାପଚରି କରିବା ଅର୍ଥ ତାଙ୍କ ମୁଣ୍ଡବ୍ୟଥା ବଢ଼ାଇବା ବ୍ୟତୀତ ଅନ୍ୟ କିଛି ନ ଥିଲା । ସେ ଭୋଜନ ପରେ ଶୋଇପଡ଼ୁଥିଲେ । ସକାଳେ ସେ ପୂର୍ବପରି ଶୀଘ୍ର ଉଠୁଥିଲେ ହେଁ ମୁଁ ସେତେବେଳକୁ ପୂଜାରେ ବସିଥାଏ । ମୁଁ ପ୍ରତିଦିନ ରାତି ଚାରିଟାରୁ ଉଠି ନିତ୍ୟକର୍ମ ଶେଷକରି ପୂଜାରେ ବସିଥାଏ ।

ଥରେ ଦୁ'ଥର ଶାସ୍ତ୍ରୀଜୀ ରାତି ଭୋଜନ ସେଇଠାକୁ ମଗାଇ ମୋତେ ସେଇଠାକୁ ଯାଇ ଖାଇବା ପାଇଁ କହି ପଠାଉଥିଲେ । ମୁଁ ଏଥିରେ ଆପତ୍ତି କରି, ତାଙ୍କୁ ଆସି ଘରେ ଖାଇଯିବା ଲାଗି କହିଲି । ମୁଁ ଏହା ଜାଣିଶୁଣି କରିଥିଲି । ସେଠାକୁ ଖାଦ୍ୟ ପଠାଇ ଦେବା ଅର୍ଥ, ତାଙ୍କୁ ସାରାରାତି ଅନିଦ୍ରା ରଖିବା; କାରଣ ଖାଇବା ପରେ ସେ ପୁଣି ଫାଇଲରେ ବ୍ୟସ୍ତ ରହିଥାନ୍ତେ । ମୋର ଏ ପ୍ରକାର ବୁଝିବାର ଫଳ ଖୁବ୍ ଭଲ

ହେଲା । ତାଙ୍କୁ ଖାଇବା ଲାଗି ଆସିବାକୁ ପଡ଼ିଲା । ରାଷ୍ଟ୍ରର ହିତଦୃଷ୍ଟିରୁ ତାଙ୍କ ସ୍ୱାସ୍ଥ୍ୟ ଭଲ ରହିବା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଥିଲା । ଏହା ବ୍ୟତୀତ ମୁଁ ତାଙ୍କର ଜଳପାନର ସମୟ ସାତଟା ପରିବର୍ତ୍ତେ ସାଢ଼େ ଆଠଟା କରିଦେଲି । ଯା' ଫଳରେ ସେ ପିଲା ଓ ପରିବାରର ଅନ୍ୟାନ୍ୟ ଲୋକଙ୍କ ମଧ୍ୟରେ କିଛି ସମୟ ବସି ସେମାନଙ୍କ ଆନନ୍ଦ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ଆନନ୍ଦ ଉପଭୋଗ କରି ପାରୁଥିଲେ । ଶାସ୍ତ୍ରୀଜୀଙ୍କର ମନୋରଞ୍ଜନର ବ୍ୟବସ୍ଥା ଏତିକରେ ସୀମିତ ଥିଲା । ସେ ଫାଇଲରେ ଅଧିକ ବ୍ୟସ୍ତ ରହି ଉଠିବାର ନାମ ଧରୁ ନ ଥିବା ବେଳେ, ମୁଁ କେବେ କେବେ ଜାଣିଶୁଣି ପିଲାମାନଙ୍କୁ ଧୀରେ ଧୀରେ ସେହି କୋଠରୀକୁ ପଠାଇ ଦେଉଥିଲି । ପିଲାମାନଙ୍କ ପହଞ୍ଚିବା ପରେ ତାଙ୍କର ଏକାଗ୍ରତା ଭଙ୍ଗ ହୋଇଯିବା ସଙ୍ଗେ ସଙ୍ଗେ ମନ ମଧ୍ୟ ପରିବର୍ତ୍ତିତ ହୋଇ ଯାଉଥିଲା ।

---

# ପଚିଶ

**ମନ କଥା ମନେ ରହିଲା—**

ଦିନକର କଥା, ଶାସ୍ତ୍ରୀଜୀ ସକାଳେ ସମସ୍ତଙ୍କ ସହିତ ବସି ଜଳପାନ କରୁଥିଲେ, ମୁଁ ଅଳ୍ପକରେ ହସି ହସି ତାଙ୍କୁ ଶୁଣାଇ କହିଲି—"ପ୍ରଭୁ ହେ, ମନ କଥା ମନେ ରହିଲା !"

ଶାସ୍ତ୍ରୀଜୀ ମୋ ଆଡ଼କୁ ଚାହିଁ କୁସୁମକୁ କହିଲେ—"ତୋ ମା'କୁ ପଚାର, ଏବେ ଆଉ କ'ଣ ବାକି ରହିଗଲା, ତା' ମଧ୍ୟ ପୂରଣ କରିଦେବି । ମନକଥା ମନରେ କାହିଁକି ରହିଯିବ, ନଇଲେ ସାରାଜୀବନ ଲାଗି ଗୋଟିଏ ଅବଶୋଷ ରହିଯିବ ।"

କୁସୁମ କିଛି କହିବା ପୂର୍ବରୁ ମୁଁ କହିଲି, "ଆପଣ ଦେଖୁନାହାନ୍ତି, ସମସ୍ତେ ନିଜ ନିଜର ସ୍ତ୍ରୀଙ୍କୁ ସଙ୍ଗରେ ନେଇ ହାଟ ବଜାରକୁ ଯାଉଛନ୍ତି, ସଉଦାପତ୍ର କରୁଛନ୍ତି । ଆପଣ କେବେ ଥରେ ମୋତେ ସଙ୍ଗରେ ନେଇ ଚାଲନ୍ତୁ ।"

ଶାସ୍ତ୍ରୀଜୀ ହସି ହସି କହିଲେ—"ପ୍ରଧାନମନ୍ତ୍ରୀ ହେବାପରେ ତୁମକୁ ଯଦି ସଙ୍ଗରେ ନେଇ ସଉଦାପତ୍ର ନ କିଣିଲି, ତା'ହେଲେ ମୋର ପ୍ରଧାନମନ୍ତ୍ରୀ ହେବାରେ ଲାଭ କ'ଣ ? ହେଉ ଭଲ କଥା, ଯଦି ତୁମେ ତାହା ହିଁ ଚାହୁଁଛ, ତାହା କରାଇ ଦେବି ।" ଏହା ଶୁଣି ସମସ୍ତେ ହସିବାକୁ ଲାଗିଲେ ।

**ଘରେ ଝାଡ଼ୁ ଦେଲେ—**

ପ୍ରଥମରୁ ସଫାସୁତୁରା ପ୍ରତି ଶାସ୍ତ୍ରୀଜୀଙ୍କର ଅଧିକ ଦୃଷ୍ଟି ରହିଥିଲା । ଅଭାବ ଅସୁବିଧା ସମୟରେ ଘରକୁ ଯେତିକି ସଫାସୁତୁରା ରଖାଯାଇ ପାରିବ, ସେଥିଲାଗି ସେ ଅଧିକ ଯତ୍ନଶୀଳ ଥିଲେ । ଘରେ ପ୍ରବେଶ କରିବା ମାତ୍ରେ ସେ ଚାରିଆଡ଼କୁ ଥରେ ନିରୀକ୍ଷଣ କରି ଦେଖୁଥିଲେ । କୌଣସି ଜିନିଷ ଯଦି ଏଣେତେଣେ ପଡ଼ିଥାଏ, ତା'ହେଲେ ମୋତେ କିମ୍ବା ପିଲାମାନଙ୍କୁ କିଛି ନ କହି, ସେ ନିଜେ ତାକୁ ଉଠାଇ ଯଥା ସ୍ଥାନରେ ରଖି ଦେଉଥିଲେ ।

ଗାନ୍ଧିଜୀଙ୍କ ପରି ସେ ଭାଷଣରେ କିଛି ନ କହି, କାର୍ଯ୍ୟ ମାଧ୍ୟମରେ ହିଁ ସମସ୍ତଙ୍କୁ ଶିକ୍ଷା ଦେବା ଓ ପ୍ରକୃତ ମାର୍ଗ ପ୍ରଦର୍ଶନ କରିବାର ପକ୍ଷପାତୀ ଥିଲେ । ତାଙ୍କର ସେପ୍ରକାର ଆଦର୍ଶ, ପ୍ରଧାନମନ୍ତ୍ରୀ ହେବାପରେ ମଧ୍ୟ ଠିକ୍ ସେହିପରି ଅକ୍ଷୁଣ୍ଣ ରହିଥିଲା । ସେଥିରେ କୌଣସି ପ୍ରକାର ପରିବର୍ତ୍ତନ ହୋଇ ନ ଥିଲା ।

ଦିନକର ଘଟଣା ବଡ଼ ଶିକ୍ଷଣୀୟ ତଥା ଅନୁକରଣୀୟ ଥିଲା । ଶାସ୍ତ୍ରୀଜୀ ଦ୍ୱିପ୍ରହରରେ ଖାଇବାକୁ ଆସି ଗୋଟିଏ କୋଠରୀରେ ପିଲାମାନଙ୍କ ଦ୍ୱାରା ଗଦାଏ ହେବ କାଗଜ ଚିରି ଜମା ହୋଇଥିବାର ଦେଖିଲେ । ସେ ହଠାତ୍ ଖାଇବା ପିଇବା ଭୁଲିଯାଇ, ଝାଡ଼ୁ ଧରି କୋଠରୀଟିକୁ ସଫା କରିବାକୁ ଲାଗିଲେ । ଭଲଭାବରେ କୋଠରୀଟିକୁ ସଫା କରିସାରିବା ପରେ, ଝାଡ଼ୁଆଡକ ନେଇ ବାହାରେ ଫିଙ୍ଗିଦେଲେ । ପରିବାରର ଲୋକେ ତଥା ପହରାବାଲା ସିପାହୀମାନେ ଏ ଦୃଶ୍ୟ ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ମୁଁ ଗୋଟିଏ ଜଡ଼ ମୂର୍ତ୍ତି ପରି ସେହିଠାରେ ଛିଡ଼ାହୋଇ, ନିଜର ଭୁଲ ପାଇଁ ମନେ ମନେ ଅନୁତାପ କରୁଥିଲି; କାରଣ ସେ ସମୟରେ ତାଙ୍କ ହାତରୁ ଝାଡ଼ୁ ନେଇ କୋଠରୀକୁ ସଫା କରିଦେବା ସମ୍ଭବ ନ ଥିଲା । ସେ ଯେତେବେଳେ ଏହି ଧରଣର କୌଣସି କାମ କରୁଥା'ନ୍ତି, କାମ ମଝିରେ କାହାର ହସ୍ତକ୍ଷେପ କିମ୍ବା ସହଯୋଗକୁ ସେ କେବେହେଲେ ପସନ୍ଦ କରନ୍ତି ନାହିଁ ଏବଂ ତାହା ସଙ୍ଗେ ସଙ୍ଗେ କାମ ଶେଷ କରିବା ପର୍ଯ୍ୟନ୍ତ ସେ ସେଥିରେ ଲାଗିଥା'ନ୍ତି ।

## ଭୁଲ ହୋଇଯାଏ—

ଚାକରମାନଙ୍କର ବଡ଼ ବଡ଼ ଭୁଲପାଇଁ କେବେ ବିରକ୍ତ ହେଉଥିବାର ତାଙ୍କୁ କେହି ଦେଖି ନାହିଁ । ଥରେ ଜଣେ ଚାକରର ସାମାନ୍ୟ ଅସାବଧାନତା ଯୋଗୁଁ ତାଙ୍କ ଉଡ଼ାଜାହାଜ ଅଧଘଣ୍ଟାଏ ବିଳମ୍ବ ହୋଇଗଲା । ଯେଉଁ ବାକ୍ସ ତାଙ୍କ ସଙ୍ଗରେ ଯିବାର କଥା, ତାକୁ ନ ପଠାଇ ସେ ଅନ୍ୟ ଗୋଟିଏ ବାକ୍ସ ଉଡ଼ାଜାହାଜ ପଡ଼ିଆକୁ ପଠାଇ ଦେଇଥିଲା । ସେଠାରେ ତାହା ଜଣା ପଡ଼ିବାରୁ, ସେ ବାକ୍ସଟିକୁ ଉଡ଼ାଜାହାଜରୁ ଓହ୍ଲାଇ ପୁଣି ପ୍ରକୃତ ବାକ୍ସଟିକୁ ପଠାଗଲା । ଏତେ ଅସୁବିଧା ହେଲା ସତ, କିନ୍ତୁ ଶାସ୍ତ୍ରୀଜୀ ସେ ଚାକରଟି ଉପରେ ରାଗିବା ତ ଦୂରର କଥା, କେବେ ପଚାରି ବି ନାହାନ୍ତି ଯେ, ସେ କାହିଁକି ଏତେ ଅସାବଧାନତାର ସହିତ କାମ କରୁଛି ।

ଶାସ୍ତ୍ରୀଜୀ ଖାଇବା ଲାଗି ବ୍ୟବହୃତ ବାସନକୁସନକୁ ମୁଁ ଭଲ ଭାବରେ ମଜାମଜି କରି ଅଲଗା ରଖିଥାଏ । ପ୍ରାୟ ଅନେକ ସମୟରେ ଚାକରଙ୍କର ଦୋଷରୁ ପିଲାମାନେ ସେଥିରେ ଖାଇ ବସିଯା'ନ୍ତି କିମ୍ବା ଅନ୍ୟ କାହାରିକୁ ସେଥିରେ ଖାଇବାକୁ

ହୋଇଯାଇଥାଏ । ଯେତେବେଳେ ଶାସ୍ତ୍ରୀଜୀ ଖାଇବାକୁ ବସନ୍ତି, ମୁଁ ଖୋଜି ସେ ବାସନ ନ ପାଇଲେ ଘରଲୋକଙ୍କ ଉପରେ ବିରକ୍ତ ହୁଏ । ଏହିପରି ସମୟରେ ସେ ମୋତେ ଚୁପ୍ ରହିଯିବା ଲାଗି ସଙ୍କେତ ଦିଅନ୍ତି । କେବେ କେବେ ଧୀରେ କହନ୍ତି—"ସେମାନେ ଜାଣି ଶୁଣି ଏପରି ଅସାବଧାନ ହେଉ ନାହାନ୍ତି । ଏଇ ତ କାମ, ଭୁଲ ହୋଇ ଯାଇଥିବ !"

## ଶ୍ରୀମତୀ ବାଉଲ୍‌ସଙ୍କ ଯାଦୁ—

ଜାମନଗରରେ କୌଣସି ଏକ ସମାରୋହ ଅନୁଷ୍ଠିତ ହେଉଥିଲା । ମୁଁ ସେଠାକୁ ଶାସ୍ତ୍ରୀଜୀଙ୍କ ସହିତ ଯାଇଥିଲି । ସେଠାକୁ ନିମନ୍ତ୍ରିତ ହୋଇ ଆମେରିକାର ରାଷ୍ଟ୍ରଦୂତ ଶ୍ରୀ ଚେଷ୍ଟର ବାଉଲ୍‌ସ ଓ ତାଙ୍କ ପତ୍ନୀ ଶ୍ରୀମତୀ ବାଉଲସ ଯୋଗଦେଇଥିଲେ । ଶ୍ରୀମତୀ ବାଉଲ୍‌ସଙ୍କୁ ଭେଟିବାର ତାହା ହିଁ ମୋ ପକ୍ଷେ ଥିଲା ପ୍ରଥମ ଅବସର । ସେଠାରେ ତାଙ୍କ ସହିତ ମୋର ବିଶେଷ କିଛି କଥାବାର୍ତ୍ତା ହୋଇ ନ ଥିଲା; କାରଣ ମୁଁ ଇଂରାଜୀ ଜାଣି ନାହିଁ କିମ୍ବା ସେ ହିନ୍ଦୀ ଜାଣି ନ ଥିଲେ । ତଥାପି କାହିଁକି ମୁଁ ଜାଣେନା ମୋ' ମନ ତାଙ୍କ ଆଡକୁ ଆକର୍ଷିତ ହୋଇଯାଇଥିଲା । ମୋତେ ତାଙ୍କ ବ୍ୟକ୍ତିତ୍ୱ ଖୁବ୍ ପ୍ରଭାବିତ କରିଥିଲା । ଯେ ପର୍ଯ୍ୟନ୍ତ ଆମେ ସେଠାରେ ବସିଥିଲୁ, ପରସ୍ପର ପରସ୍ପର ଆଡ଼କୁ ଚାହିଁ ହସୁଥିଲୁ । ତା'ପରେ ଦିଲ୍ଲୀରେ କେବେ କେବେ ତାଙ୍କ ସହିତ ଦେଖାହୁଏ । ଆମ ଦୁହିଁଙ୍କ ମଧ୍ୟରେ କଥାବାର୍ତ୍ତାର ସୁବିଧା ଲାଗି, ସେ ସ୍ୱା' ମଧ୍ୟରେ ହିନ୍ଦୀ ଶିଖିବା ଆରମ୍ଭ କରି ଦେଇଥିଲେ । ବୋଧହୁଏ ସେ ମୋ' ଆଡ଼କୁ ଆକର୍ଷିତ ହୋଇ ଆସିଥିଲେ । ଯାହା ହେଉନା କାହିଁକି, ଆମ ପରସ୍ପର ମଧ୍ୟରେ ଏକପ୍ରକାର ନିକଟସମ୍ପର୍କ ସ୍ଥାପିତ ହୋଇ-ଯାଇଥିଲା । ସବପର୍ବାଣି ତଥା ପାଳି-କୀର୍ତ୍ତନ ଆଦି ଅବସରରେ ମୁଁ ତାଙ୍କୁ ଡାକୁଥିଲି । ଭଜନ କୀର୍ତ୍ତନ ଚାଲିଥିବାବେଳେ ସେ ଅନ୍ୟାନ୍ୟ ମହିଳାମାନଙ୍କ ମଧ୍ୟରେ ବସି 'ରାମ ରାମ' କିମ୍ବା ଓଁ ଓଁ ଜପକରି ଧ୍ୟାନମଗ୍ନ ହୋଇଯାଉଥିଲେ ।

ସମୟର ଗତି ଅନୁସାରେ ଆମର ମିତ୍ରତା ଘନିଷ୍ଠତାରେ ପରିଣତ ହୋଇ-ଯାଇଥିଲା । ଥରେ 'ଗଣତନ୍ତ୍ର' ଦିବସରେ ମୋ' ସମ୍ବନ୍ଧରେ ତାଙ୍କର ଧାରଣା ଶାସ୍ତ୍ରୀଜୀଙ୍କ ଆଗରେ ବ୍ୟକ୍ତକରି ଶ୍ରୀମତୀ ବାଉଲ୍‌ସ କହିଲେ—"ମୁଁ ଜାଣେ ନାହିଁ, କେଉଁ ଯାଦୁକରୀ ବିଦ୍ୟାର ସାହାଯ୍ୟରେ ସେ ମୋତେ ଏପରି ମୁଗ୍ଧ କରିପାରିଛନ୍ତି ।" ମୁଁ ସେତେବେଳେ କିଛି କହି ନ ଥିଲି; କିନ୍ତୁ ଏବେ କହୁଛି, ପ୍ରକୃତରେ ତାଙ୍କର ଯାଦୁକରୀ ଶକ୍ତି ବର୍ତ୍ତମାନ ସୁଦ୍ଧା ମୋ' ଉପରେ ପ୍ରଭାବ ବିସ୍ତାର କରିଛି । ଶାସ୍ତ୍ରୀଜୀଙ୍କ ମୃତ୍ୟୁପରେ, ମୁଁ ତାଙ୍କ ଯାଦୁକରୀ ଶକ୍ତିର ପ୍ରକୃତ ପ୍ରମାଣ ପାଇଲି । ଯେତେବେଳେ ମୁଁ ଶାସ୍ତ୍ରୀଜୀଙ୍କ ଚିତାଭସ୍ମପୂର୍ଣ୍ଣ କଳସ ନେଇ ଏଲାହାବାଦ ଯାଉଥିଲି, ସେତେବେଳେ ଶ୍ରୀମତୀ ବାଉଲ୍‌ସ ହେଉଛନ୍ତି

ଏକମାତ୍ର ମହିଳା, ଯେ କି ଯାତ୍ରା ସମୟରେ ଗାଡ଼ିରେ ଅନିଦ୍ରା ରହି ମୋତେ କାନ୍ଧ ଉପରେ ଆଉଜାଇ ବସିଥିଲେ ।

ଆଜି ପରିସ୍ଥିତି ବଦଳି ଯାଇଛି ଏବଂ ତା' ସଙ୍ଗେ ସଙ୍ଗେ ମଧ୍ୟ ମୋ' ଜୀବନର ରୂପ ପରିବର୍ତ୍ତିତ ହୋଇଛି । ତଥାପି ଏପରି କୌଣସି ସପ୍ତାହ ବିତିନାହିଁ, ଯେଉଁ ସପ୍ତାହ ଶ୍ରୀମତୀ ବାହଲ୍‌ସ ଆମ ଘରକୁ ମୋ' ସହିତ ଦେଖା ସାକ୍ଷାତ କରିବାଲାଗି ଆସି ନାହାନ୍ତି । ସେ ଯେବେ ବନାରସ କିମ୍ବା ମିର୍ଜାପୁର ଯା'ନ୍ତି, ନିଶ୍ଚିତ ଭାବରେ ଆମ ଘରକୁ ଯାଇ ବୁଲି ଆସିବା ସଙ୍ଗେ ସଙ୍ଗେ ମୋ' ଭାଇଭାଉଜଙ୍କ ସହିତ ସାକ୍ଷାତ କରି ଭଲମନ୍ଦ କଥା ପଚାରି ବୁଝିବା ବ୍ୟତିରେକେ ତାଙ୍କୁ ଶାନ୍ତି ମିଳେ ନାହିଁ । ତାଙ୍କର ଏ ପ୍ରକାର ଆତ୍ମୀୟତା ଓ ସ୍ନେହ ମୋ' ନିକଟରେ କେବଳ ସୀମିତ ନୁହେଁ; ପ୍ରତ୍ୟେକ ଭାରତବାସୀଙ୍କ ପ୍ରତି ତାଙ୍କ ପ୍ରାଣରେ ଗୋଟିଏ ଆକର୍ଷଣ ରହିଛି । ଅବଶ୍ୟ ମୋ' ପ୍ରତି ତାଙ୍କର ମମତା ଟିକିଏ ଅଧିକ ବୋଲି ମୁଁ ଜାଣେ । ଭାରତର ଦୁଃଖ ସୁଖରେ ସେ ଯେପରି ଭାଗ ନିଅନ୍ତି, ତାହା ନିଶ୍ଚିତଭାବରେ ପ୍ରଶଂସନୀୟ କାର୍ଯ୍ୟ । ପ୍ରଚଣ୍ଡ ଗ୍ରୀଷ୍ମ ସମୟରେ ହେଉ କିମ୍ବା ପ୍ରଖର ବୃଷ୍ଟିପାତ ସମୟରେ ହେଉ, ସେ ନିଜର ସୁଖ ସୁବିଧା ପ୍ରତି ଦୃଷ୍ଟି ନ ଦେଇ, ଦେଶର ଅଭାବଗ୍ରସ୍ତ ଅଞ୍ଚଳକୁ ଯାଇ ଲୋକମାନଙ୍କ ଅସୁବିଧାର ଅନୁଧ୍ୟାନ କରନ୍ତି ଏବଂ ନିଜଦ୍ୱାରା ଯେତିକି ସମ୍ଭବ, ସେହି ଅନୁସାରେ ସାହାଯ୍ୟ କରନ୍ତି । ଦିଲ୍ଲୀରେ ମଧ୍ୟ ତାଙ୍କ ଦୂତାବାସର ଭାରତୀୟ କର୍ମଚାରୀମାନଙ୍କ ଘରକୁ ଯାଇ ବସନ୍ତି ଏବଂ ସେମାନଙ୍କ ଦୁଃଖ ସୁଖକୁ ନିଜର ଦୁଃଖ ସୁଖ ବୋଲି ମନେକରନ୍ତି । ଥରେ ଦୁଇଥର ସେ ମୋତେ ମଧ୍ୟ ତାଙ୍କ ଦୂତାବାସ ମଧ୍ୟକୁ ଟାଣି ନେଇଛନ୍ତି । ଶ୍ରୀମତୀ ବାହଲ୍‌ସଙ୍କ ସ୍ୱଭାବ, ତାଙ୍କର ନିରାଡ଼ମ୍ବରତା, ଭାରତବାସୀଙ୍କ ପ୍ରତି ତାଙ୍କ ମନର ଆକର୍ଷଣରୁ ଜଣାଯାଏ, ସତେ ଯେପରି ତାଙ୍କ ମୋ' ମଧ୍ୟରେ କିଛି ପାର୍ଥକ୍ୟ ନାହିଁ ।

———

# ଛବିଶ

ଜନପଥ'ର ଦଶ ନମ୍ବର ଘରେ ଶାସ୍ତ୍ରୀଜୀ ଅତିଥିମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଉଥିଲେ । ଆବଶ୍ୟକ ସ୍ଥଳେ କେତେକଙ୍କୁ ଜଳପାନ ଓ ଭୋଜନାଦିରେ ଆପ୍ୟାୟିତ କରାଉଥିଲେ । ଭୋଜନ ଆଦିର ବ୍ୟବସ୍ଥା ସରକାରଙ୍କ ତରଫରୁ ହେଉଥିଲା । ସେଥିଲାଗି ଯୋଗ୍ୟ ରୋଷେଇଆ ଓ ବେହେରା ରଖାଯାଇଥିଲେ । ଘରର ପିଲାମାନେ କେବେ କେବେ ସେଠାରେ ଚା' ପିଉଥିଲେ ଏବଂ ଭୋଜନ କରୁଥିଲେ । ସେଠାରେ ପ୍ରସ୍ତୁତ ହେଉଥିବା ଖାଦ୍ୟକୁ ସେମାନେ ଖୁବ୍ ପସନ୍ଦ କରୁଥିଲେ ।  ସେମାନେ ଚାହୁଁଥିଲେ ଯେ, ମୁଁ ମଧ୍ୟ ଥରେ ଅଧେ ସେଠାରେ ଖାଏ; କିନ୍ତୁ ମୁଁ ବରାବର ସେମାନଙ୍କ କଥା ଟାଳି ଦେଉଥିଲି । ମୋ' ଟାଳିବାରେ କୌଣସି ବିଶେଷ କାରଣ ନ ଥିଲା । କେବଳ ସଫାସୁତୁରା ଓ ଶୁଦ୍ଧତା ବିଷୟରେ ମୋର ଟିକିଏ ସନ୍ଦେହ ଥିଲା; ମାତ୍ର ପ୍ରକୃତରେ ମୋର ଧାରଣାରେ କୌଣସି ଆଧାର ନ ଥିଲା । ସେଠାରେ କାହିଁକି ଅବା ସଫା ସୁତୁରା ଓ ଶୁଦ୍ଧତାର ଊଣା ଥାଆନ୍ତା !

**ଭେଦଭାବ କାହିଁକି ?**

ଥରେ ଶାସ୍ତ୍ରୀଜୀ ସେହି ପ୍ରକାର ଇଚ୍ଛା ବ୍ୟକ୍ତ କଲେ । ତା' ଫଳରେ ମୋର ସେଠାରେ ଖାଇବା ଅତି ଜରୁରି ହୋଇ ପଡ଼ିଲା । ଦିନେ ସମସ୍ତେ ସେଠାରେ ଖାଇ ବସିଲୁ । ବାସ୍ତବିକ୍ ଖାଦ୍ୟ ଖୁବ୍ ରୁଚିକର ହୋଇଥିଲା । ଖାଇସାରି ଫେରିବା ପରେ ମୁଁ ଆମ ପିଲାମାନଙ୍କ ମଧ୍ୟରୁ ଜଣକୁ ପଚାରିଲି—"ତୁମେ ତ ସବୁ କହୁଥିଲ, ସେଠାରେ ଜଣେ ମୁସଲମାନ ବେହେରା ଅଛି; କାହିଁ, ମୁଁ ତ ଦେଖିଲି ନାହିଁ । ସେ ଗଲା କୁଆଡ଼େ ?"

"ତାକୁ ପରଷିବାକୁ ମନାକରି ଦିଆଯାଇଥିଲା ।"

"କାହିଁକି ?"

"ଆପଣଙ୍କର ଆଜି ଖାଇବାର ଥିଲା ନା ? ନହେଲେ ଅନ୍ୟ କ'ଣ କାରଣ ହୋଇପାରେ ?"

ମୁଁ ପରେ ଜାଣିଲି ଯେ, ପ୍ରକୃତରେ ତାହା ହିଁ ଥିଲା କାରଣ । ସେ ଖାଦ୍ୟ ଛୁଇଁଲେ ମୁଁ କାଳେ ଖାଇବି ନାହିଁ, ଏହି ଆଶଙ୍କାରେ ତାଙ୍କୁ ପରଷିବା ଲାଗି ମନାକରି ଦିଆଯାଇଥିଲା । ଏହା ଶୁଣି ମୋ' ମନରେ ଅତ୍ୟନ୍ତ ଦୁଃଖ ଜାତ ହେଲା । ମୁଁ ଭାବିଲି, ସେ କିପରି ନିଷ୍ଟୟ ମୋତେ ପରଷିବାଲାଗି ଆଗ୍ରହ କରିଥିବ ! ତା' ବ୍ୟତୀତ ମୋର ଏ ପ୍ରକାର ବ୍ୟବହାରରେ ତା' ମନରେ ମୋ' ପ୍ରତି କି ଭାବ ଜାତ ହୋଇଥିବ ! ଅନ୍ୟାନ୍ୟ ବେହେରାଙ୍କ ପରି ସେ ମୋତେ 'ମାଆ' ବୋଲି ଡାକି ନିଜ ହାତରେ କିଛି ଖୁଆଇବାକୁ ଚାହୁଁଥିବ । ମୁଁ ଏହା ଭାବି କେତେ ଦିନ ପର୍ଯ୍ୟନ୍ତ ଚିନ୍ତିତ ରହିଲି ଏବଂ ତାହା ପରେ ପରେ ନିଷ୍ଟୟ କଲି; ସେ ଯେଉଁଦିନ ପରଷିବ, ମୁଁ ସେହିଦିନ ଦ୍ୱିଗୁଣ ଅଧିକ ସେଠାରେ ଖାଦ୍ୟ ଗ୍ରହଣ କରିବି ଏବଂ ତାହା ହିଁ ହେଲା । ପୁଣି ଯେତେବେଳେ ସେଠାରେ ମୋ' ଖାଇବା ଲାଗି ଯୋଗାଡ଼ କରାଗଲା, ମୁଁ ଆଗରୁ କହି ପଠାଇଲି—ସେହି ବେହେରା ନ ପରଷିଲେ ମୁଁ ଖାଇବି ନାହିଁ । ମୋ' କଥା ଅନୁସାରେ ସେ ମୋତେ ଖାଦ୍ୟ ପରଷିଲାରୁ ମୋ' ମୁଣ୍ଡ ଉପରେ ଥିବା ଅଳୁଚାପର ବୋଝ ସେହିଦିନରୁ ଓହ୍ଲାଇଗଲା ।

**ହୀରାର ନାକଦାନା—**

ଶାସ୍ତ୍ରୀଜୀଙ୍କର ମାନ୍ଦ୍ରାଜ ଯିବାର କାର୍ଯ୍ୟକ୍ରମ ପଡ଼ିଲା । ମୁଁ ତାଙ୍କ ସଙ୍ଗରେ ଗଲି । ମାନ୍ଦ୍ରାଜ ଅଞ୍ଚଳର ସ୍ତ୍ରୀମାନେ ନାକରେ 'ନାକଦାନା' ପିନ୍ଧିଥିଲେ । ମୁଁ 'ନାକଦାନା' ପିନ୍ଧେ ଏବଂ ସେ ସମୟରେ 'ନାକଦାନା' ପିନ୍ଧିଥିଲି । ସେଠାରେ ମୋ' ସହିତ ମିଳାମିଶା କରୁଥିବା ସ୍ତ୍ରୀମାନେ ପରାମର୍ଶ ଦେଲେ—ଯଦି ସୁନାର ନାକଦାନା ବଦଳରେ ମୁଁ 'ହୀରାର ନାକଦାନା ପିନ୍ଧେ, ତା'ହେଲେ ମୋତେ ଭଲ ଦେଖାଯିବ । ମୋତେ ସେମାନଙ୍କର ପ୍ରସ୍ତାବ ଭଲ ଜଣା ପଡ଼ିଲା ଏବଂ ତା' ସଙ୍ଗେ ସଙ୍ଗେ ହୀରାର ନାକଦାନା ପିନ୍ଧିବାଲାଗି ମନ କୁରୁଳି ଉଠିଲା । ରାତିରେ ଶାସ୍ତ୍ରୀଜୀଙ୍କୁ ଅବସର ମିଳିବା ପରେ, ମୁଁ ମୋର ଇଚ୍ଛା ପ୍ରକାଶ କଲି । ଶାସ୍ତ୍ରୀଜୀ ଟିକିଏ ଆଶ୍ଚର୍ଯ୍ୟ ହୋଇ ମୋ' ଆଡ଼କୁ ଚାହିଁ ଚିନ୍ତାକରି କହିଲେ—"ଆଜି ତୁମ ମୁହଁରୁ ଏକଥା ଶୁଣି ମୋତେ ବଡ଼ ଆଶ୍ଚର୍ଯ୍ୟ ବୋଧ ହେଉଛି ! ମୁଁ ତ ତୁମକୁ ସମୁଦ୍ର ପରି ଗମ୍ଭୀର ଓ ବିଶାଳ ବୋଲି ଭାବିଥିଲି ! ହେଉ, ଯଦି ତୁମେ ଇଚ୍ଛା କରୁଛ; ତା'ହେଲେ, ହୀରାର 'ନାକଦାନା' ତିଆରି କରାଇଦେବି; କିନ୍ତୁ ଏ ସବୁ ଭଲ କଥା ନୁହେଁ ।"

ତା'ପରେ ମୁଁ ନୀରବ ରହିଲି । ଶାସ୍ତ୍ରୀଜୀ ଗୋଟିଏ ବଡ଼ କଥା କହି ଦେଇଥିଲେ । ମୁଁ ସେହି ବିଷୟରେ ଅନେକ ସମୟ ପର୍ଯ୍ୟନ୍ତ ଚିନ୍ତା କଲି । ଏ ପ୍ରକାର ନୀତିବିରୁଦ୍ଧ କାର୍ଯ୍ୟ କରିଥିବା ଯୋଗୁଁ ମୁଁ ପଶ୍ଚାତ୍ତାପ କଲି । ମୋ' ମନ ମଧ୍ୟରେ ହୀରା ଓ ସୁନାର ଭାବନା କାହିଁକି ଜାତ ହେଲା ? ପରଦିନ ମୁଁ ଶାସ୍ତ୍ରୀଜୀଙ୍କୁ 'ନାକଦାନା' ତିଆରି କରାଇବା ଲାଗି ମନା କରିଦେଲି । ଶାସ୍ତ୍ରୀଜୀ ତା'ପରେ ବାରମ୍ବାର ମୋତେ 'ନାକଦାନା'

ବିଷୟରେ ପଚାରିଥିଲେ ହେଁ, ମୁଁ ବିଲକୁଲ ମନା କରିଦେଲି । କଥା କଥାକେ ଯାହା ହେବାର ଥିଲା ହୋଇଗଲା । ତା'ପରେ ମାନ୍ଦ୍ରାଜରୁ ଫେରି ଆମେ ଦିଲ୍ଲୀ ଆସିଲୁ ।

ମୋତେ ଜଣା ନ ଥିଲା, କିନ୍ତୁ ଶାସ୍ତ୍ରୀଜୀ ମାନ୍ଦ୍ରାଜର କୌଣସି ଜଣେ ଲୋକକୁ 'ନାକଦାନା' ତିଆରି କରି ପଠାଇ ଦେବାଲାଗି କହି ଆସିଥିଲେ । ଦିନେ ଦ୍ୱିପହରର ସମୟରେ ଖାଇବାକୁ ଆସି ମୋତେ ଡାକିଲେ । ମୁଁ ସେତେବେଳେ ରୋଷେଇ ଘରେ ଥିଲି । ମୁଁ ଆସିଲାରୁ ସେ ମୋତେ ହାତମୁହଁ ଧୋଇଁ ଆସିବା ଲାଗି କହିଲେ । ତାଙ୍କ କହିବା ଅନୁସାରେ ମୁଁ ହାତ ମୁହଁ ଧୋଇ ଆସିଲି । ସେ ପକେଟରୁ 'ନାକଦାନା'ଟି ବାହାର କରି ମୋ' ହାତରେ ଧରାଇଦେଲେ । ମୁଁ ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ତା'ପରେ ମୋତେ ସେ 'ନାକଦାନା'ଟି ପିନ୍ଧିବାକୁ କହିଲେ । ଆଉ ମନା କରିବାର ଉପାୟ ନ ଥିଲା; ତେଣୁ ପିନ୍ଧିବାକୁ ପଡ଼ିଲା । ସେ 'ନାକଦାନା'ଟିକୁ ମୁଁ ଆଜି ଯାଏଁ ପିନ୍ଧିଛି । ଶାସ୍ତ୍ରୀଜୀଙ୍କ ସ୍ୱର୍ଗବାସ ପରେ ତାକୁ ବାହାର କରିଦେବା ଲାଗି ଘରର ମୁରବିମାନେ ମୋତେ ଉଚିତ ଉପଦେଶ ଦେଇଥିଲେ । ତା' ସତ୍ତ୍ୱେ ମୁଁ ତାକୁ ଓହ୍ଲାଇ ପାରୁନାହିଁ । କାରଣ, ଶାସ୍ତ୍ରୀଜୀ ନିଜ ହାତରେ ତାହା ପିନ୍ଧାଇ ଦେଇଥିଲେ । ଏବେ ମୁଁ ତାକୁ ଓହ୍ଲାଇ ପାରିବି ନାହିଁ । ମୃତ୍ୟୁ ପର୍ଯ୍ୟନ୍ତ ତାହା ମୋ' ନାକରେ ରହିଥିବ ।

**ପ୍ରଧାନମନ୍ତ୍ରୀଙ୍କ ପତ୍ନୀ—**

ମୁଁ ପ୍ରଧାନମନ୍ତ୍ରୀଙ୍କ ପତ୍ନୀ ହୋଇଥିବାରୁ, ଦେଶବାସୀ ତଥା ବିଦେଶୀ ଲୋକମାନେ ମୋ' ସମ୍ବନ୍ଧରେ କିଛି ଜାଣିବା ଲାଗି ଯେଉଁ ଔତ୍ସୁକ୍ୟ ପ୍ରକାଶ କରୁଥିଲେ, ତାହା ଅତ୍ୟନ୍ତ ସ୍ୱାଭାବିକ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । କେତେ ପ୍ରକାର ଲୋକେ କଥା ଜାଣିବାକୁ ଚାହୁଁଥିଲେ । ଫଳରେ ସମ୍ବାଦପତ୍ରର ପ୍ରତିନିଧିମାନେ ମୋ' ପାଖକୁ କେବେ କେବେ ଆସି ମୋତେ ନାନାପ୍ରକାର ପ୍ରଶ୍ନ ପଚାରୁଥିଲେ । ମୋ' ଦ୍ୱାରା ଯେତିକି ସମ୍ଭବ, ମୁଁ ଉତ୍ତର ଦେଉଥିଲି । ଥରେ ଜଣେ ପ୍ରେସ-ପ୍ରତିନିଧି ମୋତେ ପଚାରିଲେ—"ପ୍ରଧାନମନ୍ତ୍ରୀଙ୍କ ପତ୍ନୀ ହୋଇଥିବାରୁ ବର୍ତ୍ତମାନ ଆପଣଙ୍କଠାରେ କି ବିଶେଷତ୍ୱ ଥିବାର ଆପଣ ଅନୁଭବ କରୁଛନ୍ତି ?"

"ମୁଁ ତ ସେପରି କିଛି ଅନୁଭବ କରୁନାହିଁ; କିନ୍ତୁ ଯେତେବେଳେ ଆପଣମାନେ ଆସୁଛନ୍ତି, ସେତେବେଳେ ମୁଁ ଭାବୁଛି, ବୋଧହୁଏ ମୋଠାରେ କିଛି ବିଶେଷତ୍ୱ ରହିଛି । କାରଣ, ଆଗରୁ ତ ଆପଣମାନେ ମୋ' ନିକଟକୁ କେବେନହେଲେ ଆସୁ ନ ଥିଲେ ?"

ମୋ' ଉତ୍ତର ଶୁଣି ଅନ୍ୟ ସମ୍ବାଦଦାତାମାନେ ହସିବାକୁ ଲାଗିଲେ ।

———

## ସତେଇଶି

**ବିଦେଶରେ ସମ୍ବର୍ଦ୍ଧନା—**

ଶାସ୍ତ୍ରୀଜୀଙ୍କ ଜୀବନ ଯେପରି ଆଡ଼ମ୍ବରଶୂନ୍ୟ ଥିଲା; ଠିକ୍ ସେହିପରି ତାଙ୍କ ବେଶ ପୋଷାକରେ କିଛି ଆଡ଼ମ୍ବର ନ ଥିଲା । ଏ ଆଡ଼ମ୍ବରଶୂନ୍ୟତାକୁ ସେ ଆଜୀବନ ଗ୍ରହଣ କରିଥିଲେ । ଦଶବର୍ଷତଳେ ଯେଉଁ ଗଦି ତିଆରି ହୋଇଥିଲା, ତାଙ୍କ ଜୀବନର ଅନ୍ତିମଦିନ ପର୍ଯ୍ୟନ୍ତ ସେ ସେହି ଗଦିରେ ଶୋଉଥିଲେ । ସେହି ପୁରୁଣା ଗଦିଟିକୁ ବଦଳାଇ ସେ ନୂତନ ଗଦି ତିଆରି କରାଇ ନଥିଲେ । ଅଳ୍ପ ଚିରିଯାଇଥିବା କୁରୁତାଗୁଡ଼ିକୁ ଶୀତଦିନରେ କୋଟ୍‌ତଳେ ପିନ୍ଧିବାଲାଗି ସେ ବାକ୍‌ସରେ ରଖି ଦେଉଥିଲେ । କେବେ କେବେ ତାଙ୍କ କ୍ଷୌର ହେବାଲାଗି ଥିବା ସାବୁନ୍ ମୋ' ଅସାବଧାନତାବଶତଃ ବଦଳା ନ ଯାଇ ପୋଷ ହୋଇ ପଇସାପରି ହୋଇଗଲେ, ସେ ବାଧ ହୋଇ ମୋ' ଆଡ଼କୁ ଚାହିଁ ସାବୁନ୍‌ଦାନୀ ମୋତେ ଦେଖାଇ ହସି ହସି କହୁଥିଲେ "ଅରେ ଅଧେ ଏ ଆଡ଼କୁ ଟିକିଏ ଦୃଷ୍ଟି ଦିଅ ।" କିନ୍ତୁ ଶାସ୍ତ୍ରୀଜୀ ତାଙ୍କ ଟୋପି ସମ୍ବନ୍ଧରେ ସବୁବେଳେ ବିଶେଷଭାବରେ ସତର୍କ ରହୁଥିଲେ । ତାଙ୍କ ପାଖରେ କେତେଗୁଡ଼ିଏ ଟୋପି ଥିଲା, ତନ୍ମଧ୍ୟରେ ଦୁଇ ତିନୋଟି ଟୋପିକୁ ସେ ଖୁବ୍ ପସନ୍ଦ କରୁଥିଲେ । ଟୋପିଗୁଡ଼ିକୁ ସେ ଅତ୍ୟନ୍ତ ଯତ୍ନ ସହକାରେ ରଖୁଥିଲେ । କେବେ କେବେ ତାଙ୍କ ଟୋପି ଏଣେତେଣେ ରହି ଯାଉଥିଲେ, ସେଥିଲାଗି ସେ ବିଶେଷ ଚିନ୍ତିତ ହୋଇ ପଡ଼ୁଥିଲେ । ସେଗୁଡ଼ିକ ନ ମିଳିବା ପର୍ଯ୍ୟନ୍ତ, ତାଙ୍କୁ ଶାନ୍ତି ମିଳୁ ନ ଥିଲା । କେବେ କେବେ ଏହି ଟୋପି ଲାଗି ତାଙ୍କର ବାହାରକୁ ଯିବାରେ ବିଳମ୍ବ ହୋଇଯାଉଥିଲା; କାରଣ କେତେକ ବିଶେଷ ଉତ୍ସବ ଓ ନିର୍ଦ୍ଦିଷ୍ଟ ସ୍ଥାନକୁ ଯିବାବେଳେ, ସେ ସେହି ଟୋପି ବ୍ୟବହାର କରୁଥିଲେ ।

ଶାସ୍ତ୍ରୀଜୀଙ୍କର ଟୋପି ପିନ୍ଧା ଅଭ୍ୟାସ ପରି ମୋର ଗୋଟିଏ ନୂଆ ଅଭ୍ୟାସ ପଡ଼ିଯାଇଥିଲା । ଏ ପ୍ରକାର ଅଭ୍ୟାସ କେବଳ କୁସୁମ ଓ ସୁମନଙ୍କ ଲାଗି ହୋଇଥିଲା । ମୁଁ ଯେତେବେଳେ ଶାଢ଼ୀ ପିନ୍ଧି ବାହାରକୁ ଯିବାଲାଗି ପ୍ରସ୍ତୁତ ହୁଏ, ଝିଅ ଦୁହେଁ କହନ୍ତି—

"ଠିକ୍‌ଭାବରେ ଶାଢ଼ୀ ପିନ୍ଧ ମା', ଏମିତି ପିନ୍ଧିଲେ ଚଳିବ ନାହିଁ । ଏମିତି କାହିଁକି ପିନ୍ଧୁଛ, ସେମିତି ପିନ୍ଧ ।" ତେଣୁ ମୋତେ କେତେ ଥର ଶାଢ଼ୀ ପିନ୍ଧିବାକୁ ପଡ଼େ । ଏହା ଫଳରେ ବାରମ୍ବାର ଠିକ୍ ଭାବରେ ଶାଢ଼ୀ ପିନ୍ଧିବା ମୋର ଗୋଟିଏ ଅଭ୍ୟାସରେ ପରିଣତ ହୋଇଗଲା । ଯେତେବେଳେ ମୋତେ ଶାସ୍ତ୍ରୀଜୀଙ୍କ ସହିତ ବାହାରକୁ ଯିବାକୁ ପଡ଼ୁଥିଲା, ସେତେବେଳେ ମୁଁ ପାଞ୍ଚ ସାତ ଥର ଶାଢ଼ୀ ପିନ୍ଧୁଥିଲି । କେବେ କେବେ ଶାସ୍ତ୍ରୀଜୀ ପ୍ରସ୍ତୁତ ହୋଇ ମୋତେ ଅପେକ୍ଷା କରି ବସି ରହୁଥା'ନ୍ତି, ମୁଁ ତେଣେ ଶାଢ଼ୀଟିକୁ ପିନ୍ଧିବାରେ ବ୍ୟସ୍ତ ରହୁଥାଏ ।

ଥରେ ମୋତେ ବାରମ୍ବାର ଶାଢ଼ୀ ପିନ୍ଧିବାରେ ବ୍ୟସ୍ତ ଥିବାର ଦେଖି ଶାସ୍ତ୍ରୀଜୀ ବାଧ୍ୟ ହୋଇ କହିଲେ—"ଏ' ପ୍ରକାର ଭ୍ରାନ୍ତ ଧାରଣା ତୁମର କେଉଁଠାରୁ ହେଲାଣି ?" ମୁଁ ହସି ହସି ଉତ୍ତର ଦେଲି, "ଆପଣଙ୍କ ଟୋପି ପିନ୍ଧା ପରି ମୋର ଏ ଅଭ୍ୟାସ ହୋଇଗଲାଣି ।" ଏହା ଶୁଣି ସେ ହସିଦେଲେ ।

## ଶେଷ ସାକ୍ଷାତ୍ ନୁହେଁ—

ରୁଷିଆ ପ୍ରଧାନମନ୍ତ୍ରୀଙ୍କ ନିମନ୍ତ୍ରଣ କ୍ରମେ ରୁଷିଆ ଯିବାର କାର୍ଯ୍ୟକ୍ରମ ପ୍ରସ୍ତୁତ ହେଲା' ଦେଶ ବାହାରକୁ ଯିବାର ମୋର ପ୍ରଥମ ଅବସର ତାହା ହିଁ ଥିଲା । ସେଥିଲାଗି ମୁଁ ଖୁବ୍ ଖୁସି ହୋଇଥିଲି । ମୋର ବିଶେଷ ଖୁସି ହେବାର କାରଣ ହେଉଛି, ଯେଉଁ ଦେଶ ଉଚ୍ଚନୀଚ, ସ୍ରେଷ୍ଟବଡ଼ ଭେଦଭାବକୁ ଦୂରକରି, ଦୁନିଆଁ ଆଗରେ ଗୋଟିଏ ନୂତନ ଆଦର୍ଶ ଥୋଇ ପାରିଛି, ସେହି ମହାନ୍ ଦେଶ ଦେଖିବାର ସୁବିଧା ମିଳିଥିଲା । କେବଳ ସେତିକି ନୁହେଁ, ରୁଷିଆର ପ୍ରଧାନମନ୍ତ୍ରୀ କୋସିଜିନ୍ ପୃଥିବୀର ସମସ୍ତ ଦେଶକୁ ଭ୍ରାତୃତ୍ୱବନ୍ଧନରେ ବାନ୍ଧିଦେବା ଲାଗି ପ୍ରଶଂସନୀୟ ପ୍ରଚେଷ୍ଟା କରୁଥିଲେ । ରୁଷିଆରେ ଶାସ୍ତ୍ରୀଜୀଙ୍କୁ ଯେପରି ସମ୍ବର୍ଦ୍ଧନା ଦିଆ ଯାଇଥିଲା, ତାହା ଭାଷାରେ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ରୁଷିଆର ଭାଇ-ଭଉଣୀମାନେ ଯେଉଁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଲେ, ସେଥିରେ ଆତ୍ମୀୟତା ପୂରି ରହିଥିଲା । ଟିକେ ହେଲେ ଲୋକ ଦେଖାଣିଆ ଭାବ ସେଥିରେ ନ ଥିଲା । ସେ ସମ୍ବର୍ଦ୍ଧନାରୁ ସ୍ପଷ୍ଟ ଜଣାପଡ଼ୁଥିଲା; ସତେ ଯେପରି, ଭାରତ ଓ ରୁଷିଆ ଗୋଟିଏ ଶରୀରର ଦୁଇଟି ଅଙ୍ଗ । ପ୍ରଧାନମନ୍ତ୍ରୀ ଶ୍ରୀ କୋସିଜିନଙ୍କ ପତ୍ନୀଙ୍କୁ ଆଉ ଅଧିକ ପ୍ରଶଂସା କରିବି କ'ଣ ? ଜଣାପଡ଼ିଲା, ସତେ ଯେପରି, କେଉଁ ବର୍ଷର ଦୁଇଟି ବିଧିର ପ୍ରାଣୀ ହଠାତ୍ ମିଳିତ ହୋଇଛନ୍ତି । ସେ ବରାବର ମୋ'ସହିତ ରହୁଥିଲେ । ମୋତେ ସବୁକିଛି ଦେଖାଇ, ତା'ର ବିଶେଷିତ୍ୱ ସମ୍ବନ୍ଧରେ ବୁଝାଇ ଦେଉଥିଲେ । ସେହି କେତୋଟି ଦିନର ତାଙ୍କ ସହୃଦୟତା ଓ ଅତିଥି ପରାୟଣ କରି ନେବାର ମନୋଭାବକୁ ମୁଁ ଆଜ ସୁଦ୍ଧା ଭୁଲିପାରି ନାହିଁ ।

ବିଦାୟବେଳରେ ସେ କହିଥିଲେ, "ଏହା ଆମର ଶେଷ ଦେଖା ନୁହେଁ, ଆମର ପୁଣି ଦେଖାହେବ ।" ସେ ଏତକ କହି କାନ୍ଦି ପକାଇଲେ । ମୁଁ ମଧ୍ୟ କାନ୍ଦିଲି । ପରେ ଉଡ଼ା ଜାହାଜରେ ବସିବାର ଅନେକ ସମୟ ପର୍ଯ୍ୟନ୍ତ ମୁଁ କାନ୍ଦୁଥିଲି; କିନ୍ତୁ ଦୁର୍ଭାଗ୍ୟକୁ ହାତ କାହାର ? ଦ୍ୱିତୀୟଥର ଆମର ଆଉ ଦେଖା ସାକ୍ଷାତ୍ ହୋଇପାରିଲା ନାହିଁ ! ଶ୍ରୀମତୀ କୋସିଜିନ୍ ଆଉ ଇହଧାମରେ ନାହାନ୍ତି ।

## ଟିଟୋଙ୍କ ଦେଶରେ—

ଏହିପ୍ରକାର ମୋତେ ଶାସ୍ତ୍ରୀଜୀଙ୍କ ସଙ୍ଗରେ ଯୁଗୋସ୍ଲାଭିଆ ଯିବାର ସୁଯୋଗ ମିଳିଲା । ସେଠାରେ ଯେଉଁ ସ୍ୱାଗତ ସତ୍କାର କରାଗଲା, ତାହା ବାସ୍ତବିକ୍ ଦେଖିବାର କଥା । ସେଠାକାର ଲୋକମାନଙ୍କର ଭାରତବାସୀଙ୍କ ପ୍ରତି କିପରି ସ୍ନେହଭାବାପନ୍ନ ମନୋଭାବ ରହିଛି, ତାହା ସେହି ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦେଖିବା ପରେ ହିଁ ଧାରଣା କରିହେଲା । ଆମ ପ୍ରତି ରାଷ୍ଟ୍ରପତି ଟିଟୋ ଓ ତାଙ୍କ ପତ୍ନୀଙ୍କ ସ୍ନେହ ସମ୍ବନ୍ଧରେ ଯେତେ କହିଲେ ହେଁ, ଯଥେଷ୍ଟ ହେବ ନାହିଁ । ତାଙ୍କ ପତ୍ନୀ ଏତେ ସୁନ୍ଦର ସ୍ନେହଶୀଳା ମହିଳା ଯେ, ମୁଁ ତାହା ଭାଷାରେ ବ୍ୟକ୍ତ କରିପାରିବି ନାହିଁ । ସବୁ ସ୍ଥାନକୁ ସେ ମୋ' ସହିତ ଯାଉଥିଲେ ଏବଂ ଗୋଟି ଗୋଟି କରି ମୋତେ ପ୍ରତ୍ୟେକ ଜିନିଷ ଦେଖାଇ, ତାହାର ବିଶେଷତ୍ୱ ସମ୍ବନ୍ଧରେ ଧାରଣା ଦେଉଥିଲେ । ଆସିବା ବେଳେ ସେ ବିନୀତ ଭାବରେ କହିଥିଲେ ଯେ, ସେମାନେ ଆମର ସତ୍କାର ଭଲଭାବରେ କରିପାରିଲେ ନାହିଁ । ସେମାନେ କେତେ ଅତିଥିପରାୟଣ ! ପରେ ସେ ଯେତେବେଳେ ଭାରତ ଆସିଲେ, ମୋ' ସହିତ ଦେଖାସାକ୍ଷାତ୍ କରିବା ପାଇଁ ଆମ ଘରକୁ ଆସିଥିଲେ । ରାଷ୍ଟ୍ରପତି ଟିଟୋଙ୍କ ଦେଶ ପ୍ରକୃତରେ ଦର୍ଶନୀୟ । ସେଠାରେ ଖୁବ୍ ପ୍ରଗତି ହୋଇଛି । ସେଠାକାର ଲୋକମାନଙ୍କ ମନରେ ଦେଶକୁ ସୁଦୃଢ଼ ତଥା ସୁଖସମୃଦ୍ଧି ଶାଳୀ କରିବାଲାଗି ବିଶେଷ ଆଗ୍ରହ ତଥା ନିଷ୍ଠା ପୂରି ରହିଛି ।

---

# ଅଠେଇଶି

## ଦେଶର ଅସ୍ତିତ୍ୱ—

ଶାସ୍ତ୍ରୀଜୀ ପ୍ରଧାନମନ୍ତ୍ରୀ ଦାୟିତ୍ୱରେ ରହିବାର ଅଳ୍ପଦିନ ପରେ ଦେଶକୁ ଏକ ସଙ୍କଟର ସମ୍ମୁଖୀନ ହେବାକୁ ପଡ଼ିଲା । କାଶ୍ମୀରରେ ପାକିସ୍ଥାନୀ-ସୀମା-ଅତିକ୍ରମକାରୀଙ୍କର କାର୍ଯ୍ୟକଳାପ ବଢ଼ିବାକୁ ଲାଗିଲା । ଗୁପ୍ତବେଶରେ ସେମାନେ କାଶ୍ମୀରର ବିଭିନ୍ନ ସ୍ଥାନରେ ଭଙ୍ଗାରୁଜା କାମ ଆରମ୍ଭ କରିଦେଲେ । ପାହାଡ଼ ଓ ଘନଜଙ୍ଗଲ ମଧ୍ୟରେ ଗୁପ୍ତ-ଅସ୍ତାଗାର ନିର୍ମାଣ କଲେ ଏବଂ ତତ୍ ସଙ୍ଗେ ସଙ୍ଗେ ସେମାନେ ଜନସାଧାରଣଙ୍କ ମଧ୍ୟରେ ନାନାପ୍ରକାର ମିଥ୍ୟା ପ୍ରଚାର ଆରମ୍ଭ କରିଦେଲେ । ପ୍ରଥମେ ସରକାରଙ୍କୁ ଏ ବିଷୟରେ ବାସ୍ତବିକତା ସମ୍ବନ୍ଧରେ କିଛି ଜଣା ପଡ଼ିଲା ନାହିଁ; କିନ୍ତୁ ଯେତେବେଳେ ସୀମା ଅତିକ୍ରମକାରୀଙ୍କ ଷଡ଼ଯନ୍ତ୍ର ବିରାଟ ଆକାର ଧାରଣ କଲା ଏବଂ କାଶ୍ମୀରକୁ ଆମଠାରୁ ଛଡ଼ାଇ ନେବାର ଷଡ଼ଯନ୍ତ୍ର କରିବାରେ ଲାଗିଲେ, ସେତେବେଳେ ସରକାର ଦୃଢ଼ତା ଅବଲମ୍ବନ କଲେ । ଧରପଗଡ଼ ଚାଲିଲା । ଅନୁସନ୍ଧାନରୁ ଜଣାପଡ଼ିଲା ଯେ ପାକିସ୍ଥାନ ଏହି ସୀମା ଅତିକ୍ରମକାରୀଙ୍କ ଜରିଆରେ କାଶ୍ମୀରରେ ଗଣ୍ଡଗୋଳ ଲଗାଇ ତାକୁ ହସ୍ତଗତ କରିବାର ପ୍ରଚେଷ୍ଟାରେ ରହିଛି । ବଡ଼ ଆଶ୍ଚର୍ଯ୍ୟ ବୋଧହେଲା । ପାକିସ୍ଥାନଠାରୁ ଏପରି ଆଶା କରିଯାଉ ନ ଥିଲା । ନିଜ ନିଜ ମଧ୍ୟରେ ଲଢ଼େଇ କରିବାଦ୍ୱାରା ପରସ୍ପରର କ୍ଷତି ବ୍ୟତୀତ ଅଧିକ କିଛି ଆଶା କରିଯାଇପାରେ ନାହିଁ । ଶାସ୍ତ୍ରୀଜୀ ସବୁବେଳେ କହୁଥିଲେ—"ଯୁଦ୍ଧଦ୍ୱାରା ସମସ୍ୟାର ସମାଧାନ ହୁଏ ନାହିଁ ବରଂ ସମସ୍ୟା ବଢ଼େ । ପରସ୍ପର ମଧ୍ୟରେ ଲଢ଼େଇ କରିବା ଅପେକ୍ଷା ଦାରିଦ୍ର୍ୟ, ଅଜ୍ଞାନତା ଓ ଦୁଃସାଧ୍ୟ ରୋଗ ବିରୁଦ୍ଧରେ ଆମର ସଂଗ୍ରାମ ଚଳାଇବା ଉଚିତ । ସାଧାରଣ ଲୋକଙ୍କୁ ଶାନ୍ତିପୂର୍ଣ୍ଣ ଉପାୟରେ ପ୍ରଗତି କରିବାର ସୁଯୋଗ ମିଳିବା ଆବଶ୍ୟକ ।" ଏଣୁ ଶାସ୍ତ୍ରୀଜୀ ବଡ଼ ଚିନ୍ତାରେ ପଡ଼ିଲେ । ସେ ଯୁଦ୍ଧଲାଗି ଯେତେ ଚିନ୍ତା କରୁ ନ ଥିଲେ, ଉଭୟ ଦେଶର ଲୋକମାନଙ୍କର ଯେଉଁ କ୍ଷୟକ୍ଷତି ହେବ, ସେ ସମ୍ବନ୍ଧରେ ଅଧିକ ଚିନ୍ତା କରୁଥିଲେ । ତେଣୁ ସେ ପାକିସ୍ଥାନ ସହିତ ସନ୍ଧି ବ୍ୟବହାର

କଲେ । ସେ ଉଭୟ ଦେଶର ନେତାମାନଙ୍କ ମଧ୍ୟରେ ମନ୍ତ୍ରଣାଲାଗି ମତ ଦେବା ସଙ୍ଗେ ସଙ୍ଗେ ପରବର୍ତ୍ତୀ ପରିଣାମ ସମ୍ବନ୍ଧରେ ସୂଚନା ଦେଲେ; କିନ୍ତୁ ସେପ୍ରକାର ପ୍ରଚେଷ୍ଟାରେ କିଛି ସୁଫଳ ଫଳିଲା ନାହିଁ । ବରଂ ସୀମା ଅତିକ୍ରମକାରୀଙ୍କ ଦୌରାତ୍ମ୍ୟ ଦିନକୁଦିନ ଅଧିକ ବଢ଼ିବାକୁ ଲାଗିଲା । ସେମାନେ ଗ୍ରାମରେ ନିଆଁ ଲଗାଇ ଦେବା, ନିରୀହ ସାଧାରଣ ଜନତାଙ୍କୁ ନାନାପ୍ରକାର କଷ୍ଟଦେବା ଓ ସୁବିଧା ଦେଖି ଭାରତୀୟ ଜବାନମାନଙ୍କର ସମ୍ମୁଖୀନ ହେବା ଆଦି ନାନାପ୍ରକାର ଉତ୍ତେଜନାମୂଳକ କାର୍ଯ୍ୟ କରିବାକୁ ଲାଗିଲେ । ଏହା ଫଳରେ ଆମ ଦେଶବାସୀଙ୍କ ମନରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହେଲା । ଏପରି ପ୍ରତିକ୍ରିୟା ସୃଷ୍ଟି ହେବା ସ୍ୱାଭାବିକ । ନିଜ ଦେଶପ୍ରତି କାହାର ମମତା ନ ଥାଏ ? ଶାସ୍ତ୍ରୀଜୀ ତଥାପି ଶାନ୍ତ ରହିଥିଲେ । ହଁ, ଅବଶ୍ୟ ସେ ଏହା ଫଳରେ ଖୁବ୍ ସତର୍କ ହୋଇ ଯାଇଥିଲେ । ସେ ସୀମାଅତିକ୍ରମକାରୀଙ୍କୁ ଧରି, ସେମାନଙ୍କ ଷଡ଼ଯନ୍ତ୍ରମୂଳକ ଯୋଜନାକୁ ନଷ୍ଟଭ୍ରଷ୍ଟ କରିଦେବାଲାଗି ଜୋର୍ ସୋର୍‌ରେ କାର୍ଯ୍ୟ ଆରମ୍ଭ କରାଇ ଦେଇଥିଲେ । ଦେଖୁ ଦେଖୁ, ହଜାରେ ଦି' ହଜାର ନୁହେଁ, ଦଶହଜାର ସଂଖ୍ୟାରେ ସୀମାଅତିକ୍ରମକାରୀ ଗିରଫ ହୋଇଗଲେ ଏବଂ ପାକିସ୍ତାନୀ ଅସ୍ତ୍ରଭଣ୍ଡାରଗୁଡ଼ିକ ଆମ ଗୁପ୍ତଚର ବିଭାଗଦ୍ୱାରା ଧରା ପଡ଼ିଲା ।

### ଦେଶବାସୀଙ୍କ ସ୍ନେହ—

ପାକିସ୍ତାନ ବହୁ ପୂର୍ବରୁ ପ୍ରସ୍ତୁତ ହୋଇ ରହିଥିଲା । ତା'ର ଏପ୍ରକାର ଅପଚେଷ୍ଟାଟି ବିଫଳ ହେବାରୁ ସେ ସୈନ୍ୟବାହିନୀକୁ ଆକ୍ରମଣ କରିଦେବାଲାଗି ଆଦେଶ ଦେଇଦେଲା । ଶହ ଶହ ଟ୍ୟାଙ୍କ ସହ ପାକିସ୍ତାନୀ ସେନାବାହିନୀ ଭାରତ ଭିତରକୁ ମାଡ଼ି ଆସିଲା । ସେହି ବିଶାଳ ଟ୍ୟାଙ୍କ ବାହିନୀର ଆକ୍ରମଣରେ ପାହାଡ଼ କମ୍ପି ଉଠୁଥିବାବେଳେ, ଭାରତୀୟ ଜବାନ୍‌ମାନଙ୍କର ବା ଉପାୟ କ'ଣ ? ତଥାପି ଭାରତୀୟ ଜବାନ୍‌ମାନେ ଜାଣିଥିଲେ ଯେ, ସେମାନଙ୍କର ବିଜୟ ସୁନିଶ୍ଚିତ । ପରିଶେଷରେ ଶାସ୍ତ୍ରୀଜୀ ଯୁଦ୍ଧରେ ପଶିବାଲାଗି ବାଧ୍ୟ ହେଲେ; କାରଣ ତାଙ୍କର ନୀତି ଥିଲା—"ଆମର ଅସ୍ତିତ୍ୱ ରହୁ ବା ନ ରହୁ; କିନ୍ତୁ ଆମ ପତାକାର ସମ୍ମାନ ତଥା ଆମ ଦେଶର ଅସ୍ତିତ୍ୱ ବଜାୟ ରହୁ ।" ସେ ଏହି ସିଦ୍ଧାନ୍ତ ଉପରେ ନିଜର ଜୀବନ ଗଠନ କରିଥିଲେ । ତେଣୁ ସେ ଭାରତର ବାହାଦୁର ଜବାନ୍‌ମାନଙ୍କୁ ଯୁଦ୍ଧ କରିବାଲାଗି ଆଦେଶ ଦେଇଦେଲେ । ଜବାନ୍ ମାନେ ନିଜ ଜୀବନର ବିନିମୟରେ ଅସମ୍ଭବକୁ ସମ୍ଭବରେ ପରିଣତ କରି ଦେଖାଇ ଦେଲେ । ବିଶାଳ ଟ୍ୟାଙ୍କ-ବାହିନୀକୁ ଧରାଶାୟୀ କରି, ପାକିସ୍ତାନୀ ସେନାବାହିନୀକୁ ପଛକୁ ହଟାଇବା ସଙ୍ଗେ ସଙ୍ଗେ, ନିଜେ ଆଗେଇ ଚାଲିଲେ । ସତେ ଯେପରି ସେମାନେ ଶାସ୍ତ୍ରୀଜୀଙ୍କ ଗୌରବକୁ ଉଜ୍ଜ୍ୱଳମୟ କରିବା ଉଦ୍ଦେଶ୍ୟରେ ନିଜର ସର୍ବସ୍ୱ ଅର୍ପଣ କରି ବଳପଥର ସାଜି

ହୋଇଥାନ୍ତ ! ତାହା ହିଁ ହେଲା; ଭାରତୀୟ ଜବାନ୍‌ମାନେ ଆଗକୁ ମାଡ଼ି ଗ୍ଲେଲେ । ସମଗ୍ର ପୃଥିବୀ ସେମାନଙ୍କ ବୀରତ୍ୱରେ ଆଶ୍ଚର୍ଯ୍ୟ ହୋଇଗଲା । ତା'ପରେ ବିଶ୍ୱର ଅନ୍ୟାନ୍ୟ ଦେଶମାନେ ମଧ୍ୟସ୍ଥତା କରିବାକୁ ବାହାରି ପଡ଼ିଲେ । ଯୁଦ୍ଧବିରତି ଲାଗି କଥାବାର୍ତ୍ତା ଚାଲିଲା । ଶାସ୍ତ୍ରୀଜୀ କେବେହେଲେ ଯୁଦ୍ଧ ଚାହୁଁ ନ ଥିଲେ । ଯୁଦ୍ଧ ଚାଲିଥିବା ସମୟରେ ପାକିସ୍ଥାନୀ ଜନତାର ଯଥାସମ୍ଭବ ସୁରକ୍ଷା ଲାଗି ସେ ସେନାବାହିନୀକୁ ନିର୍ଦ୍ଦେଶ ଦେଇଥିଲେ । ଯା'ହେଉ, ଯୁଦ୍ଧ ବନ୍ଦ ହେଲା ।

ଶାସ୍ତ୍ରୀଜୀ ଯେଉଁପରି ଭାବରେ ଦେଶବାସୀ, ଜବାନ୍ ଓ କିସାନ୍‌ମାନଙ୍କ ଉଦ୍ଦେଶ୍ୟରେ ସ୍ନେହ ଓ ଶ୍ରଦ୍ଧା ଅର୍ପଣ କରିଥିଲେ, ସେ ନିଜେ ଠିକ୍ ସେହିଭଳି ସ୍ନେହ ଓ ଶ୍ରଦ୍ଧାର ଭାଜନ ହୋଇ ପାରିଥିଲେ । ଏଭଳି ଶ୍ରଦ୍ଧା ଓ ଆତ୍ମୀୟତା ଶହ ଶହ ବର୍ଷ ମଧ୍ୟରେ କୌଣସି ନେତାଙ୍କ ଭାଗ୍ୟରେ ମିଳିଥିବ କି ନା, ସନ୍ଦେହ ।

———

# ଅଣାଢିରଣ

**ରାଣୀସାହେବାଙ୍କ ପ୍ରସ୍ତାବ—**

ବହୁଦିନର କଥା, ଶାସ୍ତ୍ରୀଜୀ ଉତ୍ତରପ୍ରଦେଶର ପରରାଷ୍ଟ୍ର ବିଭାଗ ମନ୍ତ୍ରୀ ଥିଲାବେଳେ ଆମେ ଥରେ ପିଲାମାନଙ୍କୁ ଧରି "ନୈନିତାଲ" ଯାଇଥିଲୁ । ସେଠାରେ ଜଣେ ଜ୍ୟୋତିଷ ମୋତେ କହିଥିଲେ—ନିଜ ପୁଅମାନଙ୍କ ବ୍ୟତୀତ ମୋତେ ଏପରି ଆଉ ଗୋଟିଏ ପୁଅ ମିଳିବ, ଯେ କି ନିଜ ପୁଅମାନଙ୍କ ଅପେକ୍ଷା ମୋର ଅଧିକ ଯତ୍ନନେବ ଏବଂ ମୋ ପାଇଁ ସବୁ କିଛି କରିବାକୁ ପ୍ରସ୍ତୁତ ହେବ । ସେତେବେଳେ ସେ କଥା ଶୁଣିଲି, କିଛିଦିନ ମନେ ରଖିଲି, ପୁଣି ଭୁଲିଗଲି । ତାପରେ କିଛି ଦିନ ପୂର୍ବରୁ 'ମାଣ୍ଡା' ରାଜାଙ୍କର ଅନୁରୋଧକ୍ରମେ ଶାସ୍ତ୍ରୀଜୀ ସେଠାକୁ ଭାଷଣ ଦେବାକୁ ଯାଇଥିଲେ । ରାଜାସାହେବ ଶାସ୍ତ୍ରୀଜୀଙ୍କୁ ଯେଉଁ ସ୍ୱାଗତ-ସମ୍ବର୍ଦ୍ଧନା ଜଣାଇଥିଲେ, ତାହା ବାସ୍ତବିକ ଥିଲା ଅଦ୍ଭୁତ ଧରଣର । ସବୁଠାରୁ ବେଶି ଅଦ୍ଭୁତତା ଥିଲା, ଶାସ୍ତ୍ରୀଜୀଙ୍କୁ ତିଳକ କରିବାରେ ! ରାଜାସାହେବ ନିଜ ଆଙ୍ଗୁଳି କାଟି, ସେହି ରକ୍ତରେ ଶାସ୍ତ୍ରୀଜୀଙ୍କ ଲଲାଟରେ ଟୀକା ପିନ୍ଧାଇ ଦେଇଥିଲେ । ସେହି ସମୟରୁ, ମୁଁ ଜାଣେନା କାହିଁକି ରାଜାସାହେବଙ୍କ ପ୍ରତି ମୋ' ମନରେ ପୁତ୍ରବତ୍ ଧାରଣା ଜାତ ହେବା ସଙ୍ଗେ ସଙ୍ଗେ ପୂର୍ବରୁ ହୋଇଥିବା ଜ୍ୟୋତିଷଙ୍କ ଭବିଷ୍ୟତବାଣୀ ମନେ ପଡ଼ିଲା । ସରକାରୀ ହାଉସ୍‌କୁ ଫେରିଆସିବା ପରେ, ମୁଁ ଶାସ୍ତ୍ରୀଜୀଙ୍କଠାରେ ମୋ' ମନୋଭାବ ବ୍ୟକ୍ତ କଲି ! ଶାସ୍ତ୍ରୀଜୀଙ୍କ ମନରେ ରାଜାସାହେବଙ୍କ ପ୍ରତି ଖୁବ୍ ଭଲ ଧାରଣା ଜାତ ହୋଇଥିଲା ।

"ମେଜା" ତହସିଲରେ 'ମାଣ୍ଡା' ଗୋଟିଏ ସମୃଦ୍ଧ ଅଞ୍ଚଳ । ସ୍ୱାଧୀନତା ପୂର୍ବରୁ ଏହା "ମାଣ୍ଡା ରାଜ୍ୟ" ନାମରେ ଏକ ଦେଶୀୟ ରାଜ୍ୟ ଥିଲା । 'ମାଣ୍ଡା'ର ରାଜମହଲ ପ୍ରକୃତରେ ଏକ ଦର୍ଶନୀୟ ପ୍ରାସାଦ ।

ପରଦିନ ରାଜାସାହେବଙ୍କ ସହିତ ରାଣୀସାହେବା ଆମକୁ ଦେଖା କରିବାକୁ ଆସିଲେ । କଥାବାର୍ତ୍ତା ପ୍ରସଙ୍ଗରେ ରାଣୀସାହେବା ଆରମ୍ଭ କଲେ—"ମା' ! ଶୁଣିବାକୁ

ପାଇଲି । ଶାସ୍ତ୍ରୀଜୀ ଗୋଟିଏ ଆଶ୍ରମ ଖୋଲିବାକୁ ଚାହୁଁଛନ୍ତି । କେଉଁଠି ଖୋଲିବାକୁ ମନସ୍ଥ କରିଛନ୍ତି ?"

ଏମିତି ତ 'ଗୁଲରିଆ' ଗ୍ରାମରେ ଖୋଲିବାକୁ ଭାବିଥିଲୁ; କିନ୍ତୁ ମୁଁ ଭାବୁଛି, ସେଠାରେ ନ ଖୋଲି ଏଇ 'ମାଣ୍ଡା'ରେ ଖୋଲିଗଲେ ଖୁବ୍ ଭଲ ହୁଅନ୍ତା ।"

"ଖୁବ୍ ଭଲ ହେବ ଏବଂ ଆମ ଦ୍ୱାରା ଯେତକ ହୋଇପାରିବ, ଆମେ ସବୁବେଳେ ସେବା କରିବାଲାଗି ପ୍ରସ୍ତୁତ । ମୋର ନିବେଦନ ଆପଣ ଶାସ୍ତ୍ରୀଜୀଙ୍କୁ ଜଣାନ୍ତୁ । ରାଜା-ସାହେବଙ୍କର ଏହା ହିଁ ଇଚ୍ଛା । 'ମାଣ୍ଡା'ରେ ଆପଣଙ୍କୁ ଅନେକ ପ୍ରକାର ସୁବିଧା ମିଳିବ ।"

**ଶାସ୍ତ୍ରୀଜୀଙ୍କର ଦୁଇଟି ଇଚ୍ଛା—**

ରାଣୀସାହିବାଙ୍କ ପ୍ରସ୍ତାବ ଶୁଣି ମୁଁ ଖୁବ୍ ଖୁସି ହେଲି; କିନ୍ତୁ କିଏ ଜାଣିଥିଲା ଯେ, ଶାସ୍ତ୍ରୀଜୀଙ୍କ ମୃତ୍ୟୁ ପରେ ହିଁ ତାଙ୍କର ସ୍ୱପ୍ନ ସାକାର ହୋଇପାରିବ । କାରଣ ସେ ଚାହୁଁଥିଲେ—ରାଜନୀତିରୁ ଅବସର ନେବାପରେ ସେ ଦୁଇଟି କାମ କରିବେ । ପ୍ରଥମରେ ସେ ଗୋଟିଏ ଆଦର୍ଶ-ଆଶ୍ରମ ଖୋଲିବେ, ଦ୍ୱିତୀୟରେ କେତେଖଣ୍ଡି ପୁସ୍ତକ ଲେଖିବେ । ଥରେ ରାଜନୀତିରୁ ଅବସର ନେବାପରେ, ଆଉ ରାଜନୀତିକୁ ଫେରିବେ ନାହିଁ ବୋଲି ସେ ଇଚ୍ଛା ପ୍ରକାଶ କରିଥିଲେ । ଆଶ୍ରମ ସ୍ଥାପନ ହୋଇପାରି ନ ଥିଲେ ମଧ୍ୟ "ଶାସ୍ତ୍ରୀ-ସେବା-ନିକେତନ"ର ସ୍ଥାପନା ହୋଇପାରିଛି । ସେ 'ନିକେତନ'ଟି 'ମାଣ୍ଡା'ର ରାଜମହଲରେ ହିଁ ସ୍ଥାପିତ ହୋଇଛି । ରାଜାସାହେବ 'ଶାସ୍ତ୍ରୀ-ସେବା-ନିକେତନ' ଲାଗି କେବଳ ରାଜମହଲଟି ଦେଇ ନାହାନ୍ତି ବରଂ ଏକପ୍ରକାର ସେ ନିଜର ସବୁ କିଛି ସେଥିଲାଗି ଅର୍ପଣ କରିଛନ୍ତି । ସେ 'ସେବା ନିକେତନ' ଲାଗି ଯେପରି ମନପ୍ରାଣ ଓ ଧନବ୍ୟୟ କରି କାମ କରୁଛନ୍ତି, ତାହା ଭାଷାରେ ବ୍ୟକ୍ତକରି ହେବ ନାହିଁ । ମୁଁ ନିଃସଙ୍କୋଚରେ କହିପାରେ ଯେ, 'ସେବାନିକେତନ'ଟି ଯେତେଶୀଘ୍ର ପ୍ରତିଷ୍ଠିତ ହୋଇପାରିଲା; ରାଜାସାହେବଙ୍କ ବିନା ତାହା ସମ୍ଭବ ହୋଇପାରି ନ ଥା'ନ୍ତା । ଯେଉଁମାନେ କେବଳ ନିଜର କର୍ମପ୍ରେରଣା ପାଇଁ ନୁହେଁ, ନିଜର ସ୍ୱଭାବ ଓ ସଦ୍‌ଗୁଣ ଲାଗି ଅନୁପମ କୃତିତ୍ୱ ହାସଲ କରିଛନ୍ତି, ସେହିଭଳି ଅଳ୍ପ କେତେଜଣ ଅଦ୍ଭୁତକର୍ମୀ ବ୍ୟକ୍ତିମାନଙ୍କ ମଧ୍ୟରେ ରାଜାସାହେବ ଅନ୍ୟତମ । ଏବେ ଏହି ଗ୍ରୀଷ୍ମକାଳରେ ଯେତେବେଳେ ଚାରିଆଡ଼େ ପାଣି ବିନା ତ୍ରାହି ତ୍ରାହି ଆର୍ତ୍ତନାଦ ଶୁଭୁଛି, ସେତେବେଳେ ରାଜାସାହେବ ଏକମାତ୍ର ବ୍ୟକ୍ତି ଯେ କି ପ୍ରଚଣ୍ଡ ରୌଦ୍ରର ଝଞ୍ଜା ପବନକୁ ଭ୍ରୂକ୍ଷେପ ନ କରି ଗ୍ରାମ ଗ୍ରାମ ବୁଲି, ନଳକୂପ ଖନନ ଦିଗରେ ଅଭିଯାନ ଚଳାଇ-ଥିଲେ । ବହୁ ପୂର୍ବରୁ ସନ୍ଥ ବିନୋବାଜୀଙ୍କ ଆହ୍ୱାନକ୍ରମେ, ରାଜାସାହେବ ନିଜର ସମସ୍ତ ଜମି ଭୂଦାନ ଆନ୍ଦୋଳନକୁ ଦାନ କରିଦେଇଛନ୍ତି । ରାଜା ବିଶ୍ୱନାଥ ପ୍ରତାପସିଂହଙ୍କ ମାତା ଧନ୍ୟା, ଯେ କି ଏଭଳି ପୁତ୍ରରତ୍ନଙ୍କୁ ନିଜ କୋଳରେ ଜନ୍ମଦେଇଛନ୍ତି ।

## ପୁରୁଷମାନଙ୍କ ବନ୍ଧୁତା—

ଏହ୍ଲାବାଦରୁ ଫେରିଆସିବା ପରେ ଶାସ୍ତ୍ରୀଜୀଙ୍କର ବର୍ମା ଯିବାଲାଗି କାର୍ଯ୍ୟକ୍ରମ ପ୍ରସ୍ତୁତ ହେଲା । ସେଠାକାର ପ୍ରଧାନମନ୍ତ୍ରୀ ଶ୍ରୀ ନେ ୱିନ୍‌ଙ୍କ ପକ୍ଷରୁ ନିମନ୍ତ୍ରଣ ମିଳିଥିଲା । ଶ୍ରୀ ନେ ୱିନ୍‌ଙ୍କ ନେତୃତ୍ୱରେ ବର୍ମା ଯେପରି ଶୀଘ୍ରରେ ଅଭୂତପୂର୍ବ ଉନ୍ନତି କରୁଛି, ତାହା ପ୍ରକୃତରେ ପ୍ରଶଂସନୀୟ । ଶାସ୍ତ୍ରୀଜୀଙ୍କ ସହିତ ମୁଁ ସେଠାକୁ ଯାଇଥିଲି । ଶ୍ରୀମତୀ ନେ ୱିନ୍ ଓ ମୋ ମଧ୍ୟରେ ଏତେ ଶୀଘ୍ର ବନ୍ଧୁତା ହୋଇଗଲା ଯେ, ମୁଁ ତାହା ଭୁଲି ପାରୁନାହିଁ । ସେ ଖୁବ୍ ମେଳାପୀ ତଥା ନିର୍ମଳ ହୃଦୟର ମହିଳା ଅଟନ୍ତି । ଦିନେ ଜେନେରାଲ୍ ନେ ୱିନ୍, ଶାସ୍ତ୍ରୀଜୀ, ଶ୍ରୀମତୀ ନେ ୱିନ୍ ଓ ମୁଁ ସମସ୍ତେ ବସି ଚା' ପିଉଥିବାବେଳେ ମୁଁ କହିଲି—"ଦେଖ, ଆମ ଭିତରେ ଦେଖା ସାକ୍ଷାତ୍ ହେବା ମାତ୍ରେ ବନ୍ଧୁତା ହୋଇଗଲା; କିନ୍ତୁ ଆପଣଙ୍କ ମଧ୍ୟରେ ଏତେ କଥାବାର୍ତ୍ତା ହୋଇଥିଲେ ମଧ୍ୟ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇପାରୁ ନାହାନ୍ତି ।"

ଶାସ୍ତ୍ରୀଜୀ ହସି ହସି କହିଲେ—"ତାହା ତ ଠିକ୍; ମାତ୍ର ଏ କଥା କାହିଁକି ଭୁଲି ଯାଉଛ ଯେ, ତୁମ୍ଭମାନଙ୍କ ମଧ୍ୟରେ ଯେତେ ଶୀଘ୍ର ବନ୍ଧୁତା ସ୍ଥାପିତ ହୋଇଯାଏ, ସେତେ ଶୀଘ୍ର ତୁଟିଯାଏ, କିନ୍ତୁ ଆମ ପୁରୁଷମାନଙ୍କ ମଧ୍ୟରେ ଯଦି ଥରେ ବନ୍ଧୁତା ହୋଇଯାଏ, ତା'ହେଲେ ଶୀଘ୍ର ତାହା ତୁଟିପାରେ ନାହିଁ । ଏହା ବ୍ୟତୀତ ତୁମ୍ଭମାନଙ୍କ ମଧ୍ୟରେ ବନ୍ଧୁତା ତୁଟିଯାଇ ଯଦି କଳହ ଆରମ୍ଭ ହୁଏ, ତା'ହେଲେ ଜୀବନସାରା ଚାଲିଥାଏ; କିନ୍ତୁ ଆମ ପୁରୁଷମାନଙ୍କର ଏପରି କଦର୍ଯ୍ୟ ମନୋଭାବ ନାହିଁ । ଆମେମାନେ କଳି-କଜିଆ ଭିତରେ ବି ସୌହାର୍ଦ୍ଦ୍ୟପୂର୍ଣ୍ଣ ପରିସ୍ଥିତି ସୃଷ୍ଟି କରିବାପାଇଁ କଥାବାର୍ତ୍ତା ଚଳାଇ ଗୋଟିଏ ସମସ୍ୟାର ସମାଧାନ କରିପାରୁ । ଏହା ଠିକ୍ କଥା ନୁହେଁ କି ?"

ଏ କଥା ଶୁଣି ଶ୍ରୀ ନେ ୱିନ୍ ଓ ଆମେ ଦୁହେଁ ହସିଲୁ ।

ଆଜିର ବ୍ରହ୍ମଦେଶ ପ୍ରବଳ ବେଗରେ ଉନ୍ନତି ପଥରେ ଅଗ୍ରସର ହେଉଛି । ପ୍ରତ୍ୟେକ କ୍ଷେତ୍ରରେ ତା'ର ବିକାଶ ସମ୍ଭବ ହୋଇ ପାରିଛି । କାଲିର ବ୍ରହ୍ମଦେଶ ଓ ଆଜିର ବ୍ରହ୍ମଦେଶ ମଧ୍ୟରେ ଅନେକ ପାର୍ଥକ୍ୟ ଦେଖା ଦେଇଛି । ବହିର୍ଜଗତରେ ବ୍ରହ୍ମଦେଶ ଏକ ବିଶେଷ ସ୍ଥାନ ଅଧିକାର କରିବାକୁ ଯାଉଛି ଏବଂ ଦିନକୁ ଦିନ ତା'ର ଶକ୍ତି ବଢ଼ିବାକୁ ଲାଗିଛି । ପ୍ରଧାନମନ୍ତ୍ରୀ ନେ ୱିନ୍‌ଙ୍କ ଦୂରଦର୍ଶିତା ତଥା କାର୍ଯ୍ୟକୁଶଳତା ଫଳରେ ଏହା ହିଁ ସମ୍ଭବ ହୋଇପାରିଛି । ଭାରତବାସୀଙ୍କ ପ୍ରତି ଶ୍ରୀ ନେ ୱିନ୍‌ଙ୍କ ପ୍ରାଣରେ ଅଶେଷ ସ୍ନେହ ଓ ଶ୍ରଦ୍ଧା ରହିଛି । ଭାରତର ଉନ୍ନତିରେ ତାଙ୍କର ବଡ଼ ଆଗ୍ରହ ରହିଛି ଏବଂ ସେପ୍ରକାର ଉନ୍ନତ କିପରି ଉତ୍ତରୋତ୍ତର ବୃଦ୍ଧି ପାଇବ, ସେଥିଲାଗି ସେ ସବୁକିଛି କରିବା ଲାଗି ତତ୍ପର ହୋଇ ପଡ଼ିଛନ୍ତି ।

---

# ତିରଣୀ

ମୁଁ ପିତା ସଙ୍ଗରେ ଯାଇଥାନ୍ତି—

ରୁଷିଆର ପ୍ରଧାନମନ୍ତ୍ରୀ ଶ୍ରୀ କୋସିଜିନ୍, ଶାସ୍ତ୍ରୀଜୀ ଓ ରାଷ୍ଟ୍ରପତି ଆୟୁବ୍ ଖାଁଙ୍କ ମଧ୍ୟରେ ଆପୋଷ ସମାଧାନ ଲାଗି ଉଭୟଙ୍କୁ ତାସ୍‌କନ୍ଦ୍ ଆମନ୍ତ୍ରଣ କରିଥିଲେ । ବର୍ମାରୁ ଫେରିବା ପରେ ତାସ୍‌କନ୍ଦ୍ ଯିବାଲାଗି ଶାସ୍ତ୍ରୀଜୀଙ୍କର ଯୋଗାଡ଼ ଚାଲିଲା । ମୁଁ ଯିବାକୁ ଚାହାଁଲି; କିନ୍ତୁ ଶାସ୍ତ୍ରୀଜୀ ଅନିଚ୍ଛା ପ୍ରକାଶ କରି ମୋତେ ଯିବାକୁ ବାରଣ କଲେ । ମୋତେ ନ ନେବାର କାରଣ ସ୍ୱରୂପ ସେ ସେଠାରେ ଅତ୍ୟଧିକ ଥଣ୍ଡା ପଡୁଥିବା ବିଷୟ କହିଥିଲେ । ସେ ଭାବିଲେ, ମୋତେ ଖୁବ୍ ଥଣ୍ଡା ହୋଇପାରେ ଏବଂ ତା' ଫଳରେ ମୋ' ସ୍ୱାସ୍ଥ୍ୟ ଖରାପ ହେବାର ଆଶଙ୍କା ଥିଲା । ତା' ବ୍ୟତୀତ, ସେ ଆହୁରି ମଧ୍ୟ କହିଲେ— "ସେଠାରେ ତୁମକୁ ଚାରିଆଡ଼େ ବୁଲାଇ ଦେଖାଇବା ଲାଗି ମୋତେ ଆଦୌ ସମୟ ମିଳିବ ନାହିଁ । ତୁମେ ବୃଥା ଘରେ ବସି ବସି ବ୍ୟସ୍ତ ହୋଇପଡ଼ିବ । ସେଠାରୁ ଫେରି ଆସିଲେ ମୁଁ ଆମେରିକା ଯିବି; ସେଠାରେ ତୁମେ ବହୁତ ବୁଲିପାରିବ । ଯେଉଁ ଦେଶର ସାଜସଜ୍ଜା ଓ ଆଡ଼ମ୍ବର ଆଜି ବିଶ୍ୱରେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଛି, ସେହି ଦେଶ ବୁଲି ଦେଖିପାରିବ ।"

ମୁଁ ତାଙ୍କ କଥାରେ ଭୁଲିଗଲି । ଯାହା ଭବିତବ୍ୟ, ତାହା ନିଶ୍ଚୟ ଘଟିବ । ଅନ୍ୟଥା, ମୁଁ ଯେତେବେଳେ ତାଙ୍କ ସଙ୍ଗରେ ସବୁ ଆଡ଼କୁ ଯାଉଥିଲି, ଏଥର ତାସ୍‌କନ୍ଦ୍ ନ ଗଲି କାହିଁକି ? ମୁଁ ତାଙ୍କ କଥା ମାନିଗଲି କାହିଁକି ? ସ୍ୱାସ୍ଥ୍ୟ ଖରାପ ହୋଇଥିଲେ ହୋଇଥା'ନ୍ତା । ତାଙ୍କ ପାଖେ ପାଖେ ରହିବାର ସୁଯୋଗ ତ ପାଇଥାନ୍ତି । ପରିଭ୍ରମଣ କରି ଏଣେ ତେଣେ ଦେଖିବା ପାଇଁ ମୋର ବିଶେଷ ଆଗ୍ରହ କେବେ ନ ଥାଏ । ମୁଁ କେବଳ ତାଙ୍କ ସୁଖ ସୁବିଧା ଦୃଷ୍ଟିରୁ ତାଙ୍କ ସହିତ ସବୁ ଆଡ଼କୁ ଯାଉଥିଲି । ତାଙ୍କର ରୁଚି ଅନୁସାରେ ଖାଇବା ପିଇବା ତଥା ଅନ୍ୟାନ୍ୟ ସୁବିଧା ପ୍ରତି ମୁଁ ଯେପରି ସୁଚାରୁରୂପେ ଦୃଷ୍ଟି ଦେଉଥିଲି, ଅନ୍ୟ କେହି ସେପରି କରିପାରୁ ନ ଥିଲେ; କିନ୍ତୁ ଆଉ କହିବି କ'ଣ ? ସେତେବେଳେ ମୋ' ବୁଦ୍ଧିରେ ପଥର ପଡ଼ିଥିଲା । ଆଜି କେବଳ ଏତିକି ଭାବି ମୋତେ

ଆତ୍ମସନ୍ତୋଷ ଲାଭ କରିବାକୁ ପଡ଼ୁଛି—ତାହା ହିଁ ଥିଲା ଈଶ୍ୱରଙ୍କ ଇଚ୍ଛା । ଅନ୍ୟଥା ମୁଁ ସାଥିରେ ଯାଇଥିଲେ ହୁଏତ ଆଜି ଏହି ବୈଧବ୍ୟ ଜୀବନ ଯାପନ କରିବାକୁ ପଡ଼ି ନ ଥା'ନ୍ତା । ଆଜି ଯେତେବେଳେ ମୋର ସେଇ ବୁଦ୍ଧିଭ୍ରଷ୍ଟ ଘଟଣା ମନେ ପଡ଼େ, ମୁଁ ନିଜ ଉପରେ ଖୁବ୍ ବିରକ୍ତ ହୁଏ ।

ଯାହାହେଉ, ଶାସ୍ତ୍ରୀଜୀ ତାସ୍କନ୍ଦ୍ ଚାଲିଗଲେ । ସେଠାରେ ରୁଷିଆର ପ୍ରଧାନମନ୍ତ୍ରୀଙ୍କ ମଧ୍ୟସ୍ଥତାରେ, ଶାସ୍ତ୍ରୀଜୀ ଓ ଆୟୁବଖାଁଙ୍କ ମଧ୍ୟରେ ସନ୍ଧି ସ୍ଥାପନ ଲାଗି କଥାବାର୍ତ୍ତା ଚାଲିଲା । ଏହି କଥାବାର୍ତ୍ତା ଚାଲିଥିବାବେଳେ କେତେବେଳେ ଏହା ସଫଳ ହେଲା ବୋଲି ଜଣାପଡ଼ୁଥିଲା ଏବଂ ପୁଣି କେତେବେଳେ ଏହା ବିଫଳ ହୋଇଗଲା ବୋଲି ବାର୍ତ୍ତା ପ୍ରସାରିତ ହେଉଥିଲା । ଏଥିଲାଗି ଦେଶ ବିଦେଶରେ ଖୁବ୍ ସରଗରମ ଆଲୋଚନା ଚାଲିଥିଲା ଏବଂ ସମଗ୍ର ବିଶ୍ୱବାସୀ ଏକ ଲକ୍ଷ୍ୟରେ ଏହାର ଫଳାଫଳକୁ ଚାହିଁ ବସିଥିଲେ । ଏ ସମ୍ବନ୍ଧରେ ନାନାପ୍ରକାର କଳ୍ପନା-ଜଳ୍ପନା ଚାଲିଥିଲା । ପରିଶେଷରେ, ବିଶ୍ୱମାନବିକତାର ପୂଜକ ମହାମାନବଗଣ ଯେଉଁ ପଥ ଅନୁସରଣ କରି ଯାଇଛନ୍ତି, ଶାସ୍ତ୍ରୀଜୀ ସେହି ପଦଚିହ୍ନର ଅନୁସରଣ କଲେ । ବାସ୍ତବିକ୍ ଶାସ୍ତ୍ରୀ ଥିଲେ ମହାମାନବ ଏବଂ ମାନବତାର ଅମୂଲ୍ୟ ସମ୍ପଦ ।

ଶାସ୍ତ୍ରୀଜୀ ଜଣେ ଅସାଧାରଣ ବ୍ୟକ୍ତିତ୍ୱସମ୍ପନ୍ନ ନେତା ଓ ମାନବତାର ସଂରକ୍ଷକ ଭାବରେ ସନ୍ଧି-ପତ୍ରରେ ସ୍ୱାକ୍ଷର କରିଦେଲେ । ସେଦିନ ପ୍ରାୟ ରାତି ଦଶଟାବେଳେ ତାଙ୍କଠାରୁ ଫୋନ୍‌ବାର୍ତ୍ତା ଆସିଲା । କୁସୁମ ମୋତେ ତାଙ୍କ ସହିତ କଥାବାର୍ତ୍ତା କରିବାଲାଗି ଡାକିଲା । ମୁଁ ଫୋନ୍‌ରେ କେତେଥର 'ହଲୋ' 'ହଲୋ' କହିଲି; ମାତ୍ର ମୋ କଥା ତାଙ୍କୁ ଶୁଭିଲା ନାହିଁ କିମ୍ବା ତାଙ୍କ କଥା ମୁଁ ଶୁଣିପାରିଲି ନାହିଁ । ମୁଁ କୁସୁମକୁ ଫୋନ୍ ଦେଇ ଚାଲିଆସିଲି । ସେଦିନ ମୋର ଗଣେଶ ଚତୁର୍ଥୀ ବ୍ରତ (ଭାଦ୍ରମାସର ଗଣେଶ ଚତୁର୍ଥୀ ବ୍ରତ ବ୍ୟତୀତ ଅନ୍ୟାନ୍ୟ ମାସରେ ମଧ୍ୟ ଗଣେଶ ଚତୁର୍ଥୀ ବ୍ରତ ପାଳନ କରିବାର ପ୍ରଥା ଉତ୍ତର ଭାରତ ଆଦି ଅଞ୍ଚଳରେ ରହିଛି ।) ଉପବାସ ଥିଲି, ତେଣୁ ପୂଜା କରିବା ଓ ଫଳାହାର ପ୍ରସ୍ତୁତ କରିବାଲାଗି ମୁଁ ଚାଲିଆସିଲି । କୁସୁମ ପରେ ଆସି କହିଲା ଯେ, ବାପାଙ୍କ ସହିତ ତା'ର କଥାବାର୍ତ୍ତା ହୋଇଯାଇଛି ଏବଂ ମୋ ସହିତ କଥାବାର୍ତ୍ତା କରିବାଲାଗି ସେ ପୁଣି ପରଦିନ ସକାଳ ଆଠଟାରେ ଫୋନ୍ କରିବେ ।

**ଆକାଶ ଛିଡ଼ି ପଡ଼ିଲା—**

ପୂଜାପାଠ ପରେ ଖିଆପିଆ ସରିବାବେଳକୁ ପ୍ରାୟ ରାତି ବାରଟା ବାଜି ଯାଇଥିଲା । ମୁଁ ଜାଣେନି, ସେଦିନ କାହିଁକି ଅନାୟାସରେ ଶାସ୍ତ୍ରୀଜୀଙ୍କ ବିଷୟରେ ମୁଁ

ବହୁତ ଭାବିଲି । ସମସ୍ତେ ଖାଇପିଇ ଶୋଇବାକୁ ଚାଲିଗଲେ । ମୁଁ ଖଣ୍ଡିଏ ଚୌକିରେ ବସି ଚାକରଦ୍ୱାରା କେତେକ ଜିନିଷ ସଜାଡ଼ି ରଖାଉଥିଲି । ଶାସ୍ତ୍ରୀଜୀଙ୍କ କଥା ମନେ ପଡ଼ିବାରୁ ମୋତେ ଖୁବ୍ ଅସ୍ୱସ୍ତିକର ବୋଧ ହେଲା । ସେତେବେଳକୁ ପ୍ରାୟ ରାତି ଗୋଟାଏ ବାଜିଥିଲା । ମୁଁ ଜିନିଷ ରଖାରଖି କରି ଘର ଭିତରକୁ ଯିବାମାତ୍ରେ ହରି ଆସି କହିଲା—"ତାସ୍‌କନ୍ଦରୁ ଫୋନ୍ ଆସିଛି ! ବାପୀ ସାଂଘାତିକ ଭାବରେ ଅସୁସ୍ଥ ହୋଇ ପଡ଼ିଛନ୍ତି ।"

"ତାଙ୍କ ଦେହ ଖରାପ ! କେମିତି କ'ଣ ହୋଇଛି ?" ମୁଁ ଡରିଯାଇ ସଙ୍ଗେ ସଙ୍ଗେ ଅନେକ ପ୍ରଶ୍ନ ପଚାରିଲି ।

"ଏବେ ପୁଣି ଫୋନ୍ ଆସିବ, ସେତେବେଳେ ସବୁ କଥା ଜଣା ପଡ଼ିବ ।"

କିଛି ସମୟ ପରେ ହରି ଆସି ଯାହା କହିଲା, ସେଥିରୁ ବୋଧହେଲା, ସତେ ଯେପରି ଆକାଶ ମୋ ମୁଣ୍ଡ ଉପରେ ଛିଣ୍ଡି ପଡ଼ିଲା ! ମୁଁ ଜୋର୍‌ରେ କାନ୍ଦବୋବାଳି ଛାଡ଼ି କହିଲି—"ନା ! ନା ! ଏହା କେବେ ହୋଇ ନ ପାରେ !!!"

ଘରର ପିଲାପିଲି ସମସ୍ତେ କାନ୍ଦ-ବୋବାଳି ପକାଇ କହିଲେ—"ନା ! ନା ! ଏହା ହୋଇ ନ ପାରେ !" କିନ୍ତୁ ବାସ୍ତବରେ ତାହା ହିଁ ଘଟି ଯାଇଥିଲା !!! ତା'ପରେ ମୁଁ ଚେତନାଶୂନ୍ୟ ହୋଇଗଲି । ପରଦିନ ପର୍ଯ୍ୟନ୍ତ ମୁଁ ସେହି ଚେତନାଶୂନ୍ୟ ଅବସ୍ଥାରେ ପଡ଼ି ରହିଥିଲି; କିନ୍ତୁ ସେଥିରେ ଲାଭ ହେଲା କ'ଣ ? ହଁ, ଯଦି ମୋର ପ୍ରାଣବାୟୁ ଉଡ଼ିଯାଇ ତାଙ୍କ ଶ୍ରୀଚରଣକୁ ଶୀତଳ କରିଥା'ନ୍ତା, ତା'ହେଲେ ଅବା କିଛି ହୋଇଥା'ନ୍ତା !!!

———

# ଏକତିରିଶି

## ଏତେ ଦୁଃଖରେ ମୁଁ ଯାହା ବଞ୍ଚି ରହିଛି—

ମା'ଜୀଙ୍କ ପ୍ରାଣର ବେଦନା ସମ୍ବନ୍ଧରେ ମୁଁ ଆଉ କହିବି କ'ଣ ? ତାଙ୍କର ମର୍ମନ୍ତୁଦ ବ୍ୟଥାକୁ ଭାଷାରେ ବ୍ୟଥାକୁ ଭାଷାରେ ବ୍ୟକ୍ତ କରିବା ତ ଦୂରର କଥା, କଳ୍ପନା କରିଯାଇ ପାରିବ ନାହିଁ । ବଜ୍ରପାତଠାରୁ ଅଧିକ ପୀଡ଼ାଦାୟକ ଘଟଣା ତାଙ୍କ ଜୀବନରେ ଘଟିଥିଲା । କେତେ ଦୁଃଖ, କେତେ କଷ୍ଟ ସହି ସେ ଶାସ୍ତ୍ରୀଜୀଙ୍କୁ ପାଳି ପୋଷି ବଡ଼ାଇ ଥିଲେ । ସେ ଶାସ୍ତ୍ରୀଜୀଙ୍କୁ ରାଷ୍ଟ୍ର ସେବାର ଜଟିଳ ମାର୍ଗରେ ପରିଚାଳିତ ହେବାଲାଗି କେବଳ ଅନୁମତି ଦେଇ ନ ଥିଲେ; ଅଧିକନ୍ତୁ କିଛି କାମ କରି ଉଦାହରଣ ସ୍ୱରୂପ ଦେଶବାସୀଙ୍କ ସମ୍ମୁଖରେ ଥୋଇବାଲାଗି ପ୍ରେରଣା ଦେଇଥିଲେ । ସେ ଯୁଗର ପରିସ୍ଥିତି ପ୍ରତି ଦୃଷ୍ଟି ଦେଲେ, ତାହା ଅଦ୍ୱିତୀୟ ଘଟଣା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଈଶ୍ୱରଙ୍କ କୃପାରୁ ତାଙ୍କ ମନୋରଥ ସିଦ୍ଧ ହୋଇଥିଲା । ଶାସ୍ତ୍ରୀଜୀ ମା'ଜୀଙ୍କର ଆଶୀର୍ବାଦ ଲାଭକରି, ଦେଶସେବାର ପବିତ୍ର ମାର୍ଗରେ ଅଗ୍ରସର ହୋଇ, ପରିଶେଷରେ ସେ ଅନ୍ତିମ ସୋପାନରେ ଆରୋହଣ କରି ପାରିଥିଲେ । ଅବଶ୍ୟ ଏପରି ସୁଯୋଗ କ୍ୱଚିତ୍ ଲୋକଙ୍କ ଭାଗ୍ୟରେ ସମ୍ଭବ ହୋଇଥାଏ । ଯାହା ସ୍ୱପ୍ନରେ ଚିନ୍ତା କରିଯାଇ ପାରିବ ନାହିଁ, ଏପରି ଏକ ଆକସ୍ମିକ ଘଟଣାରେ ଦେଶର ସୁଯୋଗ୍ୟ ସନ୍ତାନଙ୍କର ଅକାଳ ବିୟୋଗ ଘଟିଲେ, ବୀରଜନନୀର ହୃଦୟରେ କି ପ୍ରକାର ଦାରୁଣ ବ୍ୟଥା ଜାତ ହେବ, ତାହା କ'ଣ କଳ୍ପନା କରିଯାଇପାରିବ ?

ମା'ଜୀ ସେହି ବଜ୍ରପାତକୁ ସହିପାରିଲେ ନାହିଁ । ଫଳରେ ସେ ତାଙ୍କ ଚିନ୍ତାଶକ୍ତି ହରାଇ ବସିଲେ । ଶେଷଆଡ଼କୁ ଏଣୁ ତେଣୁ ବକିବାକୁ ଲାଗିଲେ । କେତେବେଳେ କ'ଣ କହୁଥିଲେ, ତା'ର କିଛି ଠିକ୍ ଠିକଣା ରହିଲା ନାହିଁ । ଦଶନମ୍ବର ଜନପଥରେ ଥିବା ଘରଖଣ୍ଡି ସମୁଦାୟ ଜିନିଷପତ୍ର ଧରି, ପରିବାରର ଲୋକେ ଅନ୍ୟ ଘରକୁ ଚାଲି ଯାଇଥିଲେ ହେଁ, ମା'ଜୀ ସେହିଠାରେ ରହିଥିଲେ । କେତେଦିନ ବିତିଯିବା ପରେ ସେ ସେଠାରୁ ଅନ୍ୟ ସ୍ଥାନକୁ ଯିବାଲାଗି ପ୍ରସ୍ତୁତ ହେଲେ ନାହିଁ । ସେଠାରୁ ଯିବାଲାଗି ତାଙ୍କୁ କୁହାଗଲେ ସେ ସଙ୍ଗେ ସଙ୍ଗେ ରାଗିଯାଇ କହୁଥିଲେ—"ମୋତେ ଏଠାରୁ କିଏ ବାହାର କରିବ ? ମୋ ଲାଲ୍' ବିଜୟ କରିବାକୁ ଯାଇଛି, ଫେରି ଆସୁଥିବ ! ସେ ବିଶ୍ୱର ମଉଡ଼ମଣି ! ମୁଁ ଏଇଠାରେ ରହିବି ! ଏ ଆମ ଘର ! ମୁଁ ଏଠାରୁ ଯିବି କାହିଁକି ? ମୁଁ ଯିବି ନାହିଁ ! କେବେହେଲେ ଯିବି ନାହିଁ !!! ଏ ପ୍ରକାର କେତେ କ'ଣ ବକି ହୁଅନ୍ତି ।

**ସତ କହ ବୋହୂ—**

"ଶାସ୍ତ୍ରୀଜୀ ଏ ଘରକୁ ଫେରିବେ ନାହିଁ, ସେ ଘରକୁ ଫେରିବେ" ଆଦି କହି କୌଣସିମତେ ବୁଝାଇ ତାଙ୍କୁ ସେଠାରୁ ନେଇ ଆସିଲି । ତା'ପରେ ସେ ମୂକହୋଇ ସବୁବେଳେ ବସି ରହିଲେ । କେତେବେଳେ କେଉଁଠାରେ କାହିଁକି ବସନ୍ତି, କିଛି ବୁଝିହେଉ ନ ଥିଲା । କେତେବେଳେ ହସୁଥିଲେ, କେତେବେଳେ ଫୁସ୍‌ଫାସ୍ ହୋଇ କ'ଣ କହୁଥିଲେ ଏବଂ କେତେବେଳେ ବାହାର ସଡ଼କ ଆଡ଼କୁ କେବଳ ଚାହିଁ ରହୁଥିଲେ । ତାଙ୍କ ଅବସ୍ଥା ଖୁବ୍ ଖରାପ ହୋଇ ଯାଇଥିଲା । ତାଙ୍କର ଏ ପ୍ରକାର ଅବସ୍ଥାକୁ ସୁଧାରିବାର ଉପାୟ ନ ଥିଲା । ଯାହା କିଛି ଉପଚାର କରିବାର ଥିଲା, ତା ମୋ' ଦ୍ୱାରା ସମ୍ଭବ ହେଉଥିଲା । ମୁଁ ମୋର ସାଧ ମତେ ତାଙ୍କର ସେବା କରୁଥିଲି; କାରଣ ତା' ଥିଲା ମୋର କର୍ତ୍ତବ୍ୟ । ମୋର ତ ସର୍ବସ୍ୱ ଅପହୃତ ହୋଇଥିଲା ! ଯାହାର ସର୍ବସ୍ୱ ଅପହୃତ ହୋଇଯାଇଥାଏ, ତା' ମନରେ କି ପ୍ରକାର ଦାରୁଣ ପୀଡ଼ା ଜାତ ହେଉଥିବ, ଅନୁମାନ କରିବା ସହଜ; କିନ୍ତୁ ମୁଁ ନିଜ ବ୍ୟଥା ପ୍ରକାଶ କଲେ ମା'ଜୀଙ୍କର ଦୁଃଖ ଅଧିକ ବଢ଼ନ୍ତା ସିନା ! ତେଣୁ ମୁଁ ନିଜ ହୃଦୟକୁ ପଥର କରି ଦେଇଥିଲି । ଯଦ୍ୟପି ଆଖିରୁ ଲୁହ ଗଡ଼ିବା ବନ୍ଦ ହେଉ ନ ଥିଲା, ତଥାପି ମୁଁ ମା'ଜୀଙ୍କୁ ଲୁଚାଇ ଆଖି ପୋଛି ନେଉଥିଲି । କେବେ କେବେ ଏକାନ୍ତରେ ବସି ମୁଁ ଘଣ୍ଟା ଘଣ୍ଟା ଚିନ୍ତା କରିଛି—ଜୀବନରେ କି ଭୁଲ କରିଥିଲି ଯେ, ଯାହା ଫଳରେ ଭଗବାନ ମୋତେ ଏଡ଼େବଡ଼ ଦଣ୍ଡ ଦେଲେ । ପତି ବିହୀନା ପତ୍ନୀର ପ୍ରାଣ ରହିବା ନ ରହିବା ସମାନ । ତା'ର ପ୍ରାଣ ଥିଲେ ମଧ୍ୟ ସେ ପ୍ରାଣହୀନ ପ୍ରାଣୀ ! ଯଦି ସ୍ତ୍ରୀର ସ୍ୱାମୀ ନାହିଁ, ତା'ହେଲେ ଆଉ ତା'ର ଅଛି କ'ଣ ? ତା' ଦୃଷ୍ଟିରେ ସମଗ୍ର ବିଶ୍ୱ ଶୂନ୍ୟ । ପ୍ରଭୁ ମୋ' ଭାଗ୍ୟରେ ଏହା କାହିଁକି ଘଟାଇଲେ ? ଶେଷରେ ମନକୁ ମନ ଉତ୍ତର ଦିଏ—ବୋଧହୁଏ ଶାସ୍ତ୍ରୀଜୀଙ୍କର ଅପୂରଣୀୟ ମନସ୍କାମନାକୁ ଈଶ୍ୱର ମୋ ଦ୍ୱାରା ପୂରଣ କରିବାକୁ ଚାହାନ୍ତି !

ସମୟର ଗତି ସହିତ ମା'ଜୀଙ୍କର ମନର ଅବସ୍ଥା ଅଧିକ ଖରାପ ହେବାକୁ ଲାଗିଲା । ସେ ଅଧିକାଂଶ ସମୟ ନୀରବ ହୋଇ ବସି ରହିଲେ । ଦିନେ ମୋତେ ଆସି ଧୀରେ ପଚାରିଲେ—"ବୋହୂ ! ମୁଁ କାହାରି ଆଗରେ କହିବି ନାହିଁ; ସତ କହିଲୁ, "ବଚଓ୍ୱା" କେଉଁଠି ଅଛି ? ମୁଁ କାହାରିକୁ କିଛି କହିବି ନାହିଁ ! ମୁଁ ଥରେ ମାତ୍ର ତୁମ ଦୁଇଜଣଙ୍କୁ ଏକା ସଙ୍ଗରେ ଦେଖିବାକୁ ଚାହେଁ । ତୁ ସିନ୍ଦୂର ପିନ୍ଧିବା ବନ୍ଦ କରିଦେଲୁ କାହିଁକି ? ଠିକ ପୂର୍ବପରି ସିନ୍ଦୂର ପିନ୍ଧି ମୋ' ଆଗକୁ ଆସିବୁ, ବୁଝିଲୁ ? ଯେପରି ଆନ୍ଦୋଳନ ସମୟରେ ଶାସ୍ତ୍ରୀଜୀ ଆବଶ୍ୟକ ବେଳେ ଆତ୍ମଗୋପନ କରି ରହୁଥିଲେ ସେହି ପ୍ରକାର ଧାରଣା ମା'ଜୀଙ୍କ ମୁଣ୍ଡରେ ପଶିଥିଲା । ସେ ନିଜର ଅବ୍ୟବସ୍ଥିତ ମନସ୍ଥିତି ଫଳରେ ଧାରଣା କରିଥିଲେ ଯେ, ଶାସ୍ତ୍ରୀଜୀ ବୋଧହୁଏ କେଉଁଠିଲୁଚି ଯାଇଛନ୍ତି ।

**ତୁ ଦେବତା ଥିଲୁ ବଚଓ୍ୱା—**

ବେଳେ ବେଳେ କୌଣସି ଶୋଭାଯାତ୍ରାର କୋଳାହଳ ଶୁଣି, ସେ ରାସ୍ତା ଉପରକୁ ଚାଲିଯାଇ ପାଟିକରି କହୁଥିଲେ—"ବଚଓ୍ୱା ଆସିଗଲା ! ବଚଓ୍ୱା ଆସିଗଲା ! ଶୁଣ, ବାହାରେ ତାହାରି ଜୟଧ୍ୱନି ଶୁଭୁଛି ! ଚାଲ ! ଚାଲ !" ତା'ପରେ ସେ ବାହାରକୁ ବାହାରିଯିବା ଲାଗି ଛଟପଟ ହୋଇପଡ଼ି କହନ୍ତି—"ତୁ ଦେବତା ଥିଲୁ ବଚଓ୍ୱା ! ମୁଁ ଜନ୍ମ ଦେଇ ମଧ୍ୟ ତୋତେ ଠିକ୍ ଭାବରେ ଚିହ୍ନିପାରି ନ ଥିଲି ! ତୁ ତ ଅବତାର ଧରି ଜାତ ହୋଇଥିଲୁ ! ଏବେ ଆଉ ଥରେ ମାତ୍ର ଆସି ଦେଖାଦେଇ ଯା !" ଏହା କହି ସେ ସେହିଠାରେ ମୁଣ୍ଡକୋଡ଼ି ହୋଇ କାନ୍ଦୁଥିଲେ ।

ମା'ଙ୍କର ମନର ପରିସ୍ଥିତି, ଶାସ୍ତ୍ରୀଜୀଙ୍କ ମୃତ୍ୟୁର କେତେଦିନ ପରେ ଖରାପ ହୋଇ ଯାଇଥିଲା । କାରଣ, ପ୍ରଥମ କେତେଦିନ ସେ ଭଲ ଥିଲେ । ସେ ଧୈର୍ଯ୍ୟ ଧରି ମୋ' ପାଇଁ ଅଧିକ ଚିନ୍ତିତ ରହୁଥିଲେ ଏବଂ ମୋର ଶୋକ ଦୂର କରିବା ଲାଗି ଆପ୍ରାଣ ଚେଷ୍ଟା କରୁଥିଲେ । ମୋର କାନ୍ଦଣା ବନ୍ଦ କରିବା ଲାଗି ସେ ନିଜ ବେଦନା ଭୁଲି ଯାଇଥିଲେ । ମୋତେ ବୁଝାଇବାକୁ ଯାଇ ସେ ଦିନେ ଦିନେ ଉନ୍ନତ ଚିନ୍ତାମୂଳକ କଥା କହୁଥିଲେ—"ବୋହୂ ! କାନ୍ଦଣା ବନ୍ଦକରି ଧୈର୍ଯ୍ୟ ଧରିବାକୁ ଚେଷ୍ଟା କର । 'ବଚଓ୍ୱା' କେବଳ ତୋର ଆପଣାର ନ ଥିଲା, ସେ ସମଗ୍ର ଦେଶର ସମ୍ପତ୍ତି ଥିଲା । ସେ ଆଠବର୍ଷର ହୋଇଥିବାବେଳେ ଥରେ ବେମାର ପଡ଼ିଥିଲା, ସେତେବେଳେ ମୋ' ସୌଭାଗ୍ୟରୁ ବଞ୍ଚି ଯାଇଥିଲା । ପୁଣି ବନାରସ ଓ ଏଲ୍ଲାବାଦରେ ବେମାର ପଡ଼ିଥିବା ଅବସ୍ଥାରେ ତୁ ତୋର ସୌଭାଗ୍ୟରୁ ତାକୁ ଯମ ହାତରୁ ଛଡ଼ାଇ ଆଣିଥିଲୁ ! କିନ୍ତୁ ଏଥର ସେ କିପରି ବଞ୍ଚି ରହନ୍ତା ? କାରଣ, ଦେଶର ଭାଗ୍ୟ ଖରାପ । ଆମ୍ଭର ଶତଚେଷ୍ଟା ପରେ ଭବିତବ୍ୟକୁ କିଏ ଟାଳି ପାରିବ ?"

ଶାସ୍ତ୍ରୀଜୀଙ୍କ ମୃତ୍ୟୁର ପ୍ରାୟ ଦଶମାସ ପରେ ମା'ଜୀ ନଭେମ୍ବର ଦୁଇ ତାରିଖରେ ଆମ ଘରର ପୂଜା କୋଠରୀକୁ ଯାଇ ଶାସ୍ତ୍ରୀଜୀଙ୍କ ଫଟୋ ଆଗରେ ପ୍ରଥମେ ମୁଣ୍ଡ ନୁଆଁଇଲେ; ତା'ପରେ ଫଟୋଟିକୁ ଧରି ଚୁମ୍ବନ ଦେଇ କେତେଥର ଆଲିଙ୍ଗନ କରି ପାଗଳମାନ ପରି ଫଟୋଟିକୁ ଚାହିଁବା ପରେ, ନୀରବରେ ସେ ସେଠୁ ବାହାରି ନିଜ କୋଠରୀକୁ ଚାଲି ଆସିଲେ । ନଭେମ୍ବର ତିନି ତାରିଖରେ ମା'ଜୀଙ୍କର ସ୍ୱର୍ଗବାସ ହୋଇଗଲା ! ଯେପରି ମାତା କୌଶଲ୍ୟାଙ୍କ କୋଳରେ ରାମଚନ୍ଦ୍ର ଜନ୍ମଗ୍ରହଣ କରିଥିଲେ ମଧ୍ୟ ଈଶ୍ୱର ତାଙ୍କୁ ନାନାପ୍ରକାର ଦୁଃଖଦେଇ, ତାଙ୍କ ଧୈର୍ଯ୍ୟର ପରୀକ୍ଷା କରିଥିଲେ, ଠିକ୍ ସେହିପରି ଏ ଯୁଗରେ ଈଶ୍ୱର ମା'ଜୀଙ୍କୁ ଅନେକ ପ୍ରକାର ପରୀକ୍ଷା କରିଥିଲେ ।

———

ମୁଦ୍ରାକର—ସତ୍ୟନାରାୟଣ ପ୍ରିଣ୍ଟର୍ସ ବାଖରାବାଦ୍ କଟକ-୨